# ଲକ୍ଷ୍ମୀନାରାୟଣ ସ୍ମରଣିକା



ସମ୍ପାଦକ { ଶ୍ରୀ ସୁରେନ୍ଦ୍ର ମହାନ୍ତି
ଶ୍ରୀ ଗୋପୀନାଥ ଦାଶ

ମୂଲ୍ୟ—ଏକଟଙ୍କା ।

**ପ୍ରକାଶକ: — ଲକ୍ଷ୍ମୀନାରାୟଣ ସାହୁ ସ୍ମୃତିରକ୍ଷା ସମିତି, କଟକ**

**ଲକ୍ଷ୍ମୀନାରାୟଣ ସାହୁ ସ୍ମୃତିରକ୍ଷା ସମିତିର କର୍ମକର୍ତ୍ତାଗଣ:—**

ଡକ୍ଟର ହରେକୃଷ୍ଣ ମହତାବ, ଏମ୍. ପି.···ସଭାପତି
ଡକ୍ଟର ପ୍ରାଣକୃଷ୍ଣ ପରିଜା, କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ···ଉପସଭାପତି
ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ସଭ୍ୟ ହିନ୍ଦ୍ ସେବକ ସଂଘ···ସମ୍ପାଦକ ଓ କୋଷାଧ୍ୟକ୍ଷ
ଶ୍ରୀ ନରସିଂହ ସାହୁ, ଅଧ୍ୟାପକ, ରାଭେନ୍ସା କଲେଜ, କଟକ···ଯୁଗ୍ମ ସମ୍ପାଦକ
କବି ଶ୍ରୀ ବାଳକୃଷ୍ଣ ପଟ୍ଟନାୟକ ··· ସଭ୍ୟ
ଶ୍ରୀ ପବିତ୍ରମୋହନ ପ୍ରଧାନ, ପୂର୍ବତନ ଶିକ୍ଷାମନ୍ତ୍ରୀ, ଓଡ଼ିଶା ,,
ଶ୍ରୀ ଦୀନବନ୍ଧୁ ସାହୁ, ଆଡ଼ଭୋକେଟ ଜେନେରାଲ, ଓଡ଼ିଶା ,,
ମହାରାଜା ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେଓ, ଏମ୍. ଏଲ୍. ଏ. ,,
ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଏମ. ପି. ,,
ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଏମ୍. ଏଲ୍. ଏ. ,,
ଶ୍ରୀ ସୁରେନ୍ଦ୍ର ମହାନ୍ତି, ସଂପାଦକ 'କଳିଙ୍ଗ' ,,
ଶ୍ରୀ ଏଲ୍. ଏମ୍. ଶ୍ରୀକାନ୍ତ, ଗାନ୍ଧୀ ସ୍ମାରକନିଧି, ଦିଲ୍ଲୀ ,,
ଶ୍ରୀ ଦେବକରଣ ଝୁନ୍ଝୁନ୍ୱାଲ, ଶିଳ୍ପପତି, ବାରଙ୍ଗ ··· ,,
ଶ୍ରୀ ଝଣ୍ଟାସୁନ୍ଦର ଦାଶ, ବ୍ୟବସାୟୀ, କଟକ ··· ,,
ଶ୍ରୀ ଶରତଚନ୍ଦ୍ର ମୁଖାର୍ଜୀ, ଅବସରପ୍ରାପ୍ତ, ଆଇ. ଏ. ଏସ୍. ,,
ଶ୍ରୀ ମନୀନ୍ଦ୍ରନାଥ ଗୁହ, ଅବସରପ୍ରାପ୍ତ, ଆଇ. ଏ. ଏସ୍. ,,
ଶ୍ରୀ ଏମ୍. ଏସ. ପ୍ରସାଦ ··· ,,
ଶ୍ରୀ ହରିହର ସିଂହ ମର୍ଦ୍ଦରାଜ ··· ,,
ଶ୍ରୀ ଗୌରକୁମାର ବ୍ରହ୍ମା, ସମ୍ପାଦକ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ··· ,,
ଶ୍ରୀ ଜ୍ଞାନରଞ୍ଜନ ପଟ୍ଟନାୟକ, ପୂର୍ବତନ ଚେୟାରମ୍ୟାନ, ବାଲେଶ୍ୱର ମ୍ୟୁନିସିପାଲିଟି ··· ,,
ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ, ସାହିତ୍ୟିକ ··· ··· ,,
ଶ୍ରୀ ରାମଚନ୍ଦ୍ର କର, ପ୍ରୋପ୍ରାଇଟର 'ମାତୃଭୂମି' ,,
ଶ୍ରୀ ବିଜୟକୁମାର ମଲ୍ଲ ··· ··· ,,
ଶ୍ରୀ ନଟବର ମହାନ୍ତି, ପ୍ରିନ୍ସପାଲ, ଉତ୍କଳ ହୋମିଓପାଥିକ ମେଡ଼ିକାଲ କଲେଜ, କଟକ ,,
ଶ୍ରୀ ବଳାଇ ପାଳିତ ··· ,,
ଶ୍ରୀ ବିରଜମୋହନ ସେନାପତି ,,
ଶ୍ରୀ ଅଧିରଜମୋହନ ସେନାପତି ··· ,,

---

# ସୂଚୀ

ତରୁଣ ଲକ୍ଷ୍ମୀନାରାୟଣ—



ସମ୍ମୁଖରେ ପଥ ଅନିଶ୍ଚିତ,
ମାତ୍ର ଦୃଷ୍ଟି କଠୋର ଓ ନିଃସଂଶୟ ।

ଦୁର୍ଗତର ଦୁର୍ଦ୍ଧମନୀୟ ସେବକ ଲକ୍ଷ୍ମୀନାରାୟଣ—



୧୯୪୮ ସାଲରେ ଓଡ଼ିଶା କରାଳ ବନ୍ୟା ଗ୍ରାସରେ ବିଧ୍ୱସ୍ତ ହୋଇଥିବାବେଳେ
ଶ୍ରୀ ଠକ୍‌କରବାପାଙ୍କ ସହ ବନ୍ୟାଞ୍ଚଳକୁ ଲକ୍ଷ୍ମୀନାରାୟଣଙ୍କ ଯାତ୍ରା

ଜୀବନ ଏକ ମହାବିଦ୍ୟାଳୟ—



ବାର୍ଦ୍ଧକ୍ୟରେ ତଥାପି ଅଧ୍ୟୟନରତ ଲକ୍ଷ୍ମୀନାରାୟଣ

ଉତ୍କଳ ବିଶ୍ୱବିଦ୍ୟାଳୟର ପଞ୍ଚଦଶ ସମାବର୍ତ୍ତନ ଉତ୍ସବରେ—



କୁଳାଧିପତି ଓ୍ୱାଇ. ଏନ୍. ସୁକ୍‌ଥଙ୍କରଙ୍କ ଠାରୁ ଜାନୁୟାରୀ ୧୪, ୧୯୫୮ରେ ଏଲ୍.ଏଲ୍.ଡି. ଡିଗ୍ରୀ ଗ୍ରହଣ କରୁଛନ୍ତି

ସହଯାତ୍ରିଣୀ—



କର୍ମ୍ମୀ ନାରାୟଣଙ୍କ ଲକ୍ଷ୍ମୀରୂପା ସହଧର୍ମିଣୀ ଶ୍ରୀମତୀ ବୀଣାପାଣି ଦେବୀ

ଯାତ୍ରାର ଶେଷ--



"ସ୍ୱପ୍ନ ଆଉ ଜାଗରଣ ସୁଷୁପ୍ତିର ପରପାରେ ଯେଉଁ ଆତ୍ମା ସ୍ଥିର ଅବିଚଳ,
ସେ ଆତ୍ମାର ପାଏ ମୁଁ ସନ୍ଧାନ,
କଳ୍ପିତ ଅନ୍ତରରେ ସେ ଭୂସ୍ୱପ୍ନ ପରପାରେ ବସିଛି ମୁଁ ଚିରଦ୍ରଷ୍ଟା,
ମୃତ୍ୟୁ ମୋର ନାହିଁ ନାହିଁ—ମୁଁ ଯେ ମୃତ୍ୟୁହୀନ ।"

—ଲକ୍ଷ୍ମୀନାରାୟଣ

# ମୁଁ ଓ ଜୀବନ

## ୰ ଲକ୍ଷ୍ମୀନାରାୟଣ ସାହୁ

ଏହା ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ବହୁ ଅପ୍ରକାଶିତ ରଚନା ମଧ୍ୟରୁ ଗୋଟିଏ। ୧୮-୧୧-୧୯୫୧ ତାରିଖରେ ଲିଖିତ ହୋଇଥିଲା। ନିତାନ୍ତ ଅକପଟ ଭାବରେ ଲକ୍ଷ୍ମୀନାରାୟଣ ଅହମିକାର ଲମ୍ଫସାଟ ଉନ୍ମୋଚିତ କରି ଏଥିରେ ନିଜ ବ୍ୟକ୍ତିତ୍ୱ ଉଦ୍‌ଘାଟିତ କରିଅଛନ୍ତି। ଏକ ମହାଶକ୍ତିର ସତ୍ତା ଉପଲବ୍ଧି କରିବା ତାଙ୍କ ଜୀବନର ସାଧନା ଥିଲା। ଅଥଚ ସେ ନିତାନ୍ତ ଆଚାରବାଦୀ ଧାର୍ମିକ ନ ଥିଲେ। ଲକ୍ଷ୍ମୀନାରାୟଣ ଏହି ନିବନ୍ଧରେ ତାହା ଆଲୋଚନା କରିଅଛନ୍ତି। ଏହି ଲେଖାଟି କବି ଶ୍ରୀ ବାଳକୃଷ୍ଣ ପଞ୍ଚନାୟକଙ୍କ ନିକଟରୁ ପ୍ରାପ୍ତ।

**ସମ୍ପାଦକ**

୧୮୯୦ ଖ୍ରୀଷ୍ଟାବ୍ଦ ଅକ୍‌ଟୋବର ୩ ତାରିଖରେ ମୋର ଜନ୍ମ। ବାଲେଶ୍ୱର ସହରରେ ମୁଁ ଜନ୍ମିଥିଲି। ମୋର ପିତା ୰ କ୍ଷେତ୍ରମୋହନ ସାହୁ ଧନୀର ସନ୍ତାନ ଥିଲେ। କିନ୍ତୁ ପିତାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ସେ ଗରିବ ହୋଇପଡ଼ିଲେ। ଦିନକୁ ଟ୦।, ଟ୦।୵ ରୋଜଗାର କରି ପୁଣି ଜୀବନ ଚଳାଉଥିଲେ। ମାତ୍ର ନ୍ୟାଁଖମୂରେ ଆମର କୋଠାଘର ନିଲାମ ହୋଇଗଲା। ବାରବାଟୀରେ ଆସି ବାପା କୁଡ଼ିଆ ବାନ୍ଧିଲେ।

ସୁତରାଂ ମୁଁ ପିଲାଟିଦିନରୁ ଏଣ୍ଟ୍ରାନ୍‌ସ ପାଶ କରିବା ପର୍ଯ୍ୟନ୍ତ (୧୯୦୮ ଖ୍ରୀଷ୍ଟାବ୍ଦ) ଗରିବ ଭାବରେ ଜୀବନ ଯାପନ କଲି। ଏଣ୍ଟ୍ରାନସ ପର୍ଯ୍ୟନ୍ତ ମୋର ଦେହରେ କମିଜ ନ ଥିଲା କି, ମୋର ଗୋଡ଼ରେ ଯୋତା ନ ଥିଲା।

କିନ୍ତୁ ପିଲାଟି ଦିନୁଁ ମୁଁ ଉଚ୍ଚତର ଜୀବନ ଯାପନ କରିବା ପାଇଁ ଆଗ୍ରହାନ୍ୱିତ ଥିଲି। ଶଙ୍କରାଚାର୍ଯ୍ୟଙ୍କର "ମୋହ ମୁଦ୍‌ଗର" ମୋତେ ବଡ଼ ମୁଗ୍ଧ କରିଥିଲା। ମୁଁ ପିଲାଟି ଦିନୁଁ କାହାରି ଘରେ ଖାଉ ନ ଥିଲି, ଆଉ ଗଣେଶ ପୂଜା, କାର୍ତ୍ତିକ ପୂଜା, ଦୁର୍ଗା ପୂଜା, ସରସ୍ୱତୀ ପୂଜା ଇତ୍ୟାଦିରେ ଖୁବ ମନ ଦେଉଥିଲି।

ଫଳତଃ ବୈବାହିକ ଜୀବନ ପାଇଁ ମୋର ଗୋଟିଏ ବିତୃଷ୍ଣା ଥିଲା। ମୁଁ ସେଥିପାଇଁ ୧୯୦୮ ଖ୍ରୀଷ୍ଟାବ୍ଦରେ ପ୍ରଥମ ପୁନର୍ବିବାହ ସମ୍ବନ୍ଧରେ ମଙ୍ଗଳପାଟ ଗୋଡ଼ରେ ଫୋପାଡ଼ି ଦେଇଥିଲି।

କଟକକୁ ଆସି ପ୍ରଥମ କୋରାଣକ୍ଲବ ସ୍ଥାପନ କଲି। ବ୍ରାହ୍ମସମାଜର ଛାତ୍ରସମାଜରେ ଗୋଟିଏ ବଡ଼ପଣ୍ଡା ଥିଲି। ଖୁବ ପ୍ରବନ୍ଧାଦି ପାଠ କରେ। ତା ପରେ କଟକ ମିଶନ ସ୍କୁଲରେ ମାଷ୍ଟର ଥିଲାବେଳେ Y. M. C. A.ର ସେକ୍ରେଟେରି ମଧ୍ୟ ହେଲି।

ପର ଜୀବନରେ ଆର୍ଯ୍ୟସମାଜୀଙ୍କ ସହ ହବନ କରିଛୁ।

୧୯୦୮ ସାଲରେ ମୋର ଜୀବନରେ ଗୋଟିଏ ଘୋର ପରିବର୍ତ୍ତନ ଘଟିଥିଲା। ସମସ୍ତଙ୍କୁ ଆପଣାର କରିବାର ଆଗ୍ରହ ହେଲା। ତେଣୁ ହାଡ଼ି, ପାଣ, ମୁସଲମାନ, ଖ୍ରୀଷ୍ଟାନ୍, ବ୍ରାହ୍ମଣ, କରଣ, ଓଡ଼ିଆ, ବଙ୍ଗାଳୀ ସମସ୍ତଙ୍କୁ ସମାନ ଚକ୍ଷୁରେ ଦେଖିବାକୁ ଲାଗିଲି।

୧୯୦୫ ଖ୍ରୀଷ୍ଟାବ୍ଦରେ ସ୍ୱଦେଶୀ ଆନ୍ଦୋଳନରେ ଭାଗ ନେଇ ଦେଶ ଚହଲିବାକୁ ଲାଗିଲି। କିନ୍ତୁ ବୃହତ୍ତର ଦେଶ

ସମଗ୍ର ପୃଥିବୀ—ଆଉ ତାଠାରୁ ବୃହତ୍ତର ତାହାର ରାଜ୍ୟ। ସୁତରାଂ ମୋର ମନ କ୍ଷୁଦ୍ର ସଂସାର ମଧ୍ୟରେ ଆବଦ୍ଧ ନ ରହି ବିଶାଳ ବିଶ୍ୱ ଭିତରେ ପୂରିବାକୁ ଲାଗିଲା। ମୁଁ ଅନୁଭବ କରେ, ମୁଁ ବିନ୍ଦୁଟିଏ ଏହି ମହାସିନ୍ଧୁ ଭିତରେ—ଆଉ ସେହି ବିଶାଳ ଶକ୍ତିଦ୍ୱାରା ମୁଁ ଚାଳିତ। ଆଉ ସମସ୍ତେ ମୋର ଭାଇ। ଏହି ଉପଲବ୍ଧି ମୋତେ ଆନନ୍ଦ ଦିଏ। ଏହାର ଫଳରେ ମୁଁ କେବେ ହେଲେ କ୍ଷୁଦ୍ର ସ୍ୱାର୍ଥଦ୍ୱାରା ମୁଗ୍ଧ ବା ଚାଳିତ ହୋଇନାହିଁ। ଆଉ ଅନୁଭବ କରେ ଯେ ପବିତ୍ର ଜୀବନ ପ୍ରକୃତ ସୁଖ ଦିଏ।

ନିବେଦିତ ଜୀବନ ହିଁ ପ୍ରକୃତ ଜୀବନ। ଆଉ ସବୁ ଜୀବନ ଗଡ୍ଡାଳିକା ପ୍ରବାହପରି। ଯେଉଁ ଜୀବନରେ ଅନୁଭବ ବ୍ୟାପ୍ତି, ସୌନ୍ଦର୍ଯ୍ୟ, ସହୃଦୟତା, ସହାନୁଭୂତି, ସେହି ଜୀବନ ହିଁ କଳ୍ପଲତା। ଜୀବନର କାକଳୀ ପ୍ରତି ପ୍ରତ୍ୟୂଷରେ ଏହି କଥା ହିଁ କହିଯାଏ—ଉଠ, ଜାଗ୍ରତ ହୁଅ, ଧର୍ମପଥରେ ବିଚରଣ କର। ଏହି ଅନୁଭବ ହିଁ ମୋର ଜୀବନର ଅନୁଭବ।

ପାଠ ପଢ଼ିବା, ସଦ୍‌ଗ୍ରନ୍ଥ ପାଠ କରି ନିଜକୁ ମହତ୍ତ୍ୱ ସୁନ୍ଦର କରିବା, ନିଜେ ସ୍ରଷ୍ଟା ହେବାର ଚେଷ୍ଟା କରିବା, ସୌନ୍ଦର୍ଯ୍ୟ ପାଇଁ ମୋର ଯେପରି ଅନ୍ତର ଅନେକଙ୍କର ଚିର ଆକାଙ୍କ୍ଷା। ସେହି ପଥରେ ଚାଳିତ ହୋଇ ମୁଁ ସାହିତ୍ୟ ପାଠ କରିଅଛି ଏବଂ ସାହିତ୍ୟ ରଚନା କରିବାକୁ ଚେଷ୍ଟା କରିଛି।

Marcus Aurelius Antoninus, Light of Asia by Edwin Arnold, Initiation of Christ by Tames A Kampis ଗୀତା, ବାଇବଲ, ଏହିସବୁ ବହି ମୋତେ ଆନନ୍ଦ ଦେଇଛି। ସାହିତ୍ୟରେ Tolstoiଙ୍କ ବହିସବୁ, Victor Hugoଙ୍କ Le miserable, Ruskin, Emerson, ମୋତେ ବିଶେଷକରି ଟାଣିଛି।

ପଦ୍ୟରେ Byron Shelley Walt Whitman ମୋତେ ପାଗଳ ମୁଗ୍ଧ କରିଛି, ଆକର୍ଷଣ କରିଛି। ଉପଦେଶରେ ରାମକୃଷ୍ଣ କଥାମୃତ। ଅତଏବ ଏହିସବୁ ମୁଁ ପଢ଼ିବାକୁ କହିବି। କେବଳ ପଦ୍ୟଟାକୁ ବାଦ୍‌ଦେଇ। ସେଟା ମୋର ବ୍ୟକ୍ତିଗତ।

ନାରୀଜାତିକୁ ଆମେ ଯେପରି ରଖିଛୁ ତାହା ଶୋଭନୀୟ ନୁହେଁ। ସେମାନଙ୍କ ଅନ୍ତର ଜ୍ଞାନର ଆଲୋକଦେବା ଦରକାର। ଆଜି ଅମର ନାରୀଜାତି ଓଡ଼ିଶାରେ ଅନ୍ତତଃ ଏକାବେଳକେ ଘୋର ଅନ୍ଧକାରରେ ପଡ଼ି ରହିଛନ୍ତି।

କଟକ
୧୮।୧୧।୧୯୫୧

ସମାଜ ବ୍ୟବସ୍ଥାରେ ଯେଉଁଥିରେ କେତେଗୁଡ଼ିଏ ଲୋକ କ୍ରୀତଦାସ ଭଳି ଅନ୍ୟ ପାଇଁ ଖଟିବେ, ତାହା ମୁଁ ସହ୍ୟ କରି ପାରେନାହିଁ। ଅତଏବ ବଡ଼ ବଡ଼ କାରଖାନା ପ୍ରଭୃତିରୁ ମୋ ମନ ପଳାଇ ଆସେ।

ଆଉ ନିଶା ସେବା। ଏହା ଅତ୍ୟନ୍ତ କଦର୍ଯ୍ୟ। ଏହା ଆମକୁ ଆଲୋକ ଦେଖାଏ ନାହିଁ। ଏହା ଅନ୍ଧକାରକୁ ଆମକୁ ନେଇଯାଏ।

ପାଠପଢ଼ା ଜ୍ଞାନାର୍ଜନ, କିନ୍ତୁ ସଙ୍ଗେ ସଙ୍ଗେ ସଂଯତ ସୁଶୋଭନ ଜୀବନ ଲୋଡ଼ା। ଏହା ହିଁ ମୋର ଅନୁଭବ।

ମୋର ଜୀବନର ଅଭିଜ୍ଞତାରେ ଦେଖିଛି ଯେ କେତେଗୁଡ଼ିଏ ଲୋକ ଆଦୌ ପରିବର୍ତ୍ତିତ ହୁଅନ୍ତି ନାହିଁ। ଏମ୍. ଏ.; ବି. ଏଲ୍, ଉଚ୍ଚ ଶିକ୍ଷିତ—ତଥାପି ସେମାନଙ୍କର ଧପାବାଜି, କଥାର ଠିକ ନାହିଁ ଇତ୍ୟାଦି।

ଏସବୁ ଲୋକଙ୍କ ସହିତରେ କାରବାରରେ ସାବଧାନ ହେବାକୁ ହେବ ସିନା—ଆଉ କିଛି କରି ହେବ ନାହିଁ। ସେମାନେ ତ ସେହି ବିରାଟର ଗୋଟିଏ ଅଂଶ। ଅତଏବ ତାଙ୍କୁ ଅନାଦୃତ କରିବା ମଧ୍ୟ ଉଚିତ ନୁହେଁ।

ମୁଁ ଅନେକ ରାଗିଛି—ରାଗିବାଟା ଅନ୍ୟାୟ ବୋଲି ବର୍ତ୍ତମାନ ସୁଦ୍ଧା ଭାବିପାରି ନାହିଁ। କିନ୍ତୁ ରାଗି ଯେ ବିଶେଷ କିଛି କୌଣସି କଥାର ପରିବର୍ତ୍ତନ କରିପାରିଛି, ତାହା ମଧ୍ୟ ନୁହେଁ। ଲାଭ କିଛି ହୋଇ ନାହିଁ—ବରଂ ମୋର ନିଜର ଲୋକସାନ ହୋଇଛି। ଅତଏବ ରାଗିବାଟା ଯେ ସବୁ ସମୟରେ ଅନ୍ୟାୟ ତାହା ଉପଲବ୍ଧି କରୁଛି। କିନ୍ତୁ ନ ରାଗି ମଧ୍ୟ କାମ ହାସଲ କରିବାକୁ ହେବ ନିଜର ଦୃଢ଼ତାଦ୍ୱାରା। ଏହି ଚେଷ୍ଟା ହିଁ କରିବାକୁ ହେବ। ସତତ ଆତ୍ମସଂଯମ ପ୍ରତି ଲକ୍ଷ୍ୟ ରଖିବାକୁ ହେବ। କିନ୍ତୁ କେତେକ ଲୋକଙ୍କର ସ୍ୱଭାବ କାର୍ଯ୍ୟ କାରଣ ସମ୍ପର୍କରେ ହଠାତ୍ ରାଗିଯିବା। ମୁଁ ତାଙ୍କ ମଧ୍ୟରୁ ଜଣେ। କିନ୍ତୁ ମୁଁ ଏହା ପସନ୍ଦ କରେ ନାହିଁ। ତେବେ ଏତିକି ଭଲ ଯେ ମୁଁ କାହାର ପ୍ରତିଶୋଧ ନେବା ପାଇଁ ଭବିଷ୍ୟତକୁ ଗଣ୍ଠି କରି ନ ଥାଏ।

ସାର କଥା ମୁଁ ଉପଲବ୍ଧି କରିଛି ଏତିକି ଯେ ମହାଶକ୍ତି ଗୋଟିଏ ଖେଳୁଛି—ବିଶ୍ୱରେ କାର୍ଯ୍ୟ କରୁଛି। ସେହି ମହାଶକ୍ତି ସହିତରେ ମୁଁ ଆଂଶିକ ମିଶାଇବି, ତାଙ୍କ ସହିତରେ ଯୁକ୍ତ ହେବି—ତାଙ୍କର ସତ୍ତ୍ୱାକୁ ସତତ ଅନୁଭବ କରି ନିଜର ଗତିବିଧି ଠିକ କରିବି। ଏହି ଚେଷ୍ଟା ମୁଁ କରେଁ—କିନ୍ତୁ ତାହା ସବୁବେଳେ ସ୍ଥାୟୀ ହେଲେ କେତେ ମଙ୍ଗଳ ହୁଅନ୍ତା। ତାହା ପାରେ ନାହିଁ—ପାରି ନାହିଁ।

ଲକ୍ଷ୍ମୀନାରାୟଣ ସାହୁ

# ଏକା ! ! !

## ଶ୍ରୀ ହରେକୃଷ୍ଣ ମହତାବ

ଦୀର୍ଘ ପଞ୍ଚସ୍ତରି ବର୍ଷର ଏ ଜୀବନ, ତା' ପୂର୍ବର ଓ ପରର କେଜାଣି କେତେ ଅସଂଖ୍ୟ ବର୍ଷର କାହାଣୀ ମୁହୂର୍ତ୍ତକେ ଅଭିନୀତ ହୋଇଗଲା; ସିନେମା ଚିତ୍ର ଭଳି ଘରିଆଡ଼ ଅନ୍ଧାର ଭିତରେ; ମାତ୍ର ଚିତ୍ରଗୁଡ଼ିକ ଆଲୋକିତ, ଅନ୍ତର୍ଦୃଷ୍ଟିରେ ଦର୍ଶନୀୟ ଓ ହୃଦୟରେ ଅନୁଭବ୍ୟ । ଅପୂର୍ବ ସେ ଦୃଶ୍ୟ, ଭାଷା କି ପାରିବ କରି ତା'ର ବର୍ଣ୍ଣନା ? ସେ ଗଳ୍ପ ନୁହେଁ ବା କାହାରି ଅନୁମାନ ନୁହେ, ସତ୍ୟ ଯେପରି ମୂର୍ତ୍ତି ଗ୍ରହଣ କରି ନିଜକୁ ନିଜେ ବର୍ଣ୍ଣନା କରିଯାଉଛି । ଆଣବିକ ବିଜ୍ଞାନ ଆହୁରି କେତେ ଉନ୍ନତ ହେଲେ ଯାଇ ସେ ବିଚିତ୍ର ଦୃଶ୍ୟର ଫଟୋ ଫିଲ୍ମକରି ଆବାଳବୃଦ୍ଧବନିତା ସମସ୍ତଙ୍କୁ କହି ଦିଆଯିବ ଯେ ସେମାନେ ପ୍ରତ୍ୟେକେ ଏକା ।

ଶ୍ୱାସରୋଗ ସହିତ ଅନ୍ୟ କେତେକ ରୋଗ ଷଡ଼ଯନ୍ତ୍ର କରି ଘେରି ନେଲେଣି ଶରୀରକୁ । ବୟସ ତେଣେ ଜାଲ ପକାଇ ବସିଛି । ପଞ୍ଚସ୍ତରି ବର୍ଷ କିଛି କମ୍ ନୁହେଁ, ବିଶେଷତଃ ତାଙ୍କ ପକ୍ଷରେ, ଯେ ବାଲ୍ୟ ବା ଯୁବାବସ୍ଥାରେ ସ୍ୱାସ୍ଥ୍ୟ ପ୍ରତି ଆଦୌ ଦୃଷ୍ଟି ଦେଇ ନାହାନ୍ତି ବା ଦୃଷ୍ଟି ଦେବା ପାଇଁ ଯାହାଙ୍କର ସେପରି ସମ୍ବଳ ନ ଥିଲା । ଦୀର୍ଘକାଳ ପୀଡ଼ିତ ରହି ହଠାତ୍ ଦିନେ ସଂଧ୍ୟାବେଳେ ଲକ୍ଷ୍ମୀନାରାୟଣ ବିଛଣାରେ ପଡ଼ିରହି ବଳବଳେଇ ହେଲେ—"ମୁଁ ଏତେ ଲୋକଙ୍କ ପାଇଁ ଏତେ କଲି, କେହି ଟିକେ ମୋତେ ଦେଖିବା ପାଇଁ ପୁଛା ଆସିଲେ ନାହିଁ !!!" ନିଜର ସ୍ତ୍ରୀ ସେହିପରି ବୟସ୍କା, ଜୀବନରେ ଶ୍ରାନ୍ତି ବୋଲି କଅଣ ସେ ଜାଣିନାହିଁ, ଶାରୀରିକ ଓ ମାନସିକ କ୍ଲେଶର ଚିହ୍ନ ସମସ୍ତ ମୁଖମଣ୍ଡଳରେ ସ୍ପଷ୍ଟଭାବରେ ଅଙ୍କିତ, ଚରଚର ହୋଇ ବାହାରୁ ବିଛଣା ପାଖକୁ ଆସି ବସିପଡ଼ି ସ୍ୱାମୀଙ୍କର ମୁଣ୍ଡରେ ହାତ ମାରି ଧୀରେ ଧୀରେ ପଚାରିଲେ, 'କଅଣ ହେଉଛି ?' ଲକ୍ଷ୍ମୀନାରାୟଣଙ୍କ ଜୁରୁଣ ଶରୀରରେ ଯେତିକି ଉତ୍ତେଜନା ପ୍ରକାଶ ପାଇବା ସମ୍ଭବ, ତା'ଠାରୁ ବୋଧହୁଏ ଟିକିଏ ବେଶୀ ଉତ୍ତେଜନା ପ୍ରକାଶ କରି ବକି ହେଲେ ମୁଁ ଖାଇ ନାହିଁ, ପିଇ ନାହିଁ, ଉପାସେ ଲୋକେ ଦୌଡ଼ି ଦୌଡ଼ି ଭୋକିଲା ପେଟରେ ଦାନା ପକାଇଛି; କେତେ ରୁଗ୍ଣ, କେତେ ଶିକ୍ଷିତ ଲୋକଙ୍କୁ ନାନା ଉପାୟରେ ସାହାଯ୍ୟ କରିଛି, ଏପରି ଗାଁ ନାହିଁ ଯେଉଁଠି କି ମୁଁ କିଛି ନା କିଛି ସେବା ନ କରିଛି । ଆଜି ମୁଁ ମରଣ-ଦୁଆରେ, ଏତେ କାଳ ବେମାର ରହିଲି, କେହି ଟିକିଏ ଆସି ପଚାରିଲେ ନାହିଁ !!! ଉଠ୍, ଯାଆ ତୁ ବି ଯାଆ । ତୋତେ ପରି ମୁଁ ଜୀବନସାରା ପଚାରି ନାହିଁ; ଗହଣା ମାଗିଛୁ ମୁଁ ବାଡ଼େଇଛି, ଭଲ ଶାଢ଼ୀ ଖୋଜିଛୁ, ମୁଁ ବାଡ଼େଇଛି, ଘର ଖର୍ଚ୍ଚ ନାହିଁ କହିଚୁ, ମୁଁ ତୋ ହାତରୁ ବାପଘରୁ ଆଣିଥିବା ଚୁଡ଼ିକୁ ଛଡ଼ାଇ ବିକି କରିଛି, ତୁ କାନ୍ଦି କାନ୍ଦି ଉପାସେ ରହିଛୁ, ମୁଁ ଗୋଇଠା ମାରି କହିଛି ଏ ଖରଚଦୋଷରେ ଏପରି ଅପଦାର୍ଥ ମୋର ସ୍ତ୍ରୀ ହୋଇ ଆସିଛୁ, ତୋ ସାଙ୍ଗରେ ବାହା କରିବା ଯୋଗୁଁ ବାପ ମାଆଙ୍କୁ ଗାଳି ଦେଇଛି, ସେହି ତୁ ଆଜି ମୋ ପାଖରେ, ଆଉ କେହି ମୋତେ ପଚାରିଲେ ନାହିଁ..."

ମନେ ପଡ଼ିଗଲା ଦୀର୍ଘ ପଚାଶ ବର୍ଷର ଟିକିନିଖି କଥା । ବାଲେଶ୍ୱର ସହରର ଏକ ଧନୀ ପରିବାର, ମାତ୍ର ଜାତିରେ ଗୁଡ଼ିଆ । ପାଇକି ଜାତି ହାତରେ ପଇସା ଥାଏ, ମାତ୍ର ସମାଜରେ ସମ୍ମାନ ଥାଏ ନାହିଁ । ସେତେବେଳେ ଶିକ୍ଷାର ବିସ୍ତାର ମଧ୍ୟ ସେପରି ନ ଥିଲା । କେବଳ ଉପର ଶ୍ରେଣୀର ଅଳ୍ପ କେତେକ ଧନୀ ଘରର ପିଲାଏ ପାଠ ପଢ଼ୁଥିଲେ; କିନ୍ତୁ ବାଲେଶ୍ୱରରେ ବ୍ରାହ୍ମ-ସମାଜର ପ୍ରଭାବ ସେତେବେଳେ ବେଶୀ ଥିଲା । ଯେଉଁମାନେ ସମାଜର ନିମ୍ନସ୍ତରର ଲୋକ ବୋଲି ଉପେକ୍ଷାର ଚାପରେ ଶ୍ୱାସରୁଦ୍ଧ, ସେହିମାନେ ବ୍ରାହ୍ମସମାଜରେ ମୁକ୍ତ ସମୀରଣର ସନ୍ଧାନ ପାଉଥିଲେ । ସେତେବେଳକାର ନୂତନ ଯୁଗର କରାଘାତରେ ପ୍ରାଚୀନ ଗୋଷ୍ଠୀର ଦ୍ୱାର ମଧ୍ୟ ଖୋଲି ଖୋଲି ଯାଉଥାଏ । ଶିକ୍ଷା ଲାଭ କରି ସରକାରୀ ହାକିମ ହେବାର ଉଚ୍ଚାଭିଳାଷ ଧୀରେ ଧୀରେ ସମାଜର ନିମ୍ନସ୍ତରରେ ପ୍ରବେଶ କରୁଥାଏ । ଏହି ଅବସ୍ଥାରେ ଲକ୍ଷ୍ମୀନାରାୟଣ ବାଲେଶ୍ୱର ଜିଲ୍ଲାସ୍କୁଲରେ ପାଠ ପଢି ଶେଷରେ ବି. ଏ. ପାସ୍ କଲେ । ପରିବାରବର୍ଗ ବହୁ ଆଶା ପୋଷଣ କରି ଲକ୍ଷ୍ମୀନାରାୟଣଙ୍କୁ ସଂସାର-ସମୁଦ୍ର ଭିତରକୁ ଭସାଇ ଦେବା ପାଇଁ ଆୟୋଜନ କଲେ । ଭେଳା ଭସାଇବା ପୂର୍ବରୁ ପୂଜା ବନ୍ଦାପନା ଯେପରି ଅନିବାର୍ଯ୍ୟ, ସଂସାର ଭିତରକୁ ପଶିବା ପୂର୍ବରୁ ବିବାହ ସେହିପରି ଅବଶ୍ୟ କର୍ତ୍ତବ୍ୟ । ଲକ୍ଷ୍ମୀନାରାୟଣ ପିଲାଦିନୁ ଅମାନିଆ; କିନ୍ତୁ ତାଙ୍କୁ ମଣିଷ କରାଇବା ସେପରି କଷ୍ଟ ନୁହେଁ ଭାବି, ସସ୍ନେହ ସହ ପିତାମାତା ତାଙ୍କୁ ବିବାହ କରାଇଦେଲେ । କିନ୍ତୁ ବିବାହର ପ୍ରଥମ ଅବସ୍ଥାରୁ ନିଜର ସ୍ତ୍ରୀକୁ ଭିନ୍ନ ଚକ୍ଷୁରେ ଲକ୍ଷ୍ମୀନାରାୟଣ

ଦେଖିବାରେ ଲାଗିଲେ । ସେ ବହୁଥର ଆସିଛନ୍ତି ଉପଦେଶ କରିବା ପାଇଁ; କିନ୍ତୁ ତା'କୁ ମାରପିଟି ଅମର୍ଯ୍ୟାଦା ବାଟରେ ଚଳାଇବାର ଉଦ୍ୟମ କରି ସ୍ୱାମୀ ଯେ କି ଅତ୍ୟାଚାର କରିଥିଲେ ସବୁ ଟିକି ଟିକି ସ୍ତ୍ରୀଙ୍କର ମନେ ପଡ଼ିଗଲା । ପାଠପଢ଼ା ଶିଖିବା ପାଇଁ ଚାଟଶାଳୀ ପିଲା ଯେପରି ଅବଧାନଙ୍କ ହାତରେ ନିର୍ଯ୍ୟାତନା ଭୋଗିଥାନ୍ତି, ଅକ୍ଷର ଶିଖି ଲେଖିବା ପାଇଁ ଲକ୍ଷ୍ମୀନାରାୟଣଙ୍କ ସ୍ତ୍ରୀ ତା'ଠାରୁ ବୋଧହୁଏ ବେଶୀ ନିର୍ଯ୍ୟାତନା ଭୋଗ କରିଥିଲେ, ତଥାପି ଚାଟଶାଳୀ ପଢ଼ାରୁ ବେଶୀ ଦୂର ସେ ଯାଇ ପାରି ନ ଥିଲେ । ଜାତି ଯେତେ ଯେତେବେଳେ ଅସମ୍ମାନ ପ୍ରଦର୍ଶିତ ହୁଏ ସେତେବେଳେ ନିଜକୁ ପାରି ଜାତିର ଲୋକ କହି ସ୍ତ୍ରୀକୁ ପାରେ ସାହରେ ମାରପିଟି ଚାଲିଗଲେ । ପଥୁରିଆ ଜାଗାରେ ମାଟି ଭିତରୁ ବୀଜର ଅଙ୍କୁର ଯେପରି ପ୍ରବଳ ବାଧା ବିରୋଧରେ ଲଢ଼ା-ଭିଡ଼ା କରି ଶେଷରେ ବାହାରକୁ ମୁଣ୍ଡ ଟେକି ଉଠେ ଓ ବିଶାଳ ବୃକ୍ଷ ହୋଇ ଜଗତର ଦୃଷ୍ଟି ଆକର୍ଷଣ କରିବାର ଅଭିଳାଷ ପୋଷଣ କରେ, ସେହିପରି ଦୃଢ଼-ଶରୀର ଯୁବକ ଲକ୍ଷ୍ମୀନାରାୟଣ ଏପାଖେ ସେପାଖେ ଆଗପଛ ସବୁ ଆଡ଼େ ଧକ୍କାମାରି ଆଗେଇଲେ । ପାଖରେ ଟାଣି ଟାଣି ନେଉଥାନ୍ତି ହାଣ୍ଡିକୁ ନେବା ଛେଳି ଭଳି ସ୍ତ୍ରୀକୁ, ସେ ଯେପରି ମନୁଷ୍ୟ ନୁହେଁ, ତା'ର ଯେପରି ନିଜର ଆଶା ଅଭିଳାଷ କିଛି ନାହିଁ; କିନ୍ତୁ ଗୋଟିଏ କଥା ଶୁଣି ଆସିଛୁ ଯେ ଜଣକର ପ୍ରୀତିଭାଜନ ହେବାଠାରୁ ଅସଂଖ୍ୟ ଜନତାର ପ୍ରୀତିଭାଜନ ହେବାରେ ସାର୍ଥକତା ଅଛି—କାହିଁ ସେ ଜନତା ? କେହି ତ ଟିକିଏ ଦେଖିବା ପାଇଁ ପୁଛା ଆସିଲେ ନାହିଁ !!

କାଳି କାଳି ସ୍ତ୍ରୀ ଘର ଭିତରକୁ ପୁଣି ଆସିଲେ; ମାତ୍ର କାହାଣୀକୁ ପାରୁ ପର୍ଯ୍ୟନ୍ତ ଲୁଚାଇ ଦେଉଛନ୍ତି ସେ । ଲୁଚାଇ ନ ପାରିଥିଲେ ମଧ୍ୟ ଲକ୍ଷ୍ମୀନାରାୟଣଙ୍କୁ ସେଥି ପ୍ରତି ଦୃଷ୍ଟି ଦେବା ପାଇଁ ଅବସର ନ ଥିଲା । ବାହ୍ୟ ଜଗତରୁ ମନ ଅପସରି ଯାଇ ଅନ୍ତର୍ଜଗତରେ ଧୀରେ ଧୀରେ ନିବଦ୍ଧ ହେଉଛି । ଏହି ଅବସ୍ଥାର ପ୍ରଥମାଂଶ ହେଉଛି ସ୍ମୃତିର କ୍ରିୟାଶୀଳତା । ସେହି ଅବସ୍ଥାରେ ଲକ୍ଷ୍ମୀନାରାୟଣ ବିକାବିକୋଉ ଥିଲେ । ହଠାତ୍ କହି ପକାଇଲେ "ଭୁଲ ହୋଇଛି, କ୍ଷମା କର ।" ଏତିକି କହି ସ୍ଥିର ଦୃଷ୍ଟିରେ ଅନାଇଁ ରହିଲେ କିଛି କ୍ଷଣ । କ୍ଷୀଣ ସ୍ୱରରେ ଏକ ପୁରୁଣା ବଙ୍ଗଳା ଗାନ୍ ମୁହଁରୁ ବାହାରି ଗଲା—

"ଏକା ଏସେଛି ଏକା ଚଲେ ଯାବୋ
ଧାରି ନା'କ କା'ର ଧାର"

(ଏକା ଆସିଛି, ଏକା ଚାଲିଯିବି, ଧାରି ନାହିଁ କାହାର (ଧାର)—ସଙ୍ଗେ ସଙ୍ଗେ ପ୍ରାଣବାୟୁ ଟିକିକ ମଧ୍ୟ ଚାଲିଗଲା । ପାଖରେ ସ୍ତ୍ରୀ ମୁଣ୍ଡ ପିଟି ଲୋଟି ହେଉଛି; କିନ୍ତୁ ସେ ଯାଇ ଅନନ୍ତ ସତ୍ତାରେ ।

ସେଇ କେତେକ୍ଷଣ ସ୍ଥିର ଦୃଷ୍ଟିରେ ଲକ୍ଷ୍ମୀନାରାୟଣ ଚାହିଁଥିଲେ ଓ ସେଇ କ୍ରିୟାର ଶେଷରେ ଯେ ଅନୁଭବ କଲେ ଯେ ସେ ଏକା, ସେ କେତେ କ୍ଷଣର ଚିନ୍ତା ବା ଅନୁଭୂତି ତ ପୃଥିବୀର ସମସ୍ତ ଦର୍ଶନ ସୃଷ୍ଟି କରିଛି । 'ଏତେ ଲୋକଙ୍କର ଏତେ ସେବା କଲି, ଏତେ ଉପକାର କଲି, କେହି ଟିକିଏ ପଚାରିଲେ ନାହିଁ' ଏହା ତ ହେଉଛି ବିଶ୍ୱ ମାୟାର ନିଷ୍ଠୁର ପରିହାସ ମନୁଷ୍ୟର 'ଅହଂ' ପ୍ରତି । 'ଭୁଲ କରିଛି, କ୍ଷମା କର, ଏହି ତ ହେଉଛି ଦୀର୍ଘ ପଚିଶ ବର୍ଷର ତ୍ୟାଗର ଅନ୍ତିମ ଅନୁଭୂତି । କିନ୍ତୁ ଭୁଲ କେଉଁଠି ? ତ୍ୟାଗ ଭିତରେ ଯେ 'ଅହଂ' ପ୍ରଚ୍ଛନ୍ନ ଭାବରେ କାର୍ଯ୍ୟ କରୁଥିଲା, ତାହା ହିଁ ଥିଲା ଭୁଲ; କିନ୍ତୁ କି ଦୁଃଖମୟ ସେ ଅନୁଭୂତି ? ଜଣକର ଅନୁଭୂତିର ପ୍ରକାଶ ପରେ ଯେ ଅନ୍ୟମାନେ ସାବଧାନ ହୋଇଯିବେ, ତାହା ମଧ୍ୟ ନୁହେଁ; ଜଣକର ବା ଲକ୍ଷ ଲକ୍ଷଙ୍କର ଅନୁଭୂତି ଫଳରେ ବିଧାତାଙ୍କ ସୃଷ୍ଟି ଯେ ପରିବର୍ତ୍ତିତ ହୋଇଯିବ ତା ନୁହେଁ । 'ଅହଂ' ତା'ର କାର୍ଯ୍ୟ କରିବ, ଯାହା ତା'ର ଅନୁଭୂତି ହେଉଥାଉ ପଛକେ; କିନ୍ତୁ ସେହି 'ଅହଂ'ର ପରିସୀମା ଭିତରେ ମନୁଷ୍ୟ ତ ସମାଜ ଭିତରେ ଛନ୍ଦାଛନ୍ଦି ହୋଇ ରହିବ ? ଜୀବନବ୍ୟାପୀ ସେବାନିରତ ଲକ୍ଷ୍ମୀନାରାୟଣଙ୍କର ଶେଷରେ 'ଏକା' ବୋଲି ଅନୁଭବ କରିବା ହେଉଛି ତାଙ୍କର ମହତ୍ତ୍ୱ । ତାଙ୍କର ବିଷାଦ ନେଇ ଗଲା ତାଙ୍କୁ ଉଚ୍ଚ ଆଧ୍ୟାତ୍ମିକ କ୍ଷେତ୍ରକୁ, କିନ୍ତୁ ଯେଉଁ ସମାଜରେ ସେ କାର୍ଯ୍ୟ କରିଥିଲେ, ସେ ସମାଜକୁ କି ଭାବରେ ଚିତ୍ର କରାଯିବ ? ମୁଣ୍ଡ ତଳକୁ କରି ଲଜ୍ଜିତ ହେବାକୁ ହେବ ଯେ ଲକ୍ଷ୍ମୀନାରାୟଣ 'ଏକା' ବୋଲି ଶେଷରେ ଅନୁଭବ କଲେ । ଏ ଅନୁଭୂତି ଆମ୍ଭମାନଙ୍କ ପ୍ରତି ଅଭିଶାପ ନୁହେଁ ତ ?

———

# ମାଟିର ଦାର୍ଶନିକ

## ସୁରେନ୍ଦ୍ର ମହାନ୍ତି

ଦୀର୍ଘକାୟ, ମୁଣ୍ଡିତ ବୌଦ୍ଧଭିକ୍ଷୁ ପରି, ଦୁଇ ଆଖିର ସୁଦୂରପ୍ରସାରୀ ଦୃଷ୍ଟିରେ ଏକ ସ୍ନିଗ୍ଧ ପ୍ରଶାନ୍ତି, ଅନ୍ତତଃ ଅର୍ଦ୍ଧଶତକ ଏମ୍. ଏ. ଡିଗ୍ରୀ ସତ୍ତ୍ୱେ ନିରଭିମାନ ଶିଶୁସୁଲଭ ଜ୍ଞାନ ଆହରଣର ଅଦମ୍ୟ କୌତୂହଳରେ ଚିରଚଞ୍ଚଳ, ନିରାଡ଼ମ୍ବର, ନିରଳସ ଓ ଉନ୍ନାସିକତାବର୍ଜିତ ଏକ ଗରିମାମୟ ଗ୍ରାମ୍ୟ ମୂର୍ତ୍ତି; ବନ୍ୟା-ପ୍ରପୀଡ଼ିତ ଗ୍ରାମ୍ୟାଞ୍ଚଳର ଆର୍ତ୍ତ ଓ ପୀଡ଼ିତର ରୋଗଶଯ୍ୟା ପାଖରେ, ରାଜନୈତିକ ମଂଚରେ, ବିଦଗ୍ଧ ସାହିତ୍ୟ-ସମାଜରେ, ସଂଗୀତ ଉତ୍ସବରେ, ମୁଖ୍ୟ ମଣ୍ଡଳ ଓ ମହାମାଙ୍କରେ, ରାସ୍ତାରେ, ଗଳିରେ, ଦପ୍ତରେ— ଯେଉଁ ଅତି ପରିଚିତ ମଣିଷଟି ଶତ ନମସ୍କାରର ପ୍ରତିନମସ୍କାର ଜଣାଇ ଜଣାଇ ନାନା କୁଶଳ ପ୍ରଶ୍ନ ଜିଜ୍ଞାସା କରି କରି ବୁଲୁଥିଲେ, ବୁଲୁଥିଲେ, ସେବାର ଯେ ଥିଲେ ଏକ ଜୀବନ୍ତ ବିଗ୍ରହ, ସଂବେଦନଶୀଳ ସହାନୁଭୂତିର ସିଏ ଥିଲେ ଏକ ସ୍ନିଗ୍ଧ ପ୍ରତିମା, ଅନନ୍ତ ଜ୍ଞାନପିପାସାର ସିଏ ଥିଲେ ଏକ ଅଶାନ୍ତ ପ୍ରତିମୂର୍ତ୍ତି ପୁଣି ସର୍ବୋପରି ସିଏ ଥିଲେ ଏକ ଅସାଧାରଣ ଭାବରେ ସାଧାରଣ ମଣିଷ, ବ୍ୟର୍ଥତାର ଜ୍ୱାଳା ଯାହାଙ୍କୁ କେବେ ଉତ୍ପୀଡ଼ିତ କରି ନ ଥିଲା କିମ୍ବା ଉତ୍କଟ ରାଜନୈତିକ ଉଚ୍ଚାକାଂକ୍ଷା ଯାହାଙ୍କୁ କେବେ ଜର୍ଜରିତ କରି ନ ଥିଲା, ଏକ ସଂସ୍କୃତିମନ୍ତ ଭାରତୀୟ ଜନତାର ସିଏ ଥିଲେ ଏକ ସାର୍ବଜନୀନ ପ୍ରତିନିଧି··· ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ—ଆଜି ତାଙ୍କ ମୃତ୍ୟୁର ଗୋଟିଏ ବର୍ଷ ସମାପ୍ତ ହେଲା। ସମାଜରେ ଯେଉଁ ମୁଷ୍ଟିମେୟ କେତେ ଜଣ ମୃତ୍ୟୁର ଗ୍ରାସରେ ବିଲୀନ ହେବାପରେ ଏକ ଅପୂରଣୀୟ ଶୂନ୍ୟତା ଛାଡ଼ି ଯାଆନ୍ତି, ଲକ୍ଷ୍ମୀନାରାୟଣ ସାହୁ ସେହିପରି ଜଣେ। ମୋ ମତରେ ଏହାହିଁ ତାଙ୍କ ଜୀବନ ଓ ସାଧନାର ଶ୍ରେଷ୍ଠ ପରିଚୟ।

ମୁଁ ସେହିମାନଙ୍କ ମଧ୍ୟରୁ ଜଣେ ଯେଉଁମାନଙ୍କର ବିଚାରରେ ରାଜନୈତିକ ପ୍ରତିପତ୍ତି, ପାଣ୍ଡିତ୍ୟର ଅଭିମାନ, ଅର୍ଥର ଦର୍ପ ଅଥବା ଏକ ଅସାଧାରଣତାର ଔଜ୍ଜ୍ୱଲ୍ୟ ବ୍ୟକ୍ତିତ୍ୱ ବିଚାରର ନିୟାମକ ନୁହେଁ। ନିତାନ୍ତ ସାଧାରଣ କଥା ମଧ୍ୟରେ ହିଁ ଯେଉଁମାନଙ୍କର ଅସାଧାରଣତା, ଏକ ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ଓ ଭକ୍ତିର ଉଦ୍ରେକ କରେ ସେହି ସାଧାରଣ—ଅସାଧାରଣତା ହିଁ ବ୍ୟକ୍ତିତ୍ୱ ବିଚାରର ଶ୍ରେଷ୍ଠ ମାନଦଣ୍ଡ।

ଲକ୍ଷ୍ମୀନାରାୟଣ ସାହୁଙ୍କଠାରେ ସେହି ଅସାଧାରଣତା ଯେପରି ମୂର୍ତ୍ତ ହୋଇଥିଲା। ୧୯୪୫ ସାଲ ସାପ୍ତାହିକ "ଜନତା" ପ୍ରକାଶ ପାଉଥିବାବେଳେ ମୁଁ ସେଥିରେ ଗୋଟିଏ ସ୍ତମ୍ଭ ଧାରାବାହିକ ଭାବରେ ପ୍ରକାଶ କରିବାର ପରିକଳ୍ପନା କରିଥିଲି। ତାହା ହେଉଛି ପ୍ରତ୍ୟେକ ସପ୍ତାହରେ ଜଣେ ଜଣେ ବିଶିଷ୍ଟ ବ୍ୟକ୍ତି ନିଜ ସମ୍ବନ୍ଧରେ ନିଜ ମୃତ୍ୟୁର ଶୋକଲିପି (Obituary) ଲେଖିବେ। ଏକ ଦର୍ପଣ ସମ୍ମୁଖରେ ଠିଆହୋଇ ନିଜର ପ୍ରତିମୂର୍ତ୍ତି ନିଜେ ଦେଖିଲା ପରି ଏହି ରଚନାରେ ଅତ୍ୟନ୍ତ ଅକପଟ ଭାବରେ କୌଣସି ଛଦ୍ମବେଶ ନ ରଖି ପ୍ରକାଶ ପାଇବ ନିଜର ପ୍ରତିଚ୍ଛବି। ଯେଉଁ ୨୫ ଜଣଙ୍କ ନିକଟକୁ ମୁଁ ଅନୁରୋଧ ପତ୍ର ଦେଇଥିଲି, ଲକ୍ଷ୍ମୀନାରାୟଣ ସାହୁ ସେମାନଙ୍କ ମଧ୍ୟରୁ ଥିଲେ ଜଣେ। ଅନେକେ ଏହା ଏକ ବିକୃତ ଚିନ୍ତା'ର ଉଦ୍ଭଟତା ବୋଲି ଗାଳିଦେଇ ପତ୍ର ଲେଖିଲେ। ସ୍ୱଭାବସୁଲଭ ରୀତିରେ ଆଉ କେତେକ ଚିଠିର ଜବାବ ସୁଦ୍ଧା ଦେଲେ ନାହିଁ। ଦିନେ ଯାଉଁଳିଆପଟି ବାଟେ ଚାଲି ଚାଲି ଯାଉଚି, ହଠାତ୍ ଦେଖିଲି ରାସ୍ତା ଉପରେ ଛିଡ଼ା ହୋଇ ଲକ୍ଷ୍ମୀନାରାୟଣ ବାବୁ ସାଇକେଲ ସିଟ୍‌କୁ ଗୋଟିଏ ମେଜରୂପେ ବ୍ୟବହାର କରି ବଡ଼ାଏ କାଗଜରେ କଣ ଲେଖୁଛନ୍ତି। ମୁଁ ନମସ୍କାର କରିବା ମାତ୍ରେ ସେ କହିଉଠିଲେ—"ସୁରେନ୍ଦ୍ର, ହଠାତ୍ ମନେପଡ଼ିଲା ଏଇ ସପ୍ତାହରେ ତମକୁ ମୋର ନିଜର ଶୋକଲିପି ଦେବା କଥା। ସେଥିପାଇଁ ମୁଁ ଏଠାରେ ଲେଖୁଛି। ଲେଖାଟା ସରି ଆସିଲାଣି, ନେଇଯାଅ।" କିଛି ସମୟ ପରେ ଲେଖାଟି ଶେଷ ହେଲା ଓ ମୁଁ ଲେଖାଟି ଧରି ଆସିଲି। ଏହିପରି ରାସ୍ତା ଉପରେ ସାଇକେଲ ସିଟ୍ ଉପରେ କେତେ ରାଜନୈତିକ ବିବୃତି, ଝଦରକାଗଜରେ କେତେ ପ୍ରବନ୍ଧ, କେତେ ରମ୍ୟରଚନା ଓ କବିତା ଯେ ଲକ୍ଷ୍ମୀନାରାୟଣ ବାବୁ ସୃଷ୍ଟି କରିଛନ୍ତି ତାହାର ଇୟତ୍ତା ନାହିଁ। ତାଙ୍କର ଲେଖା ଏକ ଚେତନ ମନର ଆୟାସ—ସିଦ୍ଧ ଶବ୍ଦ ସଂଯୋଜନା ନୁହେଁ। ତାହା ଅବଚେତନର ଏକ ଉଚ୍ଛ୍ୱାସ— ଜ୍ୟୋତ୍ସ୍ନାର ଗୋଟିଏ ଝଲକ ପରି, ଝଞ୍ଜାର ଏକ ଆଘାତ ପରି ଅଥବା ଚଇତାଳିର ଏକ ଚୋରା ସ୍ପର୍ଶ ପରି ଯାହା ସ୍ପର୍ଶ କରିଯାଏ—ଯାହାକୁ ଅନୁଭବ କରି ହୁଏ, ମାତ୍ର ବର୍ଣ୍ଣନା କରି ହୁଏ ନାହିଁ।

ଲେଖାଟି ଧରି ଫେରିଲି । ଏକମାତ୍ର ତାଙ୍କ ଲେଖା ଛଡ଼ା ବହୁ ପ୍ରତୀକ୍ଷା ପରେ ଆଉ କାହାର ଲେଖା ମିଳିଲି ନାହିଁ । ତେଣୁ ଗୋଟିଏ ଲେଖା ପ୍ରକାଶ କରି ସ୍ମୃତିକୁ ବନ୍ଦ କରିଦେବା ମୋର ଅଭିପ୍ରାୟ ନ ଥିଲା । ସେଥିପାଇଁ ଲେଖାଟି ସେହିପରି ଭାବରେ ମୋ ଦରାଜରେ ପଡ଼ିଥାଏ ।

ସେଦିନ ସନ୍ଧ୍ୟା ପ୍ରାୟ ୮ଟା । ବାହାରେ ମୂଷଳ ଧାରାରେ ବର୍ଷା ଓ ଅନ୍ଧକାର । ନିମଚୌଡ଼ି ଅଞ୍ଚଳରେ ମୋ ଘରବାଡ଼ିର ଦରଜାରେ ହଠାତ୍ ଆଘାତ ପଡ଼ିଲା । ବାରମ୍ବାର ଆଘାତ ପରେ କବାଟ ଫିଟାଇ ଦେଖିଲି, ଅଧାଦେହ ଭିଜି ଛିଡ଼ାହୋଇଛନ୍ତି ଲକ୍ଷ୍ମୀନାରାୟଣ ସାହୁ । ମୁଁ ତାଙ୍କୁ କିଛି ପଚାରିବା ଆଗରୁ ସେ ମୋତେ କହିଲେ, "ସୁରେନ୍ଦ୍ର, ମୋ ଲେଖାରେ ଗୋଟିଏ ଭୁଲ ରହିଯାଇଛି । ମୁଁ ସେଥିରେ ଲେଖିଛି ଆଇସ୍‌ବର୍ଗର ୧୧ଭାଗରୁ ମାତ୍ର ୧ ଭାଗ ପାଣି ଭିତରେ ବୁଡ଼ିଥାଏ ଓ ଉପରକୁ ମୋଟେ ଗୋଟିଏ ଭାଗ ଦେଖାଯାଉଥାଏ । କିନ୍ତୁ ତାହା ୮ଭାଗରୁ ଭାଗେ ହେବ, ସଂଶୋଧନ କରିଦେବ ।

ଲକ୍ଷ୍ମୀନାରାୟଣ ବାବୁ ଯେଉଁ ପ୍ରସଙ୍ଗରେ ଏହା କହିଲେ ତାହା ହେଉଛି, ସେ ଲେଖିଥିଲେ "ଲକ୍ଷ୍ମୀନାରାୟଣ ସାହୁଙ୍କର ପରଲୋକ ଘଟିଲା । ସେ ଆଇସ୍‌ବର୍ଗ ପରି ମଣିଷଟିଏ ଥିଲେ । ତାଙ୍କର ୧୧ଭାଗରୁ ୧୦ଭାଗ ପାଣି ଭିତରେ ବୁଡ଼ି ରହିଥିଲା ଯାହା ଉପରକୁ ଦିଶୁଥିଲା ତାହା ଗୋଟିଏ ଭାଗ ମାତ୍ର" । ସଂଶୋଧନ ପାଇଁ ଏତିକି ସୂଚନା ଦେବା ପରେ କପେ ଚାହାପାଇଁ ସୁଦ୍ଧା ସେ ଅପେକ୍ଷା ନ କରି ଚାଲିଗଲେ । ଯେପରି ଅନାହୂତ ଭାବରେ ଅନ୍ଧାରରେ ଆସିଥିଲେ, ସେହିପରି ଆକସ୍ମିକ ଭାବରେ ସେ ଅନ୍ଧାର ରାସ୍ତାରେ ମିଶିଗଲେ । ଲକ୍ଷ୍ମୀନାରାୟଣ ଏହିପରି ଭାବରେ ରହି ଆସିଛନ୍ତି, ଔଜ୍ଜ୍ୱଲ୍ୟର ଅନ୍ତରାଳରେ, ଘୋଷଣାର ନେପଥ୍ୟରେ ଏକ ଅନାବିଷ୍କୃତ ମହାଦେଶ ପରି । ବାସ୍ତବିକ ସେ କଣ ଭାବୁଥିଲେ, କଣ ଚିନ୍ତା କରୁଥିଲେ ? କଣ ଅନୁଭବ କରୁଥିଲେ ? ତାହା ଆବିଷ୍କାର କରି ଆଜି ଲାଭ ନାହିଁ । ସେ ଓଡ଼ିଶାର ନାମହୀନ ମନ୍ଦିରମାନଙ୍କ ପରି ।

ଆଉ ଗୋଟିଏ ଦିନର ସ୍ମୃତି । ଇଂରାଜୀ ସାପ୍ତାହିକ "ଅବଜରଭର୍" ଅଫିସ୍‌ରେ ମୋର ପୂଜ୍ୟପାଦ ଶ୍ୱଶୁର ମଧୁବାବୁଙ୍କ ଲାଇବ୍ରେରୀ ଘରେ ବସିଛି । ମେ ମାସର ଉଦୁଉଦିଆ ଦ୍ୱିପ୍ରହର । ବାହାରେ ଗରମ ପବନ ଲୁ ପରି ଧୂଳି ଓ ଶୁଖିଲା ପତ୍ର ଧରି ଉଡ଼ୁଛି । ସେହି ଅମାନୁଷିକ ମୁହୂର୍ତ୍ତରେ ମଧ୍ୟ ଲକ୍ଷ୍ମୀନାରାୟଣ ବାବୁ ହାଜର । ମୋର ଶାଶୂଙ୍କ ନାମ ଧରି ସେ ସଙ୍ଗେ ସଙ୍ଗେ ତାଙ୍କୁ ଡାକି ହଠାତ୍ ବରାଦ୍ ଦେଲେ— ଖାଇବାକୁ ଆଣ । ଭୋକ ଲାଗୁଛି । ପାଦରେ ଚାଲି ଚାଲି ଏଇ ଚୌଦ୍ୱାରରୁ ଆସିଲି ।"

ମୁଁ ବିସ୍ମୟରେ ପଚାରିଲି, "ସାର୍, ଆପଣ ଏପରି ଅବେଳରେ ?" ସେ କହିଲେ, "ମୁଁ ଆଜି ନାଗପୁର ଯିବି, ଏମ୍, ଏ, ପରୀକ୍ଷା ଦେବାପାଇଁ । ପରୀକ୍ଷା ଆଉ ୧୦ଦିନ ରହିଲା, ଇତିହାସରେ ଏମ୍, ଏ, ଦେବି । ତମ ଲାଇବ୍ରେରୀରେ କଣ ବହି ଅଛି ଦିଅ ।"

ତା ପରେ ଲାଇବ୍ରେରୀରୁ ଇତିହାସର ପାଠ୍ୟନିର୍ଘଣ୍ଟ ସହିତ କୌଣସି ସମ୍ପର୍କ ନ ଥିବା ଅଥଚ ଇତିହାସ ଶ୍ରେଣୀସ୍ଥ କେତେ-ଖଣ୍ଡ ବହି ଧରି ସେ ପରମ ନିଶ୍ଚିନ୍ତରେ ଚାଲିଗଲେ । ମୃତ୍ୟୁର ଦୁଇ ତିନି ବର୍ଷ ପୂର୍ବେ ଥରେ ତାଙ୍କର ଏମ୍, ଏ, ପାଠ ସମ୍ପର୍କରେ କଥା ପଡ଼ିଥିଲାବେଳେ ସେ ଦୁଃଖକରି କହିଲେ, "ସବୁ ହେଲା, ଦର୍ଶନରେ ଆଉ ଏମ୍, ଏ, ପାସ କରି ପାରିଲି ନାହିଁ ।"

ଏବେ ମୁଁ ବୁଝିଛି ଦର୍ଶନରେ ପାସ କରି କେହି ଦାର୍ଶନିକ ହୁଏ ନାହିଁ । ଦର୍ଶନ ଶାସ୍ତ୍ରରେ ଡକ୍ଟରେଟ୍ ଡିଗ୍ରୀ ଲାଭକରି ସୁଦ୍ଧା ନିତାନ୍ତ ପାର୍ଥିବ ଲୋକ ପରି ବାଇଗଣ ଦର ମୁଲେଇବା ଏ ସମାଜରେ ବିରଳ ନୁହେଁ । ପ୍ରାଚ୍ୟଦର୍ଶନର ଶ୍ରେଷ୍ଠତ୍ୱ ହେଉଛି ଏହା ବିଦ୍ୟା ବା ବିତର୍କ ନୁହେଁ, ନିଜ ଜୀବନରେ ଏହା ଏକ ଅନୁଶୀଳନ ଓ ଉପଲବ୍ଧି । ଲକ୍ଷ୍ମୀନାରାୟଣ ଥିଲେ ଜଣେ ବ୍ରହ୍ମଦର୍ଶୀ, ତତ୍ତ୍ୱଦର୍ଶୀ, ସତ୍ୟଦର୍ଶୀ, ଶ୍ରେଷ୍ଠ ଦାର୍ଶନିକ……… ମାଟିର ଦାର୍ଶନିକ, ମୋ ଦୃଷ୍ଟିରେ ଏହା ହିଁ ଲକ୍ଷ୍ମୀନାରାୟଣଙ୍କର ଶ୍ରେଷ୍ଠ ପରିଚୟ । ତାଙ୍କର ଜୀବନ ବୈଦିକ କବିତା ପରି, ଶୂନ୍ୟବାଦୀ ଦର୍ଶନପରି ଓ ମହାଶୂନ୍ୟର ଗଣିତ ପରି ସରଳ ଅଥଚ ଚିରରହସ୍ୟମୟ । ପଥପାର୍ଶ୍ୱର ବୃକ୍ଷ ପରି ସେ କେବଳ ଛାୟା ଦେଇଛନ୍ତି, ମାତ୍ର ଧନ୍ୟବାଦ ପାଇଁ ଅପେକ୍ଷା ରଖି ନାହାନ୍ତି ।

---

# ବାପା ଓ ସେ

## ନିତ୍ୟାନନ୍ଦ ମହାପାତ୍ର

ଏକା ନାମ ଥିଲା ଦୁହିଁଙ୍କର । ଏକା ରୋଗ ବି ହେଲା ଦୁହିଁଙ୍କର । ଏକା ରକମର ପାଠ ବି ପଢ଼ିଥିଲେ ସେତେବେଳେ । ଏକା ସ୍କୁଲ ବି ହୋଇଥିବ, ବାଲେଶ୍ୱରରେ । ଏକା ଜିଲ୍ଲାରେ ବି ଘର । ଲକ୍ଷ୍ମୀକାନ୍ତ ଓ ଲକ୍ଷ୍ମୀନାରାୟଣ ।

ସେଥିପାଇଁ ହୁଏତ ସ୍ୱତଃ ଗୋଟାଏ ପିତୃପ୍ରେମ ବୋଧ ମୋର ଥିଲା ତାଙ୍କଠାରେ । ତା'ଛଡ଼ା ଆହୁରି ଅନେକ ଆକର୍ଷଣ, ଏକା ଚିନ୍ତା, ଏକା କଥା ! କେତେ ସମୟରେ ଏକା ଭଳିଆ କାମ ବି ଆମକୁ ଏକତ୍ର କରିଛି, ନିକଟର କରିଛି, ନିକଟତର କରିଛି ।

ଊଣେଇଶ ତେୟିଶ ହେବ, ବୋଧହୁଏ । ଗୋଟା ଦୁଇଟା ବର୍ଷ ଏପାଖ ସେପାଖ ହୋଇପାରେ, ସେ ବର୍ଷ ବନ୍ୟା ବର୍ଷ । ବର୍ଷେ ଦୁବର୍ଷ ଛାଡ଼ି ଦେଇ ବନ୍ୟାଦେବୀ ତ ଆସନ୍ତି ଅନିମନ୍ତ୍ରିତ ଭାବରେ ଆମ ଅଞ୍ଚଳକୁ, ଭଦ୍ରକକୁ । ସେ ବର୍ଷ ବି ଆସିଲେ । ତାଙ୍କ ଚୋଟରେ ଆମ କେତେକଙ୍କର ଧନସମ୍ପତ୍ତି ଉଜୁଡ଼ି-ଗଲା । ଗୃହବାଡ଼ି ବୁଡ଼ିଗଲା, ପଡ଼ିଗଲା, ଧୋଇଗଲା, ବୋହିଗଲା । ଧାମନଗର ଥାନାରେ ବେଶି, ଧର୍ମ ନଗରକୁ ଧାମନଗର କହନ୍ତି । ସେଇଠି ବନ୍ୟାଙ୍କର ଆବିର୍ଭାବ । ବୈତରଣୀରେ । ବଇତରଣୀ ଅତରଣୀୟା ହୋଇଗଲା ।

ଧପୁଷ୍ପି ଅଞ୍ଚଳକୁ ବାହାରିଲୁଁ ଲୋକଙ୍କର ଅବସ୍ଥା ଦେଖି ।

ସାହାନା, ମୁଁ ଆଉ ଜଣେ ସତ୍ୟାଗ୍ରହୀ. ସେ ଗଲେଣି । ତାଙ୍କ ନା' ଶରତ ବାବୁ, ନଦୀଗାଁ କାନଗୋଇ ବଂଶର । କେଉଁଠି ମୁଢ଼ି ଗଣ୍ଡାଏ, କେଉଁଠି ବା ଚୂଡ଼ା ମୁଠାଏ, କେଉଁଠି ପଖାଳ ତୋରାଣି ମୁନ୍ଦେ । କେଉଁଠି ବା ପୁରି ପଲାଉ, ସବୁ ଚଳୁଥାଏ । ସଇକଲ୍ ଯାତ୍ରା, କଷ୍ଟ ନାହିଁ ତାଙ୍କର, ବାଟଚଲାଟା ସବୁଠୁଁ ଆନନ୍ଦ । ସାନ୍ଧ୍ୟ ଭ୍ରମଣରେ ଅହୁରି ବେଶି, ଜନମାନଙ୍କର ଅନୁଭୂତି ଦର୍ପଣ ଥିଲେ ସେତେବେଳେ । ସାହୁଜୀ ହସାନ୍ତି ଓ ହସନ୍ତି; କିନ୍ତୁ କାମ କଲାବେଳକୁ କାମ ଦେଲାବେଳକୁ କି ନେଲାବେଳକୁ ହସ ହସ ମୁହଁ ଗମ୍ଭୀର ହୋଇ ଆସେ । ଏମିତି ସ୍ୱଭାବ । ଟାଣ କଥା ନ ଥାଏ । ତଥାପି ଶାନ୍ତ ଭାବରେ ଥାଏ ବଡ଼ କଠୋର ଶାସନ ।

ମୋର ବୟସ ଏକୋଇଶ ବାଇଶ । ପଢ଼ୁଥାଏଁ-ସ୍କୁଲ କଲେଜରେ ନୁହେଁ, ଘରେ କବାଟ କଲି । 'ଜୟଦେବ ଓଡ଼ିଆ ନା ବଙ୍ଗାଳୀ' କଥା ପଡ଼ିଲା । ମଧ୍ୟକାଳରେ ଭଗବାନ ପଢ଼ି କାହାରି କାହାରି ଚିନ୍ତା-ରାଜ୍ୟରେ ବିପତ୍ତି ଆଣି ଦେଇଥିଲେ । ସାହୁଜୀଙ୍କର ପୂରା ବିଶ୍ୱାସ ଜୟଦେବ ଓଡ଼ିଆ । ସେ ଥିଲେ ଓଡ଼ିଆ । 'ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷା ନୟ'ର ବିରୋଧ ସତ୍ତ୍ୱ-ସେଇ ଆନ୍ଦୋଳନରେ ଦାୟାଦ-ବାଲେଶ୍ୱର ବାରବାଟିର ସାହୁ ପୁଅ-ଫକୀରମୋହନଙ୍କ ବଂଶଧର । ବଙ୍ଗଳାରେ ପ୍ରବୀଣ । ଆଉ ଓଡ଼ିଆରେ ଧୁରନ୍ଧର ।

ମୁଁ କହିଲି-ଜୟଦେବ ଓଡ଼ିଆ ହୁଅନ୍ତୁ ବା ବଙ୍ଗାଳୀ ହୁଅନ୍ତୁ; ସେ କିନ୍ତୁ ମଣିଷ-ପୂଜାରୀ ଥିଲେ-ଦେବତା-ପୂଜାରୀ ନୁହନ୍ତି । ଦଶ ଅବତାର କେଶବ ଧୃତ ନୁହେ-"ମଣିଷ ଧୃତ । ମୁଁ ତାର କାରଣ କହିଲି । ମତ୍ସ୍ୟ, କଚ୍ଛପ, ବରାହ, ବାମନଠାରୁ ବୁଦ୍ଧ କଲ୍କୀର ମାନବୀକ ଟୀକା ଶୁଣି ସେ କାବା ହେଲେ । "ତମେ ଏତକ ଲେଖିଦିଅ-ମୁଁ ସହକାରରେ ଛାପିଦେବି ।" ମୋତେ କିନ୍ତୁ ଡର ମାଡ଼ିଲା ।

ଏମିତି କେତେ ଲେଖକ ସେ ସୃଷ୍ଟି କରିଛନ୍ତି ଉତ୍ସାହ ଦେଇ । ନିଜେ ଲେଖି ସେ ଆନନ୍ଦ ପାଆନ୍ତି ଯେତେ ଅନ୍ୟକୁ ଲେଖାଇ ଅନ୍ୟ ଲେଖାର ଯଥାର୍ଥ ମୂଲ୍ୟବୋଧ ଦେଇ ସେ କମ ଆନନ୍ଦ ପାଆନ୍ତି ନାହିଁ । ଅମାନୀକୁ ମାନ ଦେବା ତାଙ୍କ ଶିରାରେ ଶିରାରେ ଖେଳୁଥିଲା—ଯେ ସ୍ୱଭାବର ଭିତ୍ତିଟା । ସେଥିପାଇଁ ପିଲାଠାରୁ ଆରମ୍ଭ କରି ବୁଢ଼ାଯାଏଁ ସମସ୍ତେ ତାଙ୍କର ବନ୍ଧୁ । ଯେଉଁଠି ରତ୍ନ ଦେଖିଲେ ଧାଇଁଲେ ସେ ମୁଠାଇ-ନିଜର କରିବାକୁ ନୁହେଁ-ସମସ୍ତଙ୍କୁ ଦେବାପାଇଁ—ଯେଉଁଠୁ ପାଇଲେ ସେଠୁ ନେଲେ ଅଳିଆ ଅଯନାରୁ ବି । ପରର ପ୍ରଚାର କରୁ କରୁ ସେ ଆପଣାକୁ ଭୁଲିଯାଉଥିଲେ । ଲୋକେ ଦର୍ଶନୀୟକୁ ଖୋଜୁଥିଲେ ପ୍ରଦର୍ଶକ ଆଉ ଆଡ଼ିରେ ପଡ଼ୁଥିଲା । ସେଥିପାଇଁ ଲକ୍ଷ୍ମୀନାରାୟଣ ଚିହ୍ନା ହୋଇ ମଧ୍ୟ ଅଚିହ୍ନା ରହିଗଲେ ଅନେକଙ୍କଠାରେ-ଅନ୍ୟକୁ ଚିହ୍ନାଇ ଦେଇ । ତାଙ୍କ ଉପକାର ଶୋଧ କରିବା ଦୂରେଥାଉ, ସ୍ୱୀକାର କରିବା-ମାନିନେବା ବି କର୍ତ୍ତବ୍ୟ ଭିତରେ ଆମେ ଏଯାଏଁ ଗଣିନାହୁଁ । ସେଇ କେଉଁଟା ଲୋକ ଜାଣିଛନ୍ତି—ତାଙ୍କ ଶବାଧାର ପଛରେ ସ୍ପନ୍ଦନ ବର୍ଷଣ ତଳେ ଯେଉଁ କେତେ ଜଣ ଥିଲେ ଆଉ କାହାରି କିଛି ଯାଇ ନାହିଁ ଯେମିତି !

ପୁଣି ଚିହ୍ନା ହେଲି ମଝିରେ ଥରେ ୧୯୩୭ ପୂର୍ବରୁ । ଆମ ଘରେ ଆସି ପହଞ୍ଚିଲେ । ଲକ୍ଷ୍ମୀକାନ୍ତକୁ ଗୋଟାଏ ସମ୍ବର୍ଦ୍ଧନା ଦିଆଯିବ । ମୁଁ କହିଲି, ବାପାଙ୍କୁ ହାସ୍ୟାସ୍ପଦ କରନ୍ତୁ ନାହିଁ । କେହି ଆସିବେ ନାହିଁ ସମ୍ବର୍ଦ୍ଧନା ସଭାକୁ ।

ସେ କହିଲେ ମୁଁ ତ ଅଛି । ମୁଁ ଏକା ସମ୍ଭାଳି ନା କରିବ । ସେଦିନ ସେ ପ୍ରକାଶ କଲେ ଗୋଟାଏ କଥା । ଏମିତି କେତେ ସମ୍ମିଳନୀ ସଭା ସେ କରିଛନ୍ତି ଦଶ ବାର ଜଣ ଲୋକଙ୍କୁ ନେଇ । "ଯାହା ଦରକାର ମୁଁ ତା' କରିଯାଉଛି-ଏଇଟା ମୂଳଦୁଆ । ଦିନେ ଆମେ ନ ଥିବା; କିନ୍ତୁ ଏଇ ଦରକାରୀ କାମଗୁଡ଼ିକ ବଡ଼ ଆକାରରେ ରହିଯିବ ।"

ସଭା ହେଲା । ଲକ୍ଷ୍ମୀକାନ୍ତ, 'କାନ୍ତକବି' ଆଖ୍ୟାରେ ଭୂଷିତ ହେଲେ । କିନ୍ତୁ ଶେଷଯାଏ ଲକ୍ଷ୍ମୀନାରାୟଣଙ୍କୁ କେହି ଶ୍ରଦ୍ଧାରେ ଆଉ କୌଣସି ନାମରେ ଡାକି ନାହାନ୍ତି । ବୋଧହୁଏ ସେ ନିଜେ ମନ ଭିତରେ ନିଜକୁ ଡାକୁଥିବେ—ଅଲକ୍ଷ୍ମୀ ଲକ୍ଷ୍ମୀ ନୁହେଁ-ଦରିଦ୍ର । ସେଥିପାଇଁ ସେ ଦରିଦ୍ର-ନାରାୟଣ ସେବାରେ ନିଜକୁ ନିୟୋଜିତ କରିଥିଲେ । ସେଥିପାଇଁ ଦରିଦ୍ର ହୋଇ ରହିଲେ ଶେଷଯାଏ ।

୧୯୩୭ରେ ଆମେ (ଦରିଦ୍ର ନୁହେଁ ଦ୍ୱାରକାର, ନାରାୟଣ ନୁହେଁ, ବଳରାମର) ଦେଖା କରି ଗଲୁ । ସେତେବେଳେ ନୂଆ କଂଗ୍ରେସ ମନ୍ତ୍ରିମଣ୍ଡଳ ଓଡ଼ିଶା ପ୍ରଦେଶରେ । ଓଡ଼ିଶା ଏକ ସ୍ୱତନ୍ତ୍ର ଭାଷା ନୁହେ ବୋଲି ଦିନେ ବଙ୍ଗାଳିଏ ଆନ୍ଦୋଳନ କରି-ଥିଲେ ସତ୍ୟ । କିନ୍ତୁ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ନୁହେ ବୋଲି ଓଡ଼ିଆମାନେ ଏଠି ଆନ୍ଦୋଳନ କରିଥିଲେ । ମୁଁ ଜାଣେ । ସମସ୍ତେ ଜାଣନ୍ତି । ସେ ଆନ୍ଦୋଳନ ସଫଳ ହୋଇ ନାହିଁ-ମଣ୍ଡଳିକେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ଭାରତ ସ୍ୱାଧୀନ ହେବା ପୂର୍ବରୁ ଯେଉଁମାନେ ନାକ ଟେକୁଥିଲେ ସ୍ୱତନ୍ତ୍ର ପ୍ରଦେଶକୁ ସେମାନେ ପେଲି ପଶିଲେ ଗାଦି ମାଡ଼ିବସିବା ପାଇଁ । ତାଙ୍କର ପରପାର୍ଶ୍ୱ ବିହାର ଶାସକମାନେ-ଭାଇ ବିରାଦରୀ ସୂତ୍ରରେ ଓଡ଼ିଆ ଭାଷା ମୂଳପୋଛ କରି ଦସିଲେ ସିଂହଭୂମିରୁ । ଆଗ ଚଡ଼କ ପଡ଼ିଲା ଜାମସେଦପୁରରେ । ଓଡ଼ିଆ ଧନରେ ପୁଷ୍ଟ ଏଇ କଂପାନୀ ବିହାର କଂଗ୍ରେସ ସରକାରଙ୍କ ନିର୍ଦ୍ଦେଶରେ ଜାମସେଦପୁର ଟ୍ରାଇମେରି ସ୍କୁଲସବୁରୁ ଓଡ଼ିଆପାଠ ହଟାଇଦେଲେ । ଓଡ଼ିଶାରେ ତା' ଆବାଜ ଶୁଣାଗଲା । କଂଗ୍ରେସ ମନ୍ତ୍ରୀ କହିଲେ, ଆମେ ଭାଇବିରାଦରଙ୍କୁ ଗୋଟାଏ କମିତ ଅପ୍ରୀତିକର କଥା କହିବୁଁ ? ନ ହେଲୁ, ଟଙ୍କା ଦିଅ-ଆମେ ସେଠି ଓଡ଼ିଆ ସ୍କୁଲ ଖୋଲିବୁଁ । ଓଡ଼ିଆ ପ୍ରଧାନମନ୍ତ୍ରୀ ସେତେବେଳେ ମୁଖ୍ୟମନ୍ତ୍ରୀମାନଙ୍କୁ ସେଇଆ ଡକାଯାଉଥିଲା, କହିଲେ-ପ୍ରଦେଶ ବାହାରେ ଟଙ୍କା ଖର୍ଚ୍ଚ ହେଲେ ଅଡିଟ୍ ଆପତ୍ତି ହେବ ।

ଜାମସେଦପୁର ଯିବାକୁ ହବ । ଅବସ୍ଥା ଦେଖି ବ୍ୟବସ୍ଥା କରାଯିବ । ଗାଡ଼ି ଭଡ଼ା ? ଉଠିଲେ ଲକ୍ଷ୍ମୀନାରାୟଣ ଓ ଯଦୁମଣି । ପ୍ରଥମ ବ୍ୟୟଦେଲେ ଚନ୍ଦ୍ରମଣି ଆଚାର୍ଯ୍ୟ । ସେ ବି ଚାଲିଗଲେଣି । ବିଶ୍ୱନାଥ ହେଲେ ରାଜ୍ୟପାଳ, ଉତ୍ତର କାଳରେ, ଉତ୍ତର ପ୍ରଦେଶରେ । କାଳପତ୍ର ଲାଗୁଛି । ଦିନ ବହିଗଲାଣି । କଥା ବି ରହୁନାହିଁ ।

ଆମେ ଜାମସେଦପୁର ଗଲୁ, ଡକ୍ଟର ପାଟଲ, ଲକ୍ଷ୍ମୀନାରାୟଣ, ନବ ଦାସ, ମୁଁ । ବଡ଼ ସଭାଟାଏ ହେଲା । ଓଡ଼ିଆ ମେଣ୍ଟ ମୁଣ୍ଡ ଟେକିଲେ । ଟାଟାଆମୁଣ୍ଡ । ଆନ୍ଦୋଳନ ହେବ । ଦରକାର ପଡ଼ିଲେ ଓଡ଼ିଆମାନେ ଜ୍ୟୋତିଷ ଗୁଡ଼ି ଘରକୁ ଯିବେ, ସେଠି ଓଡ଼ିଆ ସମାଜର ସେକ୍ରେଟେରୀ ଗୋକୁଳାନନ୍ଦ ମହାନ୍ତି । ସେ ବି ଗଲେଣି । ଜାମସେଦପୁର ଅଛି । ଓଡ଼ିଆ ଭାଷା ରହିଲା, ବିହାର ସରକାର ମାନିଲେ, ଏବେ ଦେଶ ସ୍ୱାଧୀନ ହେଲା ପରେ—ସିଂହଭୂମିରେ ଆଉ କୌଣସି କଥା କହିବାକୁ ନାହିଁ ଓଡ଼ିଆ ଭାଷା ପାଇଁ । ଘୁଲାଇ ଚତୁର ଓଡ଼ିଆ ଯିଏ ଥିଲେ ସେ ଓଡ଼ିଶାକୁ ଆସି ବିଚ୍ଛିନ୍ନାଞ୍ଚଳ ଲୋକ ହିସାବରେ ସହାନୁଭୂତି ଦାବିକରି ଏଠି ବଡ଼ ବଡ଼ିଆ ହେଲେ ସିନା—ସେଠି ଆଉ କାହା ଭୁଣ୍ଡ ଫିଟିଲା ନାହିଁ । ସମସ୍ତଙ୍କ ମୁହଁରେ ତୁଣ୍ଡି । ଆଜି ଲକ୍ଷ୍ମୀନାରାୟଣ ବି ନୀରବ ।

ସେତିକିବେଳେ—ସେଇ ଜାମସେଦପୁରରେ—ଜାମସେଦପୁର ଯିବା ବାଟରେ ଓ ଫେରିବାବେଳେ ତାଙ୍କର ମୋ ପ୍ରତି ସ୍ନେହ ଆଚରଣ ଭୁଲିହେବ ନାହିଁ । ପିତୃତୁଲ୍ୟ ତାଙ୍କର ବ୍ୟବହାର ଆଉ ତାଙ୍କର ଆଶୀର୍ବାଦ, ବୋଧହୁଏ ଏବେ ବି କାମ କରୁଛି ମୋ ଜୀବନରେ ।

କେଉଁ ବର୍ଷ ମୋର ମନେ ନାହିଁ । ରାମଚନ୍ଦ୍ର ଭବନରେ ସଙ୍ଗୀତ ସମ୍ମିଳନୀ । ଉଦ୍ୟୋକ୍ତା ଲକ୍ଷ୍ମୀନାରାୟଣ । ସାହିତ୍ୟ ସଭା ଉଦ୍ୟୋକ୍ତା ସେଇ ବାପାଙ୍କ ପ୍ରତିନିଧିତ୍ୱ କରୁଥାଏଁ ମୁଁ । ତାଙ୍କ ଲେଖା ପଢ଼ିଥିଲି । ମନେ ଅଛି, ବାପାଙ୍କ ପାଇଁ ତାଙ୍କର ସହାନୁଭୂତି, ଆଉ ମୋ ପ୍ରତି ତାଙ୍କର ଶ୍ରଦ୍ଧା ଭିତରେ ଯେପରି ବାପାଙ୍କ ପ୍ରତି ତାଙ୍କର ମମତା ଗୋଳି ହୋଇ ବୋଲି ହୋଇ ଆସୁଥାଏ ।

ବାପା ତାଙ୍କ ଜୀବନୀ ଲେଖି ନ ଥିଲେ । ବାପା ଗଲା ପରେ ମୁଁ ତାଙ୍କ ଜୀବନୀ ସଂଗ୍ରହ କରି ପାରିଲି ନାହିଁ । ସେ ଦୁଃଖ ରହିଗଲା ମୋ ମନରେ, ଲକ୍ଷ୍ମୀନାରାୟଣ ବାବୁଙ୍କୁ ଦିନେ କହିଲି—ଆପଣ ଲେଖନ୍ତୁ—ଆପଣଙ୍କ ଜୀବନୀ—ସେଥିପାଇଁ କହିଥିଲି ।

"ଛପାଇବ କିଏ ?"

"ଡଗର"—ମୁଁ କହିଲି,

ଜୀବନୀ ଲେଖାଗଲା । ଡଗରରେ ବାହାରିଲା । ମାତ୍ର ଡଗରରେ ସ୍ଥାନାଭାବ, ଜୀବନୀ ବିରାଟ—ଜୀବନଠାରୁ ବି ବଡ଼, ଅଢ଼େଇ ବର୍ଷରେ ସାରିଦେ ସରିଲାନାହିଁ, କିଏ ପ୍ରକାଶନ କହିଲି

ବନ୍ଧ ଛାପିଦେବ, ଯାହା ଲେଖାହୋଇ ପାଣ୍ଡୁଲିପି ଆକାରରେ ମୋଠି ଥିଲା, ତାକୁ ସେ ମାଗିନେଲେ ।

ଜୀବନୀ କୁଆଡ଼େ ଗଲା କେଜାଣି—ଜୀବନରେ ସେଦିନ ପୂର୍ଣ୍ଣଚ୍ଛେଦ ପଡ଼ିଗଲା ।

ବାପା ନାହାନ୍ତି—ସେ ବି ନାହାନ୍ତି,
ଲକ୍ଷ୍ମୀକାନ୍ତ—ଲକ୍ଷ୍ମୀନାରାୟଣ
ଜଣେ ସୁନ୍ଦର—ଆଉ ଜଣେ ସୌନ୍ଦର୍ଯ୍ୟ ଅବବୋଧର ଶକ୍ତି

---

ଭୂମା-ରୂପ, ସୀମା ଭିତରେ ଦେଖୁଛି ମୁହିଁ,
ମାତ୍ର ଛୁଇଁଦେଇ ତୋତେ ଭିତରେ ପଶେ ଯେବେ ମୁହିଁ
ପାଏ କି ଆଉ ତୋତେ ଗୋଟିଏଠାଇଁ ?
ତୁ ଯେ ଉଡ଼ିଯାଉ ଗୁଣଆଡ଼େ
ତୋ ଲାବଣ୍ୟ ଦିଏ ମୋତେ ଛୁଇଁ
ମୁଁ ହୋଇଯାଏ ରୂପ
ନୂତନ ମଣିଷ ଭଳି
ମୋହର ଦେଖା ନାହିଁ
ଭଲ ଲାଗେ ଏହାହିଁ
ତେଣୁ ଧାଇଁଆସେ ପରବାସୁ ତୋତେ ଛୁଇଁବା ପାଇଁ ।

— ଲକ୍ଷ୍ମୀନାରାୟଣ

# ସ୍ମୃତି-ସମୁଦ୍ରର ତୀରେ......

## ଶ୍ରୀ ବୀରକିଶୋର ଦାସ

ସୂର୍ଯ୍ୟ ମା' କୋଳକୁ ଯାଉଥାନ୍ତି । କ୍ଷେତ୍ରମୋହନ ଏବଂ ମୁଁ ଢକଣଘାଟ ସ୍କୁଲ ବାହାରିଲୁ । ବୁଲି ବୁଲି ମହାନଦୀକୂଳ ପଥରବନ୍ଧରେ ବସିଲୁ । କଥା ଅକଥା ବହୁତ ଗୁଳୁଥାଏ । ପଛଆଡ଼ୁ କେତେବେଳୁ ଆସି ସେ ଛିଡ଼ାହୋଇ ଗଲେଣି । ଆମକୁ ଜଣା ନାହିଁ । ମୁଁ ହଠାତ୍ ଉଠିପଡ଼ି ନମସ୍କାର କଲି । ମୋର ତାଙ୍କର ପୂର୍ବରୁ ଥରେ ମାତ୍ର ଦେଖା ହୋଇଥାଏ । ମୁଁ ଚିହ୍ନିଥିଲି, ସେ ଲକ୍ଷ୍ମୀନାରାୟଣ ବାବୁ ।

ସେ କହିଲେ, "କ୍ଷେତ୍ର ମୋହନ, ମୁଁ ତମକୁ ଖୋଜି ବୁଲୁଛି, ତମେ ଆସି ଇଆଡ଼େ ! ଟିକେ ଶୁଣିଗଲ ।" ଦୂରକୁ ଟିକିଏ ସେ ଦଶହାତ ଯାଇ କଣ କଥାବାର୍ତ୍ତା ହେଲେ, ମୁଁ ଜାଣି ପାରିଲି ନାହିଁ । ତାପରେ ମତେ ପଚାରିଲେ, "ତମ ନାଁ କଣ?" ମୁଁ କହିଲି "ବୀରକିଶୋର" । ସେ କହିଲେ, "କିଶୋର ତ ଆଖି ଆଗରେ ଦେଖିପାରୁଛି; ମାତ୍ର ବୀରର ପ୍ରମାଣ ତ କିଛି ପାଉନାହିଁ ଅନୁଗ୍ରହ କରି ଇଆଡ଼କୁ ଆସିବ କି ?"

ମୁଁ ସଙ୍ଗେ ସଙ୍ଗେ କହିଲି, "ଆପଣ ମତେ ଅନୁଗ୍ରହ ଶବ୍ଦଟା କହିବା ଠିକ୍ ହୋଇଛି ?"

ସେ କହିଲେ, "ପ୍ରଶ୍ନ ତ ସେଇ କଥା । ଯେଉଁ ଆଡ଼କୁ ଗଲି, ସେଇ ଆପଣ ? ତମେ କଣ ଗୁହାଳୀରେ ବହୁତ ଦିନ ପଢ଼ିଛ କି ? ଆପଣ ଅବଧାନଙ୍କୁ କହନ୍ତୁ । ଆପଣ ଆଉ ତୁ ଏ ଦୁଇଟା ଶବ୍ଦ ଉଠିଯାଆନ୍ତା କି ବଡ଼ ଭଲ ହୁଅନ୍ତା । ମୋର ଯାହା ସଙ୍ଗରେ ସମ୍ପର୍କ, ମୁଁ ସମସ୍ତଙ୍କୁ କହେ ମତେ ତମେ ବୋଲି ଡାକିବ, ମୁଁ ତମକୁ ତମେ ବୋଲି ଡାକିବି ।"

ମୁଁ ଟିକିଏ ଦୂରେଇ ହୋଇ ଗଲାରୁ ମୋ କାନ୍ଧରେ ହାତ ପକାଇ କହିଲେ, "ବୀର, ତମେ ଯଦି ପ୍ରକୃତ ବୀର, ତେବେ ତମେ କଣ କଥାବାର୍ତ୍ତା ହେଉଥିଲ ସତ କହ ।" ମୁଁ ମହା ଅଡ଼ୁଆରେ ପଡ଼ିଲି । ସତ କହିଲି ନାହିଁ କି ମିଛ କହିଲି ନାହିଁ । ସତ ମିଛ ଗୋଳିଆଗୋଳି କରି କହିଲି । ସେ ଆମ ଦୁହିଁଙ୍କ କଥାକୁ ମିଳାଇ ବୁଝିନେଲେ ଯେ ଆମର କି କଥା ପଡ଼ିଥିଲା ।

ସେ ଆମ ଦୁଇ ଜଣଙ୍କୁ ଏକାଠି କରି କହିଲେ, "କ୍ଷେତ୍ର-ମୋହନ ମୁଁ କେତେ ଥର କହିଛି, ମତେ ଯାହା କହିବ, ସତ କହିବ । ମୁଁ ଯେତେ ପିଲାଙ୍କ ସମ୍ପର୍କରେ ଆସୁଛି, ସେମାନଙ୍କୁ ମୁଁ ଦୁଇ ଆଖିରେ ଦେଖୁଛି । ମାତ୍ର, ସତ କୋଉଠି ପାଉନାହିଁ । ଯା' ହେଉ, କାଲି ରବିବାର ଅଛି, ତମେମାନେ ମୋ ବସାକୁ ଯିବ । ଆଉ କେତେ ପିଲାଙ୍କୁ ଡାକିଛି ।"

ତାଙ୍କର ସୂତାହାଟରେ ବସା ଥାଏ । ମୁଁ ସେଠି ଯାଇ ପହଞ୍ଚି ଦେଖେଁତ ଆଠ-ଦଶ ଜଣ ପିଲା ଜମା ହୋଇଛନ୍ତି । ମତେ ଦେଖି ସେ ଅନ୍ୟ ପିଲାଙ୍କୁ କହିଲେ, "ତମ ଭିତରେ ବୀର ବୋଲି କେହି ନାହାନ୍ତି । ଏଇ ଜଣେ ବୀର ଆସିଲେ ।"

ତାଙ୍କ ମାଆ ଗୋଟିଏ ବଡ଼ ଡାଲାରେ ଗୁଡ଼ାଏ ମୁଢ଼ି ଆଉ ଭଙ୍ଗା ନଡ଼ିଆ ଆଣି ଆମ ଆଗରେ ଥୋଇଲେ । ସମସ୍ତେ ଏକାଠି ଖାଇ ବସିଲୁ ।

ପଛକୁ ଆସିଲା ଖସାଲଡ଼ୁ । ସେଥିରୁ ଗୋଟିଏ ଗୋଟିଏ ସବୁ ପିଲାଙ୍କୁ ଖୁଆଇଦେଲେ । କହିଲେ, "ଏ ପାଟିରୁ ସତ କଥା ବାହାରିଲେ, ଆମ ଦେଶଟା କେଡ଼େ ସଫା ହୋଇଯାନ୍ତା । ମୋ ମାଆ ତ ମତେ ସତ କହୁନାହିଁ ଆଉ ତମେ ମାନେ କଣ କହିବ ? ତିନି ଦିନ ହେଲା ଗୋଟାଏ କଥା ପଚାରୁଛି, ମାଆ କିଛି କହୁନାହିଁ ।"

ଆଉ ସବୁ ପିଲା ଚୁପହୋଇ ବସିଥାନ୍ତି । ମୁଁ କହିଲି, "ତମେ କଣ ପଚାରୁଛ, ଆମେ ଜାଣିପାରିବୁ କି ?" ସେ ଏକଦମ୍ ହସି ଉଠି ମୋ କାନ୍ଧରେ ହାତ ପକାଇ କହିଲେ, "ଏହାର ନାଆଁ ବୀରତ୍ୱ । ମୁଁ ମାଆଙ୍କୁ ତିନି ଦିନହେଲା ପଚାରି ହେଉଛି ମାଆ ତମେ କଣ ପାପ କରିଚ କହ । ମୁଁ କଣ ପାପ କରିଚି ତମ ଆଗରେ କହିବି । ଏକଥା ଶୁଣି ସମସ୍ତେ ତଳକୁ ମୁହଁ କଲେ । ତାଙ୍କ ମାଆ ସେଠି ଛିଡ଼ା ହୋଇଥାନ୍ତି ।

ମାଆ କହିଲେ, "ଲକ୍ଷୀ ! ତୁ ପାଗଳ ହୋଇଗଲୁଣି । ଭଗବାନ ତତେ ଭଲ ବୁଦ୍ଧି ଦିଅନ୍ତୁ ।" ମାଆଙ୍କ ଆଖି ଛଳଛଳ ହୋଇଆସିଲା ।

କେତେ ସମୟ ବିତିଗଲା ପରେ ମୁଁ ପଚାରିଲି, "ଆଗ ପାପ ପୁଣ୍ୟର ସଂଜ୍ଞା କ'ଣ ଆମକୁ ଟିକିଏ ବୁଝେଇ ଦେବ କି ? ସେ ସେଉଠୁ ଭାଗବତରୁ କେତୋଟି ପଦ ଉଦ୍ଧାର କରି କହିଲେ, "ବ୍ରହ୍ମହତ୍ୟା ଶବ୍ଦର ଅର୍ଥ କଣ ପିଲାଏ କହିଲ ?"

ମୁଁ କହିଲି, "ବ୍ରାହ୍ମଣକୁ ହତ୍ୟା କରିବା ।"

ସେ କହିଲେ, "ଏଇଆ ବୁଝିଲ । ବ୍ରହ୍ମର ଅର୍ଥ ତା' ନୁହେଁ । ତମେ ସମସ୍ତେ ଏଠି ଯେଏ ବସିଛ, ଅଧିକାଂଶ ପିଲାଙ୍କ ପରି ବ୍ରହ୍ମ ହତ୍ୟା କରୁଛ ।" ବ୍ରହ୍ମ ଦେହର ଶିବଶକ୍ତି । ତାକୁ

ମୂର୍ଖତା ବଳତଃ କ୍ଷୟ କରୁଛ । ଆମ ଦେଶର ଯୁବଶକ୍ତି ଦିନକୁ ଦିନ ଦୁର୍ବଳ ହୋଇଯାଉଛୁ । କେହି କହିବାକୁ ନାହାନ୍ତି କି କେହି ବୁଝେଇବାକୁ ନାହାନ୍ତି । ସମସ୍ତେ ଅନ୍ଧ ! ଏ ଶିକ୍ଷା ଆମର କଲିଜାକୁ ଟିକି ଟିକି କରି ଖାଇଯାଉଛୁ । ମୋଟ କଥା, ସତ କହିବାକୁ କେହି ରାଜି ନୁହନ୍ତି । ନିଜ ଶରୀରକୁ ରକ୍ଷା କରିବା ହେଉଛୁ ପୁଣ୍ୟ । ଶରୀରକୁ ନଷ୍ଟ କରିବା ହେଉଛୁ ପାପ ।"

ମୁଁ ଜଗନ୍ନାଥବଲ୍ଲଭରେ ଥାଏ । ଆଉ ଦିନେ ସେ ମୋ ପାଖରେ ଯାଇ ହାଜର । ପରେ ପାଞ୍ଚ ସାତ ଖଣ୍ଡେ ଟାଣି ଆଣି ନିଜେ ବସିପଡ଼ିଲେ । କହିଲେ, "ଆଜି ଗୋଟାଏ ବୁଦ୍ଧି ଶିଖିକରି ଆସିଲି ତମ ଗାଆଁ ପିଲାଙ୍କଠୁଁ ।"

ବାଖରାବାଦରେ ସ୍ୱର୍ଗୀୟ ଶ୍ରୀରାମବାବୁ ଡେପୁଟିଙ୍କ ଘର । ସେ ସେଠିକି ଯାଇଥିଲେ ତାଙ୍କ ସଙ୍ଗେ ଦେଖା କରିବାକୁ । ସେ ଉପର ମହଲାରେ ଥାଆନ୍ତି । ତାଙ୍କର ଯୋଡ଼ାଏ ଗ୍ଲେଟ-ଗ୍ଲେଟ ପିଲା ତଳେ ଖେଳୁଥାନ୍ତି । ସେ ପିଲା ଦିହିଙ୍କି ପଚାରିଲେ, "ବାବା ଅଛନ୍ତି ?" ସେମାନେ କହିଲେ, "ହଁ, ଅଛନ୍ତି ।"

"କେଉଁଠି ଅଛନ୍ତି ?"

"କୋଠା ଉପରେ ଅଛନ୍ତି ।"

"କଣ କରୁଛନ୍ତି ?"

ସେ ଛୁଆ ଦିଓଟି କହିଲେ, "ଆପଣ ଯେଉଁଠି, ଆମେ ତ ସେଇଠି । ସେ ବର୍ତ୍ତମାନ କଣ କରୁଛନ୍ତି ଆମେ କେମିତି କହିପାରିବୁ ।"

ଏତିକରେ ଲକ୍ଷ୍ମୀନାରାୟଣବାବୁ କଣ ଭାବି ସେଠୁ ପଳାଇ ଆସିଲେ । ପରେ ସେଇ ପିଲାଙ୍କର ସେ ପ୍ରାଇଭେଟ୍ ଟ୍ୟୁଟର ହୋଇଥିଲେ ।

× × ×

ସାଧାରଣ କ୍ଷେତ୍ରରେ କାମ କରୁ କରୁ ତାଙ୍କ ସମ୍ପର୍କରେ ମୁଁ ବହୁବାର ଆସିଛି । ସେସବୁ ଲେଖିଲେ ଗୋଟିଏ ପୋଥି ହେବ । ମୋତେ ମହାତ୍ମା ଗାନ୍ଧୀଙ୍କ ନିକଟକୁ ତଥା କଂଗ୍ରେସକୁ ଟାଣିଆଣିବାରେ ସେ ହେଉଛନ୍ତି ମୂଳ । ଗାନ୍ଧି କିଏ କଣ, ମୁଁ ଆଦୌ ଜାଣି ନ ଥିଲି । ଅସହଯୋଗ ଆନ୍ଦୋଳନର ଦି,ବର୍ଷ ପୂର୍ବରୁ ସେ ମତେ ଓ ମୋ ବନ୍ଧୁ ସତୀଶଚନ୍ଦ୍ର ମିଶ୍ରଙ୍କୁ ଗାନ୍ଧିଜୀଙ୍କ ଜୀବନୀ ଖଣ୍ଡି ଦେଇ ପଢ଼ିବାକୁ କହିଥିଲେ । ପଢିବା ପାଇଁ ଯୁବକମାନଙ୍କୁ ଭଲ ଭଲ ବହି ଯାଚି ଦେବା ତାଙ୍କର ଗୋଟିଏ ଅଭ୍ୟାସ ଥିଲା । ସେ ବହିରୁ ମହାତ୍ମା ଗାନ୍ଧୀଙ୍କର ବନାରସ ବିଶ୍ୱବିଦ୍ୟାଳୟ ବକ୍ତୃତା ପଢ଼ି ମୋର ମନ ତାଙ୍କୁ ଦେଖିବା ସକାଶେ ଉଛନ୍ନ ହେଲା ।

ଲକ୍ଷ୍ମୀନାରାୟଣ ବାବୁ ସବୁବେଳେ କହୁଥାନ୍ତି, "ପଢ଼, ନ ପଢ଼ିଲେ ଜାଣିବ କଣ, ଲେଖିବ କଣ ।" ଥରେ କହିଥିଲେ, "ପୃଥିବୀରେ ଖବର ଅଭାବ ନାହିଁ । ତମେ ଯାହା ଆଜି ଭାବୁଛ, ହୁଏତ ଯୁରୋପର କେଉଁଠାରେ କଣେ ଲେଖକ ଆଜିକୁ ୫୦ବର୍ଷ ପୂର୍ବରୁ ତା' ଭାବିଛି । ଭାବର ତାରତମ୍ୟ ଯାହା; ଯିଏ ଯେପରି ଫୁଟେଇ ପାରୁଛି ।"

ଯେ ଭାରତ ସେବକ ସମିତିର ସଭ୍ୟରୂପେ କାର୍ଯ୍ୟ କରୁଥାନ୍ତି । ତାଙ୍କ ସୋସାଇଟିରେ ମନା ଥାଏ କଂଗ୍ରେସରେ ଯୋଗଦେବାକୁ । ସେ କଟକ ଆସିଥାନ୍ତି, ମୁଁ ଥାଏ ଜିଲ୍ଲା କଂଗ୍ରେସ କମିଟିର ପ୍ରେସିଡ଼େଣ୍ଟ । ପରୀକ୍ଷା ସ୍ୱରୂପ ଯାଇ ତାଙ୍କ ପାଖରେ ପହଞ୍ଚିଲି । କହିଲି, "ତମେ କଂଗ୍ରେସର ମେମ୍ବର ହୁଅ ।" ସେ ହସି ହସି କହିଲେ, "ତମେ ମୋ କଥାଟା ମନେ ରଖିଛ । ଆପଣ ବୋଲି ଆଉ ଡାକୁନାହଁ । ଦେଖି, ଯେ ମେମ୍ବର ଖ ତାରେ କଣ ଲେଖା-ଅଛି ।" ସେ ପଢ଼ିଲେ, ପଢ଼ି ଦସ୍ତଖତ କରିଦେଲେ । ତହିଁ ଆରଦିନ ସବୁ କାଗଜରେ ବଡ଼ ବଡ଼ ଅକ୍ଷରରେ ବାହାରିଗଲା, ଲକ୍ଷ୍ମୀନାରାୟଣ ସାହୁ କଂଗ୍ରେସର ମେମ୍ବର ହେଲେ । ଅବଶ୍ୟ ତାଙ୍କ ସୋସାଇଟିରୁ କଣ ଚିଠି ଆସିଥିବ, ମୁଁ ଜାଣେ ନାହିଁ । ସେ ତାର କଣ ଉତ୍ତର ଦେଇଥିବେ, ତା ମଧ୍ୟ ମତେ ଅଜଣା । ସେତେବେଳେ ସାରା ଦେଶରେ ଗୋଟିଏ ଚହଳ ପଡ଼ିଗଲା ।

× × × ×

ତାଙ୍କର ଦେହ ଛାଡ଼ିବାର ପ୍ରାୟ ଦି'ମାସ ପୂର୍ବରୁ ସେ ମୋ ପାଖକୁ ଆସିଥିବେ । ମୋ' ଘରେ ଖାଇ ପିଇ ମୋର ବନ୍ଧୁବାନ୍ଧବଙ୍କ ଘର କେଉଁଠି, ସେ କଥା ଗୋଟିଏ ଖାତାରେ ଟିପିନେଲେ ।

ତହିଁ ଆରଦିନ କାଫଲାରେ ମୋ ପତ୍ନୀଙ୍କ ଘରେ ଯାଇ ପହଞ୍ଚିଲେ । ତାଙ୍କ ସ୍ତ୍ରୀ ମନମୋହିନୀ ଦେବୀ କଣେ ଲେଖିକା । ତାଙ୍କର ସବୁ ବହି ପଢ଼ି ଖୁବ୍ ଖୁସି ହେଲେ । ତାଙ୍କୁ ଉତ୍ସାହ ଦେଇ କହିଲେ—ଆହୁରି ଲେଖ । କହୁ କହୁ ଦିନ କଟିଗଲା । ସେଦିନ ସକାଳ ଆଠଟାବେଳେ ଯାଇ ପହଞ୍ଚି ଦେଖେ, ତାଙ୍କ ଘର ଲୋକାରଣ୍ୟ । ଯେ ଯେପରି ସବୁଦିନ ଶୁଥନ୍ତି, ସେହିପରି ଶୋଇ ରହିଛନ୍ତି । ଶବ ସାଙ୍ଗରେ ବୁଲି ତାଙ୍କ ଦାହ ଦେଖିବା ସକାଶେ ମୋର ଆଉ ଇଚ୍ଛା ହେଲା ନାହିଁ । ତାଙ୍କ ଉଦ୍ଦେଶ୍ୟରେ ଗୋଟିଏ କବିତା ଲେଖି ପଠାଇ ଦେଇଥିଲି ।

"ଏଣେ ପିନା ଆମେ କରୁ ଶୋକସଭା
ତେଣେ ତମେ ଗଲେ ଦୋଳେ ହାରଜନା
ଶତ ଶତ ଯୋଦ୍ଧା ସ୍ତୁତିଛନ୍ତି ତୁମ୍ଭଙ୍କୁ
ଅଛ କି ଚାଇବା ଗଳିକି ଫେର ।"

— — —

# ସ୍ୱର୍ଗତ ଲକ୍ଷ୍ମୀନାରାୟଣ

**ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲ**

ଭୁପାଲ-୨୮ ଡିସେମ୍ବର ୧୯୭୩

ଇଂରାଜୀରେ କୁହାଯାଏ—"Variety is the sauce of life." ଦୁନିଆ ରଙ୍ଗ-ଢଙ୍ଗେଇ; ସବୁ ଆକାରର, ସବୁ ପ୍ରକାରର; ସବୁ ମାପର ଜିନିଷ-ଜାନୁଆର ନ ଥିଲେ ଏ ସୃଷ୍ଟିର ଅପୂର୍ବ ବୈଚିତ୍ରତା ଆସିକି ଆସନ୍ତା କିପରି ?

ବିଧିଙ୍କ ବିଧାନରେ ସବୁ ମଣିଷର ଆଉଟା ହାତ, ଦୁ'ଟା ଗୋଡ଼, ଆଖି-କାନ-ନାକ ଆଦି ସୁଦ୍ଧା ପ୍ରତିଟି ମଣିଷ ପ୍ରତିଟି ଅପର ଜଣକଠାରୁ ଭିନ୍ନେ । ତାର ପ୍ରକୃତି ଭିନ୍ନେ, ତାର ଅଚରଣ ଚଳନ ବଳନ, ତାର ରୁଚି ବିଗ୍ରହ ଓ ଆଦର୍ଶ, ସବୁ ସ୍ୱ-ସ୍ୱ ଭିନ୍ନେ । ତେବେ ସାଧାରଣତଃ ଦେଖାଯାଏ, ଶେକଡ଼ି ନବେ ଜଣ ହୁଅନ୍ତି ଯେତକି ମିଳେ ସେତକିରେ ଯୋଗକଥା ତୁଷ୍ଟ, ନିର୍ଦ୍ଦିନ୍ତ ଆରାମରେ ରହିପାରିଲେ ଅଉ କିଛି ପ୍ରତି ଉଦାସୀନ; ଉଚ୍ଚାଶାହୀନ, ଶାନ୍ତିପ୍ରିୟ, ନିଶ୍ଚେଷ୍ଟ । ସ୍ୱାଙ୍କୁ ଛାଡିଦେଲେ ବାକିଙ୍କ ଭିତରୁ ଅଧିକାଂଶ ଧନମାନ ଉଚ୍ଚପଦ ପଛରେ ଧାବମାନ, ଚିର ଅଶାନ୍ତ; ସ୍ୱାର୍ଥସାଧନ ଲାଗି ସବୁ ନ୍ୟାୟନୀତି ଧାରଣା ସବୁ ଆଦର୍ଶ ନିମିଷକେ ଛାଡ଼ିବାକୁ ପ୍ରସ୍ତୁତ । ଘୋର ବସ୍ତୁବାଦୀ, ସର୍ବଥା ସୁବିଧାବାଦୀ ।

ଏତେ ସମସ୍ତଙ୍କୁ ବାଦ୍ ଦେଇ ଖୋଜି ବସିଲେ ହଜାରକେ କି ଲକ୍ଷକେ ଜଣେ ମିଳିବେ, ଯେ କି ନିଜର ଧାରଣା ପାଇଁ ନିଜର ଆଦର୍ଶ ( Ideal ) ହାସଲ କରିବା ଲାଗି ନିଜର ଯାହା କିଛି ସବୁ, ଏପରିକି ନିଜକୁ ସୁଦ୍ଧା ବଳି ଦେବାକୁ ବର୍ବାଦ୍ କରିଦେବାକୁ ପ୍ରସ୍ତୁତ ।

ଲକ୍ଷ୍ମୀନାରାୟଣ, ଅକାଳ-ଝାଉଁଳା ଓଡ଼ିଶାର ଗୌରବ । ସେ ଥିଲେ "ଲକ୍ଷେ-ମେ-ଏକ୍" ଶ୍ରେଣୀର ଅସାଧାରଣମାନଙ୍କ ମଧ୍ୟରୁ ଜଣେ । ତାଙ୍କୁ ଓଡ଼ିଶାର ଲୋକେ ଚିହ୍ନି ନ ଥିଲେ ବା ଜାଣି ନ ଥିଲେ, ଏପରି-ନୁହେଁ; ମାତ୍ର ସେ ତାଙ୍କ ଜୀବନକାଳ ମଧ୍ୟରେ ନିଜର ଯଥାଯୋଗ୍ୟ 'recognition' ବା ସ୍ୱୀକୃତି ପାଇପାରିଲେ ନାହିଁ, ଏ ଅବଶୋଷ ମେଣ୍ଟିବାର ନୁହେଁ । ହଁ, କେବଳ ଅବହେଳିତ ଓଡ଼ିଶାର ନ ହୋଇ ସେ ଯଦି ମହା-ଭାରତୀୟ ପରିପ୍ରେକ୍ଷୀରେ ଅଭ୍ୟୁଦିତ ହୋଇଥାନ୍ତେ ବା ଭାରତରେ ନ ହୋଇ ପାଶ୍ଚାତ୍ୟ ସଭ୍ୟତା-ମାନରେ ଉଚ୍ଚାସନ ଅଧିକାରୀ କୌଣସି ଦେଶରେ ଜନ୍ମ ନେଇଥାଆନ୍ତେ ଓ ସମକୋଟୀର ଜୀବନ ଯାପନ କରିଯାଇ ଥାଆନ୍ତେ, ତାହାହେଲେ କଦାପି ତାଙ୍କର ଅନ୍ତିମ ସମୟରେ ଏପରି "ହିନସ୍ତା" ଉପେକ୍ଷା ଭୋଗି ନ ଥାନ୍ତେ; ପରନ୍ତୁ ତାଙ୍କର ଜୀବନବ୍ୟାପୀ ଅଦମ୍ୟ ଉତ୍ସାହ ସାଧନାର ଜୀବନ୍ତ ଜ୍ୱଳନ୍ତ ଏବଂ ନିସ୍ୱାର୍ଥ କୀର୍ତ୍ତି ଜଗତର ଇତିହାସରେ ନିଃସନ୍ଦେହରେ ରହି ଯାଇପାରିଥାନ୍ତେ ।

ଦେଶର ବହୁ ବହୁତର ଜ୍ଞାନୀ, ଗୁଣୀ, ମହାତ୍ମା, କର୍ମବୀର, ଧର୍ମବୀର ଧୁରନ୍ଧରଙ୍କ ସଙ୍ଗେ ସାହୁଜୀଙ୍କର ହାର୍ଦ୍ଦିକ ସମ୍ବନ୍ଧ ଆଜୀବନ ଥିଲା ଏବଂ ସେମାନଙ୍କ ଆଖିରେ ତାଙ୍କ ଭଳି ନିସ୍ୱାର୍ଥପର ପରୋପକାରୀ ଏକନିଷ୍ଠ ଏବଂ ନିଷ୍ଠାବାନ୍ ଚରିତ୍ରବାନ୍ ବ୍ୟକ୍ତି ନିତାନ୍ତ ହିଁ ବିରଳ ଥିଲେ । ଦୁଃଖ ଆମର ଏତିକି ଯେ, ଏତେ ସବୁ ସଦ୍‌ଗୁଣର ଏକତ୍ର ସନ୍ନିବେଶ ସତ୍ତ୍ୱେ ସାହୁଜୀ ଜଣେ ସର୍ବଭାରତୀୟ ନେତା ବୋଲାଇଲେ ନାହିଁ—ଏପରି କି ଥରେ ହେଲେ ରାଜ୍ୟପାଳ, ମୁଖ୍ୟମନ୍ତ୍ରୀ ବା ମନ୍ତ୍ରୀ ପଦ ତାଙ୍କୁ ଛୁଇଁଲା ନାହିଁ ।

'Honesty is the Best Policy' ଯେ ଆଜିକା କାଳର ମତ—ମାନରେ କେଡ଼େ ଅଗ୍ରାହ୍ୟ, କେଡ଼େ ଅନାଦରଣୀୟ ହୋଇ ଗଲାଣି, ସାହୁଜୀଙ୍କର ଝୋଭନ୍ତିକ ଅସଫଳ ଜୀବନ ତାର ଏକ ଅତି-କରୁଣ ଦୃଷ୍ଟାନ୍ତ ।

ମାତ୍ର ବିତୃଷ୍ଣାମୟ ଅକର୍ମକ କାରୁଣ୍ୟ ସୃଷ୍ଟିର ଅବସର ଏଇଟା ନୁହେଁ, କାରଣ ବିତୃଷ୍ଣା, ଅକର୍ମଣ୍ୟତା ବା ନିଷ୍କ୍ରିୟ ନିସ୍ତବ୍ଧତା ଆଜି ଦେଶର ଏ କୋଣରୁ ସେ କୋଣ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଲକ୍ଷ୍ମୀନାରାୟଣଙ୍କ ଭଳି ତେଜସ୍ୱୀ ନିଷ୍ଠାବାନ ଓ ନିର୍ଭୀକ ପୁରୁଷଙ୍କ ସ୍ମୃତିତର୍ପଣ ବେଳେ ଏଗୁଡ଼ିକର ସଂପୂର୍ଣ୍ଣ ବହିଷ୍କୃତଧର୍ମୀ ଚେଷ୍ଟା ଓ ଆଦର୍ଶ ଉପସ୍ଥାପିତ କରିବାହିଁ ଆମର ଏକମାତ୍ର ଲକ୍ଷ୍ୟ ହେବା ଉଚିତ, ଦେଶ-ମାତୃକା ପ୍ରତି ଆମର ଅବଧାରିତ କର୍ତ୍ତବ୍ୟ ହିସାବରେ ।

× × ×

ଧୂଳିଆ ବୈଶାଖ ଶେଷ ହେବା ଉପରେ । ଦିନ ଗୋଟାକ... ଆକାଶବତାସ ଗ୍ରାସ କରିଆଡ଼େ ଯେପରି ନିଆଁ ବାଣ ... ଚରି ବୁଲୁଛି । ସଞ୍ଜ ଅନ୍ଧାର ମାତ୍ର ଆସେ । କଥା ... ସାହୁଜୀ ଗରିବ ଭ୍ରାତାଟିକୁ ସାଙ୍ଗରେ ଧରି ଜଣେ ମାନ... ଗୃହସ୍ଥଙ୍କ ଘରେ ଥିଲେ—ଉଦ୍ଦେଶ୍ୟ, ମହାବିଦ୍ୟାଳୟରେ

ଏଡ଼ମିଶନ ଲାଗି କିଛି ସାହାଯ୍ୟ ଯୋଗାଡ଼ କରିଦେବା ଛାତ୍ରଟିକୁ । ସାହୁଜୀଙ୍କୁ ସେଦିନ ଜ୍ୱର । ତିନି ଦିନର ଜ୍ୱର, ସାଗୁ ପାଣି ଓ କୁଇନାଇନ୍ ଦିମାନେ ଚାଲିଛି । ଏମିତିରେ ସାହୁଜୀ (ସେତେବେଳେ) ଭାରି ଟାଣୁଆ ମଣିଷ, ସହଜେ ରୋଗବୈରାଗ ତାଙ୍କୁ ଧରେ ନାହିଁ । ମୁଣ୍ଡ ବଥା, ପେଟ ବଥା, ହାତଗୋଡ଼ ବିନ୍ଧା ଛୁଟିକା, ଏସବୁ ତାଙ୍କୁ ବେମାଲୁମ । କିନ୍ତୁ କେଜାଣି କି ଅନିୟମ (ବା ପ୍ରାକୃତିକ ନିୟମ) ଯୋଗୁଁ ତାଙ୍କୁ ଏଇ କେତେଦିନ ହେଲା ଜ୍ୱରଟା ଧରି ପକାଇଛି ଓପାଧ, କୁଇନାଇନ୍‌ରେ ଚଟ୍ କାଟୁ କରୁନାହିଁ ।

ଯାହାହେଉ, ପୂର୍ବ ନିର୍ଦ୍ଦେଶମତେ, ଛାତ୍ରଟି ଯାଇ ଛୁଇ ସନ୍ଧ୍ୟାବେଳେ ସାହୁଜୀଙ୍କ ଘରେ ଉପସ୍ଥିତ—ସାହୁଜୀ ଖଟିଆ-ଶାୟୀ । ଛାତ୍ରଙ୍କୁ ଦେଖି "କିହୋ, ଆସିଗଲ" କହି ସାହୁଜୀ ଉଠି ତ ବସିଲେ, କିନ୍ତୁ ଦେଢ଼ମାଇଲ ବାଟ ଚାଲି ଯିବା କଥା । ସେକାଲରେ ରିକ୍ସା ନ ଥିଲା, ଯେ ଡାକ ପକାଇଲାକ୍ଷଣି ଦି'ଚାରିଟା ଧାଇଁ ଆସିବେ । ଥିଲା ସ୍ପେଫ୍ ଘୋଡ଼ାଗାଡ଼ି, ରିକ୍ସା ନୁହେଁ କି ଟାକ୍ସି ନୁହେଁ ।

ସାହୁଜୀ ତ ଉଠିଲେ । ହାତକଟା ସୂତାର ଧୂଆ ଧୋତି ଖଣ୍ଡେ ପିନ୍ଧି ଛାତ୍ରଟିକ ସାଙ୍ଗରେ ଧରି ବାହାରିଲେ । ମୁକାମରେ ପହଞ୍ଚିଲା ବେଳକୁ ବତି ଜଳିଲାଣି । ଗୃହସ୍ଥଙ୍କ ବୈଠକଖାନାରେ ଦୁଇଚାରି ଜଣ ଉପସ୍ଥିତ । ସନ୍ଧ୍ୟାବେଳେ ପ୍ରତ୍ୟହ ଜମାଟ ହୁଏ ତାଙ୍କ ଘରେ । ରାଜନୀତିର ଚର୍ଚ୍ଚା ସେତେବେଳର କଡ଼ା ନିଶା । ସେଇ ପ୍ରସଙ୍ଗ ହିଁ ଜୋରସୋରରେ ଚାଲିଥାଏ, ଏମାନେ ପହଞ୍ଚିଲା ବେଳକୁ । ସାହୁଜୀ ତ ସହଜେ "ଜାଣୁଆ" ଲୋକ; ପହଞ୍ଚିଲାମାତ୍ରେ ଆଲୋଚନା ଭିତରକୁ ଟଣା ହେଲେ । ଏଣେ ଦେହ ଅସୁସ୍ଥ, ସନ୍ଧ୍ୟା ଗଡ଼ି ରାତି ଘଡ଼ିରେ ହେବାକୁ ଚାଲିଲା । ତେଣେ ପଢ଼ୁଆ ଟୋକାଟା ବାହାର ବାରଣ୍ଡାରେ ବେଞ୍ଚରେ ବସି ବସି ଢୁଲେଇ ପଡ଼ିଲାଣି କି କଣ । ସାହୁଜୀ ଭିତରେ ଭିତରେ ଚଞ୍ଚଳ ହେଲେଣି ବେଳୁ ବେଳ; ହେଲେ 'ସଭା'ରେ ବସି ସାହାଯ୍ୟ ପ୍ରସଙ୍ଗ ଉଠାଇବାଟା ଯେପରି ଅସୁନ୍ଦର, ଜମାଟ ମେଳ-ଭିତରୁ ଘରବାଲାଙ୍କୁ "ବାହାରକୁ ଟିକିଏ ଆସନ୍ତୁ" ବୋଲି ଡାକି ନେବାଟା ସେହିପରି ଅସଜ କଥା ।

ଶେଷକୁ ସାହୁଜୀଙ୍କୁ ଦ୍ୱିତୀୟ ପନ୍ଥାଟିର ଆଶ୍ରୟ ନେବାକୁ ହିଁ ପଡ଼ିଲା, କାରଣ ରାଜନୀତିର ସେବକବୃନ୍ଦ ସେ ପ୍ରସଙ୍ଗ ମିନିଟିକ ଲାଗି ହେଲେ ଛାଡ଼ିଲେ ନାହିଁ କି ଅନ୍ୟ ପ୍ରସଙ୍ଗକୁ ବି ଟାଳିଲେ ନାହିଁ । ଘରର ମାଲିକ ଟିକିଏ ଅସନ୍ତୁଷ୍ଟ ମୁହଁରେ ଉଠି ବାହାରକୁ ଆସିଲେ—ତଥାପି ସାହୁଜୀ ଆଗରୁ କୈଫିୟତ ବାଢ଼ି ରଖିଥିଲେ ଯେ ତାଙ୍କ ଦେହ ଅସୁସ୍ଥ, ସେ ଟିକିଏ ଶୀଘ୍ର ଫେରିଯିବା ଦରକାର ।

ବାହାରକୁ ଆସି ପିଲାଟିକୁ ଭଦ୍ରଲୋକଙ୍କ ପାଖକୁ ଡାକି ପରିଚୟ କରାଇ ଦେଲେ, ତାର ପଢ଼ା ପ୍ରତି ଆଗ୍ରହ ଓ ପଢ଼ାଶୁଣାରେ ମଧ୍ୟ ଅଛି, ଭଲଭାବେ ପାଶକରି ଏବେ ଉଚ୍ଚତର ଶିକ୍ଷା ପାଇଁ ଇଚ୍ଛୁକ—ସବୁ କଥା ସଂକ୍ଷେପରେ କହିଗଲେ । ଭଦ୍ରଲୋକ ଘର ଭିତରର ଆଲୋଚନା ପ୍ରତି ଆକୃଷ୍ଟ; ହଁ ହାଁରେ ବିଦା କରିବାକୁ ଚେଷ୍ଟା ତାଙ୍କର । ସାହୁଜୀଙ୍କର ଉପସଂହାର 'ସାହାଯ୍ୟ ପ୍ରାର୍ଥନା'ର ଉତ୍ତରରେ ସେ—"ହଉ, ହଉ, ଏଡ଼ମିଶନକୁ ତ ଡେରି ଅଛି ଏକ୍ଷଣି, ପରେ ଆସିବେ" କହି ସେଠୁ ପ୍ରସ୍ଥାନ କଲେ ।

ସାହୁଜୀ ଛାତ୍ରକୁ ନେଇ ଘରମୁହାଁ ହେଲେ । ଛାତ୍ରଟି ଭଦ୍ରଲୋକଙ୍କଠାରୁ ଗୋଟାଏ ସୁଦ୍ଧା ଶୁଖିଲା ପ୍ରଶ୍ନ ବି ଶୁଣିଲା ନାହିଁ ଯେ 'ତମ ନାଁ କଣ' ବା 'ତୁମର ବାପ ମା କିଏ ଅଛନ୍ତି, କଣ କରନ୍ତି ?" ସେ ପ୍ରାୟ—ନିରାଶ କଣ୍ଠରେ ସାହୁଜୀଙ୍କଠାରେ ଅପରାଧୀ-ବୋଧରେ କହିଲା—ଜ୍ୱର ଦେହରେ ଆପଣ ଖାଲି ଖାଲିଟା କୋଶେ ବାଟ ଚାଲି ଚାଲି ଆସିଲେ, ଫଳ ତ କିଛି ହେଲାନି—ବୃଥାରେ କଷ୍ଟ ଦେଲି ଆପଣଙ୍କୁ ! ସାହୁଜୀ ଏପର୍ଯ୍ୟନ୍ତ ମନର ଭାବ ମନ ଭିତରେ ସମ୍ଭାଳି ରଖିଥିଲେ, ପିଲାଟିର ଏଇ କରୁଣ ଉକ୍ତିରେ ତାଙ୍କର ଭିତରିଆ ଉତ୍ତାପ ବାରୁଦରେ ନିଆଁ ସଂଯୋଗ ହେଲା ପରି ଫାଟି ପଡ଼ିଲା । "ହୁଃ ହେ, ଏମାନଙ୍କ କଥା କଣ କହୁଚ । ପ୍ରତିଦିନ ସନ୍ଧ୍ୟାରେ ଖାଲି ଚାହା ସିଗ୍ରେଟରେ ଦି'ଚାରି ଟଙ୍କା ଚାଲିଯାଉଥିବ ଯେ, କିନ୍ତୁ ସତ୍‌କାର୍ଯ୍ୟରେ ସୁଉକି ଅଧୁଲିଟାଏ ବାହାର କରିବା ବେଳକୁ କାଲି ଆସ, ପଅରିଦିନ ଦେଖିବା; ଏଡ଼ମିଶନ୍‌କୁ ଏକ୍ଷଣି ଢେର ଡେରିଅଛି' କେତେ କଣ ଶୁଣିବାକୁ ପାଇବ । ଏଗୁଡ଼ା ପୁଣି ଭଦ୍ରଲୋକ··· ମଣିଷ, ହୁଃ !" ବିଚରା ବିଦ୍ୟାର୍ଥୀ ତ କାବା ।

ମାଇଲେ ଦେଢ଼େ ନୀରବରେ ଚାଲି ଚାଲି ଆସିବା ପରେ ସଦର ରାସ୍ତା ଉପରେ ପହଞ୍ଚିଲେ ସେମାନେ । ଫିନ୍‌ଫିନିଆ ଜହ୍ନ ଆଲୁଅ ମାଡ଼ିଗଲାଣି ଚରଚର, ସେତେବେଳକୁ । ପବନ ବି ବହିଲାଣି ଫୁଲୁଫୁଲିଆ, କ୍ଳାନ୍ତ ଦେହକୁ ଭାରି ସୁଖ ଲାଗୁଥାଏ । ଠିକ କଂଗ୍ରେସ ଅଫିସ ସାମନାରେ ପହଞ୍ଚିଲା ବେଳକୁ, ଅଫିସ ଭିତରୁ ଜିଲ୍ଲା-ସଭାପତି ବାହାରି ଆସୁଥିଲେ । ତରୁଣ, ବନ୍ଧୁ ଉଚାଶା ତାଙ୍କର; ସାହୁଜୀଙ୍କୁ ନମସ୍ତେ ଜଣାଇ ଏକଥା ସେକଥା ଉଠେଇଲେ ।

ପାଞ୍ଚ ସାତ ମିନିଟ ଯାଇଛି କି ନାହିଁ, ସାହୁଜୀଙ୍କ ମନର କଥାଟା ବାହାରେ ପ୍ରକାଶ ପାଇଲା, ପଚାରିଲେ ସଭାପତିଙ୍କୁ—

ହଇ ହୋ, ତମର ଅମୁକବାବୁ (ଯେଉଁ ବାବୁଙ୍କ ଘରୁ ଫେରୁଥିଲେ ତାଙ୍କ ନା ଧର) କମିତକା ଲୋକ ହେ, ଏଇ ଗରିବ ପିଲଟି ପଢ଼ିବା ପାଇଁ ସାହାଯ୍ୟ ଦେବାକୁ କହିଲି ଯେ, ଶୁଣି ସେପରି ଶୁଣିଲେ ନାହିଁ । ତମ କଂଗ୍ରେସ ଖାତାରେ ତ ସେଙ୍କର ବହୁତ ଦାନ ଶୁଣିଚ, ଦାନୀ ବୋଲି ଲୋକେ ଆଗରୁ କହୁଥିଲେ, ତ'···ଏ ଗରିବ ପିଲଟି ବେଳକୁ ଦାନର ସାଗର ଶୁଖିଲି ପଡ଼ିଗଲେ କାହିଁକି ହୋ ?···ପୁଣି ତମେ ପରି କହୁଥିଲ ଆସନ୍ତା ବର୍ଷକୁ ତାଙ୍କୁ ଜିଲା କଂଗ୍ରେସର ମୁଖିଆ କର୍ମୀ କରିଦେବ ?···ସେଙ୍କ ଭିତରେ ତ ଅସଲି ଚିଜ, ସଚ୍ଚାଇ ଦେଖା ପଡ଼ୁନାହିଁ, ସେଙ୍କୁ ନେତାଙ୍କ ଆସନରେ ଥୋଇଲେ ତମ କଂଗ୍ରେସ ଯେ ମୋକ୍ଷଲାଭ କରିଯିବ, ସେ କଥା ଖିଆଲ ରଖିଚ କି ?

ତାରୁଣ୍ୟର ଉଜ୍ଜ୍ୱଳ ସ୍ୱପ୍ନ ସତ୍ୟପତିଙ୍କ ଆଖିରେ, ହୃଦୟରେ ଅପାର ଉତ୍ସାହ । ନିଜର ଆଦର୍ଶ, ନିଜ ପାର୍ଟି ଉପରେ ଆସ୍ଥା ଭରପୂର । ଭଗବାନଙ୍କ ଉପରେ ଯେତିକି ଭରସା, ପାର୍ଟି ଉପରେ ଭରସା ତାଠୁଁ କିଛି କମ ନୁହେଁ; ତା' ସାଙ୍ଗକୁ ଯୁବକ ସୁଲଭ ଅନ୍ଧକେତା ବି ଉଚ୍ଛୁଳି ଉଠୁଛି ।

ସତ୍ୟପତି ନିଜର ପାର୍ଟିର ଉଦାର ପୋଷକ, ଅ-ବାବୁଙ୍କ ଦାନପଣ ତଥା ସଚ୍ଚାଇ ସମ୍ବନ୍ଧରେ ଏ ଅପବାଦ ସହି ପାରିଲେ ନାହିଁ । କଥା କଟାକଟି ଚାଲିଲା ସାହୁଜୀଙ୍କ ସଙ୍ଗେ । ବିଚରା ବିଦ୍ୟାର୍ଥୀ ଏକ ଅସହାୟ ଦର୍ଶକ, ସୌଜନ୍ୟମୂର୍ତ୍ତିରେ । ସାହୁଜୀଙ୍କ ପ୍ରକୃତ ତର୍କ-ଅସହନ୍ତୁ; ସେ ପାଞ୍ଚମିନିଟ ନ ଯାଉଣୁ କ୍ରୋଧର ଅଗ୍ନି ନ ଉଠାଇ "ଯୁଦ୍ଧଂ ଦେହି" Stageକୁ ଆସିଗଲେ । ସତ୍ୟପତି ବାବୁ ବି ଛାତିଫୁଲାଇ ପଦେପ୍ରେ ଲଢ଼ିଯିବାକୁ ତିଆର ।

ଦୈବଯୋଗକୁ, ଅଫିସ ଭିତରୁ ଆଉ ଜଣେ ଦୁଇଜଣ ବାହାରି ଆସି କର୍ମମାନ (ଜ୍ୱର ପ୍ରସ୍ତାବରୁ) -ସାହୁଜୀ ଓ ନିଜ ସତ୍ୟପତିଙ୍କୁ ତଦବସ୍ଥ ଦେଖି ତତ୍‌କ୍ଷଣାତ ସେମାନଙ୍କୁ ବିପରୀତ ଆଡ଼କୁ ଟାଣି ନ ନେଇ ଯାଇଥିଲେ, ପରିଣାମ କଣ ହୋଇଥାନ୍ତା ତାହା ହତବୁଦ୍ଧି ହତବାକ୍ ବିଦ୍ୟାର୍ଥୀର ଅଗୋଚର ।

× × ×

ସେଠୁ ଦୁହେଁ ପୁଣି ଘରର ରାସ୍ତା ଧରିଲେ । ଚୁପ୍ ଚାପ । ସାହସ କରି ଗ୍ରାନ୍ତଟି ସାହୁଜୀଙ୍କୁ ନିବେଦନ କଲା—ଆଜ୍ଞା, ଆପଣ ମୋ ଲାଗି ସିନା ମିଛଟାରେ କଂଗ୍ରେସବାଲାଙ୍କ ଶତ୍ରୁତା ସୃଷ୍ଟି କଲେ, ସେମାନେ ନିଶ୍ଚେ ଆପଣଙ୍କୁ ଅପମାନ କରିଦେବେ, ଅନିଷ୍ଟ କରି ବସିବେ । ସାହୁଜୀ ତକ୍ଷଣେ ଏଟମବମ୍ ଭଳି ଫାଟି ପଡ଼ିଲେ—"ଅପମାନ କରିବେ, ଅନିଷ୍ଟ କରିବେ । ଅ-ବାବୁଙ୍କ ଭଳିଆ ଅପଦାର୍ଥ ଅମଣିଷ ଗୁଡ଼ାକ ।" ହାଃ-ହାଃ ଶବ୍ଦରେ ତାଙ୍କ ଅଟ୍ଟହାସ, ଘନବନର ଓପାସିଆ କଣ୍ଠରୁ ବାହାରୁଥିଲେ ସୁଦ୍ଧା, ଆକାଶ ବତାସ କମ୍ପାଇ ଦିଗ୍-ବିଦିଗକୁ ପ୍ରସରିଗଲା । "ହେ କପିଳ ! ଯଦି ପଢ଼ାଶୁଣା କର, ଯଦି ଜୀବନରେ କୃତୀ ହୁଅ, ତେବେ ମୋର ଗୋଟିଏ କଥା ମନେ ରଖିବ—ରଖିବ । ମଣିଷ ପରି ମଣିଷଟାଏ ହବ·· ଡରିବ ନାହିଁ, ପ୍ରଲୋଭନରେ ଭୁଲିବ ନାହିଁ, ବଡ ପାହ୍ୟାରେ ବସିଲେ ଗରିବଗୁରୁବାଙ୍କ କଥା ମଲାମୁଣ୍ଡିଆଙ୍କ ଭଲମନ୍ଦ ଦୁଃଖଯନ୍ତ୍ରଣାକୁ ମୁହଁ ମୋଡ଼ିଦେବ ନାହିଁ—କହ, ଦବ ନାହିଁ ?"

ଗରିବ ପିଲଟିର ଅନ୍ତର୍ଯ୍ୟାମୀ ପୁରୁଷ ସେହି ମହାପ୍ରଶ୍ନର କି ଉତ୍ତର ଦେଇଥିଲା । ମନେ ମନେ ତାହା କାଲି ଏକା ଅନ୍ତର୍ଯ୍ୟାମୀହିଁ କହିପାରିବେ ।

ଅପଣାକୁ ଯିଏ ଦେଇଛୁ ଉପାଇ
ସକଳ ହୃଦୟ ନିକଟେ ।

—ଲକ୍ଷ୍ମୀନାରାୟଣ

# ଲକ୍ଷୀବାବୁ ! ମତନ ପଡ଼େ

## ଶ୍ରୀ ଅଧିରାଜମୋହନ ସେନାପତି

ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ତାଙ୍କ ନାମ ପଛରେ ଅନେକଗୁଡ଼ିଏ ଉପାଧି ହାସଲ କରିଥିଲେ । ସେଗୁଡ଼ିକୁ ଏହିପରି ଲେଖାଯାଏ—ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ ଏମ୍.ଏ. ଏଲ୍. ଏଲ୍. ଡି. ପଦ୍ମଶ୍ରୀ, ଇତିହାସ ରତ୍ନ; ଭାରତତୀର୍ଥ; ସଭ୍ୟ, ଏସିଆଟିକ ସୋସାଇଟି, ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ; ସଦସ୍ୟ, ହିନ୍ଦ୍ସେବକ ସମିତି । ଏହି ଉପାଧି-ଗୁଡ଼ିକ ତାଙ୍କ ବିଦ୍ୟା, ବୁଦ୍ଧି, ଅଧ୍ୟବସାୟ, କୃତିତ୍ୱ ପ୍ରଭୃତି ବହୁମୁଖୀ ପ୍ରତିଭାର ପରିଚୟ ଦିଏ । କିନ୍ତୁ ଆମ ଘରେ ସେ ସବୁଦିନେ ଲକ୍ଷୀବାବୁ ନାମରେ ସୁପରିଚିତ ଥିଲେ ।

ଆମ ଘରକୁ ଲକ୍ଷୀବାବୁ ବହୁତ ଥର ଆସନ୍ତି । ଯେବେ ଆସିଲେ ଦାଣ୍ଡ ଫାଟକ ପାଖରୁ ଡାକ ପକାନ୍ତି—"ବିରାଜ ! ବିରାଜ !" ଡାକ ଶୁଣି ଆମେ ସମସ୍ତେ ଫାଟକ ପାଖକୁ ଦୌଡ଼ିଯାଇ ତାଙ୍କ ହାତଧରି ପାଛୋଟି ଆଣୁ । ମୋ ବଡ଼ଭାଇ "ବିରାଜ" ତାଙ୍କ ସାଙ୍ଗରେ ବାଲେଶ୍ୱର ଜିଲା ସ୍କୁଲରେ ପାଠ ପଢ଼ୁଥିଲେ । ସେଥିପାଇଁ ଦୁହିଁଙ୍କ ଭିତରେ ଅଭେଦ ପ୍ରୀତି । ଲକ୍ଷୀବାବୁ ମୋଠାରୁ ବୟସରେ ବଡ଼ । ତାଙ୍କୁ "ବଡ଼"ର ସମ୍ମାନ ଦେଖାଉଥିଲି । ତାଙ୍କୁ "ଆପଣ" ସମ୍ବୋଧନ କରୁଥିଲି ।

ଲକ୍ଷୀବାବୁ ଆମଘରକୁ ଆସିଲେ କଥାର ସୁଅ ଛୁଟେ । ଭଲମନ୍ଦ ସବୁକଥା ପଡ଼େ । କିଛି ବାଦ ଯାଏ ନାହିଁ । ତାଙ୍କର ସବୁଠୁଁ ବଡ଼ କଥା—ସେ କ'ଣ କାଲି ରାତିରେ ଲେଖିଛନ୍ତି ତାକୁ ପଢ଼ି ଶୁଣାଇଦେବା । ଶ୍ୱାସ ଉଠିଲେ ସେ ରାତିରେ ଶୋଇପାରନ୍ତି ନାହିଁ । ବିଛଣାରେ ବସି ଯାହା ମନକୁ ଆସେ ଲେଖିପକାନ୍ତି ! କେତେବେଳେ ଇଂରାଜୀରେ ପଦ୍ୟରଚନା କରନ୍ତି, କେତେବେଳେ ଓଡ଼ିଆରେ ନୂତନ ଶୈଳୀରେ କବିତା ଲେଖନ୍ତି, ତା'ର କିଛି ଠିକ୍ ଠିକଣା ନ ଥାଏ । ଏହି କବିତା ଆମକୁ ସେ ପଢ଼ି ଶୁଣାଇ ଦିଅନ୍ତି । ପଚାରନ୍ତି "କିପରି ହୋଇଛି ?" ତାଙ୍କ କବିତାରେ ଦୋଷଗୁଣ ଯାହାଥାଉନା କାହିଁକି, ଗୋଟାଏ କଥା ଆମେ ଲକ୍ଷ୍ୟ କରୁ—ସେଗୁଡ଼ିକ ସ୍ୱତଃ ସ୍ଫୂର୍ତ୍ତି । ସେ ଭଲ ବଙ୍ଗଳା କବିତା ଲେଖି ପାରୁଥିଲେ । ତାଙ୍କ ରଚିତ "ହୃଦୟ ପୃଷ୍ପ" ତାହାର ନିଦର୍ଶନ । ଗଦ୍ୟ-ସାହିତ୍ୟରେ ବି ତାଙ୍କର ଦକ୍ଷତା କମ୍ ନ ଥିଲା । ଇଂରାଜୀରେ ସେ ଯେଉଁ "Hill Tribes of Jeypore" "Orissa in 1942—1944" ପୁସ୍ତକ ଦୁଇଟି ଲେଖିଛନ୍ତି, ସେଥିରେ ବହୁ ଐତିହାସିକ ତଥ୍ୟସମ୍ବଳିତ ସୂକ୍ଷ୍ମସାଠୀ ବିଷୟବସ୍ତୁ ରହିଅଛି । ତାଙ୍କ ପ୍ରଣୀତ ଶତାଧିକ ଓଡ଼ିଆ ପୁସ୍ତିକା ବ୍ୟାପକ ଦୃଷ୍ଟିର ପରିଚୟ ଦିଏ ।

ଲକ୍ଷୀବାବୁ ଆମ ଘରକୁ ଆସିଲେ ସାହିତ୍ୟ ଆଲୋଚନାରେ ଅଧିକାଂଶ ସମୟ କଟିଯାଏ । ତା'ପରେ ସେ କହନ୍ତି, ତାଙ୍କ ରାଜନୈତିକ ଅଭିଜ୍ଞତା କଥା । ପାର୍ଲାମେଣ୍ଟ୍ ସଭାର ଓ ରାଜ୍ୟ ବିଧାନସଭାର ସଭ୍ୟରୂପେ ସେ ତାଙ୍କର ବିବେକାନୁମୋଦିତ ସ୍ୱାଧୀନ ମତ ପ୍ରକାଶ କରିବାକୁ କେବେହେଁ ପଶ୍ଚାତ୍ପଦ ହେଉ ନ ଥିଲେ । ରାଜନୀତିକୁ ସେ ଜୁଆଖେଳ ସହିତ ତୁଳନା କରୁଥିଲେ । ରାଜନୀତି କ୍ଷେତ୍ରରେ ଅନେକ ଧୁରନ୍ଧର ଖେଳୱାଡ଼୍ ଚିତ୍‌ପଟାଙ୍ଗ୍ ମାରନ୍ତି । ଲକ୍ଷ୍ମୀ ବାବୁଙ୍କ ପରି ଅନାଡ଼ି ଖେଳାଳୀ ସେ କ୍ଷେତ୍ରରେ ତିଷ୍ଠିବା ସହଜ ନୁହେଁ । "ଆଲେ ସଖୀ ଆପଣା ମହତ ଆପେ ରଖି"—ଏହି ନୀତି ଅନୁସରଣ କରି ସେ ବେଳହୁଁ ରାଜନୀତିରୁ ଅପସରି ଯାଇଥିଲେ ।

କଥା କହୁଁ କହୁଁ ଖାଇବାର ସମୟ ହୋଇଯାଏ । ଲକ୍ଷୀ ବାବୁ ଖାଇବାରେ କୌଣସି ବାଛବିଚାର ରଖନ୍ତି ନାହିଁ । ଘୃତାନ୍ନ ଖାଇବାକୁ ଦେଲେ ଭଲ, ଶାକାନ୍ନ ଦେଲେ ବି ଆପତ୍ତି ନାହିଁ, ଯାହା ଦିଅ, ସେଥିରେ ତାଙ୍କର ପରମ ସନ୍ତୋଷ । ଆଉ ଗୋଟାଏ କଥା, ତାଙ୍କ ଥାଳିରେ ଯେତିକି ବଢ଼ା ହୋଇଥିବ, ସବୁ ପୋଛି ପାଛି ଖାଇଦେବେ, ଏ ଅନାଟନ ଯୁଗରେ ଖାଦ୍ୟସାମଗ୍ରୀର ଅପଚୟକୁ ସେ ମହାପାପ ମଣୁଥିଲେ ।

ଲକ୍ଷୀ ବାବୁଙ୍କ ବେଶଭୂଷା ଅତି ସାଧାରଣ । ଖଣ୍ଡିଏ ଧୋତି—ତାହା ପୁଣି ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥାଏ, ଦେହରେ ଗୋଟିଏ ଅଙ୍ଗରଖା, ନୋହିଲେ ଖଣ୍ଡିଏ ଚାଦର—କେବେ କେବେ ଉଭୟ । ହାତରେ ଖଣ୍ଡେ ଠେଙ୍ଗା, ଗୋଡ଼ରେ ହାଲ ଚପଲ । ଏହି ବେଶରେ ଲକ୍ଷୀ ବାବୁଙ୍କୁ ସମସ୍ତେ ଦେଖିଛନ୍ତି । ଘରେ ବାହାରେ, ସଭା ସମିତିରେ, ମଉଜ ମଜଲିସରେ, ସବୁଠି ଲକ୍ଷୀ ବାବୁଙ୍କର ଏହି ବେଶ । ଖିଆପିଆ ପିନ୍ଧାପିନ୍ଧି, ଚାଲିଚଳଣି କୌଣସିଥିରେ ତାଙ୍କର ଆଡ଼ମ୍ବର ଆଦୌ ନ ଥିଲା । କୁଟିଳତା ତାଙ୍କୁ ସ୍ପର୍ଶ କରି ନ ଥିଲା । ସେ

ସମସ୍ତଙ୍କ ସାଙ୍ଗରେ ମନ ଖୋଲି ହସହସ ମୁହଁରେ କଥାବାର୍ତ୍ତା କରୁଥିଲେ । ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତାର ସେ ପ୍ରତୀକ ଥିଲେ ।

୧୯୧୦ ଜୁଲାଇ ୧ ତାରିଖ—ଏହି ଦିନ ଲକ୍ଷ୍ମୀ ବାବୁଙ୍କ ସହିତ ମୋର ପ୍ରଥମ ପରିଚୟ । ବାଲେଶ୍ୱର ଜିଲ୍ଲା ସ୍କୁଲରୁ ମାଟ୍ରିକୁଲେଶନ୍ ପାଶ୍ କରି ରେଭେନ୍ସା କଲେଜରେ ଆଇ. ଏ. ପଢ଼ିବା ପାଇଁ ଏହି ଦିନ ମୁଁ କଟକ ଅଭିମୁଖେ ଯାତ୍ରା କଲି । ମୋର ଏହା ପ୍ରଥମ ବିଦେଶ ଯାତ୍ରା । ଲକ୍ଷ୍ମୀବାବୁ ସେତେବେଳେ କଟକର ମିଶନ୍ ହାଇସ୍କୁଲରେ ଶିକ୍ଷକ କାମ କରୁଥାନ୍ତି । ଗ୍ରୀଷ୍ମ ଛୁଟିରେ ଘରକୁ ଯାଇଥିଲେ । ଏହି ଦିନ ତାଙ୍କ କାର୍ଯ୍ୟକ୍ଷେତ୍ରକୁ ଆସୁଥାନ୍ତି । ମୋ ମା ମୋତେ ତାଙ୍କ ସାଙ୍ଗ ଧରାଇଦେଲେ । ଦୁହେଁ ରେଲଗାଡ଼ିରେ ଚଢ଼ି ଆସିଲୁଁ । ଲକ୍ଷ୍ମୀବାବୁ ବାଟଯାକ ମୋତେ ବହୁ ଆଶା, ଅଭିଳାଷ, ଉତ୍ସାହ ଓ ଆଶ୍ୱାସନାର ବାଣୀ ଶୁଣାଇଲେ । ତାଙ୍କ ସେବା ମନୋଭାବର ପ୍ରଥମ ଇଙ୍ଗିତ ମୁଁ ସେହିଦିନ ପାଇଥିଲି ।

"ଯାଦୃଶୀ ଭାବନା ଯସ୍ୟ, ସିଦ୍ଧିର୍ଭବତି ତାଦୃଶୀ"—ଲକ୍ଷ୍ମୀ ବାବୁଙ୍କ ମନରେ ଯେଉଁ ସେବା ମନୋଭାବ ପ୍ରଚ୍ଛନ୍ନ ରହିଥିଲା, ତାହା ହିଁ ତାଙ୍କୁ ଭାରତ ସେବକ ସମିତିର ଆଜୀବନ ସଭ୍ୟପଦରେ ଅଭିଷିକ୍ତ କରିଥିଲା । ସ୍କୁଲ ଚାକିରିର ସଂକୀର୍ଣ୍ଣ କ୍ଷେତ୍ର ପରିତ୍ୟାଗ କରି ସେ ସଂକଳ୍ପବଦ୍ଧ ହୋଇ ଭାରତବ୍ୟାପୀ ସାମାଜିକ ସେବାକାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଭ୍ରମଣପ୍ରିୟ ଲକ୍ଷ୍ମୀ ବାବୁଙ୍କୁ ଏହି କାର୍ଯ୍ୟରେ ଆକୁମାରୀ ହିମାଚଳ ଭ୍ରମଣ କରିବାର ସୁଯୋଗ ମିଳିଲା । ବନ୍ୟାପ୍ଲାବନ, ମହାମାରୀ-ପ୍ରପୀଡ଼ିତ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ସେବା କରି ସେ ପରମ ଆନନ୍ଦ ଲାଭ କରୁଥିଲେ । ତାଙ୍କ ଉଦ୍ୟମରେ ଭାରତସେବକ ସମିତିର ଗୋଟିଏ ଶାଖା ଓଡ଼ିଶାରେ ପ୍ରତିଷ୍ଠିତ ହୋଇଅଛି ।

ଲକ୍ଷ୍ମୀ ବାବୁଙ୍କର ଅର୍ଥଲାଳସା କେବେହେଁ ନ ଥିଲା । ଜୀବିକାନିର୍ବାହ ସକାଶେ ସେ ଭାରତ ସେବକ ସମିତିରୁ ଯତ୍‌କିଞ୍ଚିତ୍ ମାସିକ ଭତ୍ତା ପାଉଥିଲେ । ସେଥିରୁ ସେ କିୟଦଂଶ ଦରିଦ୍ର ଲୋକଙ୍କ ଅଭାବ ମୋଚନ କରିବା ପାଇଁ ବ୍ୟୟ କରୁଥିଲେ । ପରୋପକାର କରିବା ତାଙ୍କ ଜୀବନର ବ୍ରତ ଥିଲା । ତାଙ୍କପରି ନିଃସ୍ୱାର୍ଥ ସେବକ କୋଟିକରେ ଗୋଟିଏ ଦେଖାଯାନ୍ତି ।

ଲକ୍ଷ୍ମୀବାବୁ ମୋତେ ଅନେକ ସଦୁପଦେଶ ଦେଇଛନ୍ତି । ଲେଖା ଲେଖି କରିବାପାଇଁ ପ୍ରେରଣା ପ୍ରଥମେ ତାଙ୍କଠାରୁ ପାଇଥିଲି । ସେ କଟକରେ "ବୈତରଣୀ" ଓ ଓଡ଼ିଆରେ "ସହକାର" ମାସିକ ପତ୍ରିକା ଦୁଇଟିର ସମ୍ପାଦକ ଥିଲେ । ତାଙ୍କ ପତ୍ରିକା ପାଇଁ ପ୍ରବନ୍ଧ ପଠାଇବାକୁ ସେ ମୋତେ ଅନୁରୋଧ କରିଥିଲେ । ୧୯୪୪ ମସିହାରେ ମୁଁ ବାଲେଶ୍ୱର ଜିଲ୍ଲା ସ୍କୁଲର ହେଡ୍‌ମାଷ୍ଟର ଥିଲି । ସେହି ସମୟରେ "ଓଡ଼ିଶାରେ ପ୍ରାଇମେରୀ ଶିକ୍ଷାର ପ୍ରସାର" ଶୀର୍ଷକ ଗୋଟିଏ ପ୍ରବନ୍ଧ "ସହକାର" ପତ୍ରିକାରେ ପ୍ରକାଶ କରିବାପାଇଁ ଡାକଯୋଗେ ତାଙ୍କ ପାଖକୁ ପଠାଇଥିଲି । ସପ୍ତାହ ପରେ ଜଣେ ଭଦ୍ରଲୋକ ମୋ ପାଖରେ ଉପସ୍ଥିତ ହୋଇ କହିଲେ, "ଏ ଲେଖାଟି ଆପଣ ଲକ୍ଷ୍ମୀନାରାୟଣ ସାହୁଙ୍କ ନାମରେ ପଠାଇଥିଲେ । ଆପଣଙ୍କୁ ଫେରାଇ ଦେବାକୁ ଆସିଛି ।" ମୁଁ ଆଶ୍ଚର୍ଯ୍ୟ ହୋଇ କାରଣ ପଚାରିଲି । ଉତ୍ତର ପାଇଲି—"ଆପଣ ସରକାରୀ କର୍ମଚାରୀ । ତାଙ୍କ ସହିତ ସମ୍ପର୍କ ରକ୍ଷା-କରିବା ଉଚିତ ହେବ ନାହିଁ ।" ଏହା ଶୁଣି ମୁଁ ଅଧିକ ବିସ୍ମିତ ହେଲି । "ସେ ସରକାରଙ୍କ କୋପ ଦୃଷ୍ଟିରେ ପଡ଼ିଛନ୍ତି"—ଏତିକ କହି ଭଦ୍ରଲୋକ ଜଣକ ମୋଠାରୁ ବିଦାୟନେଇ ଚାଲିଗଲେ । ମୁଁ ଚିନ୍ତାକୁଳ ହୋଇ ଭାବିଲି—"ମୋ ପ୍ରବନ୍ଧରେ ଦୋଷାବହ ବା ଆପତ୍ତିଜନକ କିଛି ନାହିଁ । ତେବେ ଏ ଆକ୍ଷେପ କାହିଁକି ?" ପରେ ଅନୁସନ୍ଧାନ କରି ଜାଣିଲି ଯେ ସେହି ଭଦ୍ରଲୋକ ଗୋଇନ୍ଦା ବିଭାଗର ଜଣେ କର୍ମଚାରୀ ।

ଲକ୍ଷ୍ମୀବାବୁ ତାଙ୍କ ସ୍ୱାଧୀନମତ ନିର୍ଭୀକ ଭାବରେ ବ୍ୟକ୍ତ କରୁଥିଲେ । ତାଙ୍କ ମତ କେତେକ କ୍ଷେତ୍ରରେ ସରକାରଙ୍କ ମତ ସହିତ ଖାପ ଖାଉ ନ ଥିଲା । ହୀରାକୁଦ ବନ୍ଧ ନିର୍ମାଣର ଯୋଜନା ସେତେବେଳେ ଚୂଡ଼ାନ୍ତ ହେଲା, ସେତିକବେଳେ ଲକ୍ଷ୍ମୀବାବୁ ଏହାର ଦୃଢ଼ ବିରୋଧ କରିଥିଲେ । ଭାରତର ଜଣେ ବରିଷ୍ଠ ଇଞ୍ଜିନିୟରଙ୍କ ସହିତ ପରାମର୍ଶ କରି ଏହି ଯୋଜନାର ସଫଳତା ସମ୍ବନ୍ଧରେ ସେ ସନ୍ଦିହାନ ହୋଇଥିଲେ । ତାଙ୍କର ଯୋଜନାବିରୋଧୀ ଏହି ମତ ସେ ଖଣ୍ଡିଏ ପୁସ୍ତିକାରେ ପ୍ରକାଶିତ କରିଥିଲେ ।

ଜାତି ଅଜାତି ଭେଦଭାବ ଲକ୍ଷ୍ମୀବାବୁଙ୍କର ନ ଥିଲା । ସବୁ ଲୋକଙ୍କର ଆତ୍ମା ଅଛି । ପରମାତ୍ମାଙ୍କର ସତ୍ତା ପ୍ରତ୍ୟେକ ବ୍ୟକ୍ତିର ହୃଦୟରେ ବିଦ୍ୟମାନ । ତେବେ ଜାତି ଅଜାତି, ଛୁଆଁ ଅଛୁଆଁ—ଏ ଭେଦଭାବ କାହିଁକି ? ଲକ୍ଷ୍ମୀବାବୁଙ୍କ ଲିଖିତ ଗୋଟିଏ ପୁସ୍ତକରେ ତାଙ୍କ ନାମତଳେ ସେ ଲେଖିଛନ୍ତି—"ଜାତିରେ ପାଣ" । ଏହା ତାଙ୍କ ଉଦାର ମନୋଭାବର ପରିଚୟ ଦିଏ । ସେ ପାହାଡ଼ିଆ ଜାତିର ଲୋକଙ୍କ ଗହଣରେ ବହୁକାଳ ଅତିବାହିତ କରିଥିଲେ । ସେମାନଙ୍କ ଗୀତନୀତି, ଆଚାରବ୍ୟବହାର ଓ ସାମାଜିକ ପ୍ରଥା ଅନୁଧ୍ୟାନ କରିଥିଲେ । ତାଙ୍କ ଅଭିଜ୍ଞତା-ଲବ୍ଧ ଜ୍ଞାନ ସେ "Hill Tribes of

Jeypore" ନାମକ ପୁସ୍ତକରେ ଲିପିବଦ୍ଧ କରି ଯାଇଛନ୍ତି ।

ଲକ୍ଷ୍ମୀବାବୁଙ୍କ ସହିତ ମୋର ଶେଷଦେଖା ୧୯୬୬ ଡିସେମ୍ବର ୨୪ ତାରିଖରେ ହୋଇଥିଲା । ସେ ଦିନ ସେ ଆମ ଘରକୁ ଆସିଥିଲେ । ଆମ ଘରେ ଖିଆପିଆ କଲେ । କଥା-ବାର୍ତ୍ତାରେ ସାରା ଦ୍ୱିପହର କଟିଗଲା । ସନ୍ଧ୍ୟାବେଳକୁ ସେ ଆମଘରୁ ବିଦାୟ ନେଇଗଲେ । କିଏ ଜାଣିଥିଲା ଏହା ହିଁ ତାଙ୍କର ଅନ୍ତିମ ବିଦାୟ ହେବ ? କିଛିଦିନ ପରେ ସେ ଗୁରୁତର ଶ୍ୱାସପୀଡ଼ାରେ ପୀଡ଼ିତ ହେଲେ । ଚିକିତ୍ସା ସକାଶେ ଆତ୍ମୀୟସ୍ୱଜନମାନେ ତାଙ୍କୁ ହାସପାତାଲକୁ ନେଇଗଲେ । ସେଠାରେ ସେ ରହିବାକୁ ଅନିଚ୍ଛା ପ୍ରକାଶ କଲେ । ସମ୍ଭବତଃ ମୃତ୍ୟୁର ଆହ୍ୱାନ ପାଇଁ ସେ ସ୍ୱଗୃହକୁ ଲେଉଟି ଆସିଲେ । ବିଧିର ବିଧାନ କେ କରିବ ଆନ ? ଶେଷରେ ୧୯୬୭ ଜାନୁଆରୀ ୧୮ ତାରିଖ ଶୁକ୍ରବାର ସକାଳେ ସେ ମରଶରୀର ତ୍ୟାଗକରି ଅମର ଧାମକୁ ଚାଲିଗଲେ । ଏହି ଦାରୁଣ ଦୁଃସମ୍ବାଦ ବାଲେଶ୍ୱରନିବାସୀ ଶ୍ରୀଯୁକ୍ତ ଶିବନାରାୟଣ ନନ୍ଦୀ ମୋତେ କଟକ ହାସପାତାଲର ଜୟପୁର କେବିନରେ ଦେଲେ । ସେତେବେଳେ ମୁଁ ପୀଡ଼ିତ ହୋଇ ସେଠାରେ ଚିକିତ୍ସାଧୀନ ଥିଲି । ଲକ୍ଷ୍ମୀବାବୁଙ୍କ ବିୟୋଗବାର୍ତ୍ତା ମୋତେ ରୋଗଶଯ୍ୟାରେ ବ୍ୟଥିତ କରିଥିଲା । "ସବୁ ଚାଲିବେ ଢାଳିବଳେ, ଯଶ ରହିବ ମହୀତଳେ"—ଏହି ଆପ୍ତ ବଚନ ସ୍ମରଣକରି ମୁଁ ଆଶ୍ୱାସନା ଲାଭ କଲି । ଲକ୍ଷ୍ମୀବାବୁ ଚାଲିଗଲେ, କିନ୍ତୁ ତାଙ୍କ କଥା ସବୁ-ବେଳେ ମନେ ପଡ଼େ ।

ତୁମରି ଆଶୀର୍ବାଦ ଏବେ ଗୋ
ପଥର କେହି ଫିଙ୍ଗିଲେ ମୋତେ
ହୋଇଯିବ ସେ ଫୁଲର ହାର
କ୍ରୋଧରେ କେହି ଅଗ୍ନି ବର୍ଷିଲେ
କୁଙ୍କୁମଲେପ ହୋଇବ ମୋହର ହୃଦରେ ।

—ଲକ୍ଷ୍ମୀନାରାୟଣ

# ସହ-ଷତରକ ସାହୁଜୀ

## ଡକ୍ଟର ମାୟାଧର ମାନସିଂହ

**ଯେଉଁମାନଙ୍କ ଜୀବନ** ସର୍ବସାଧାରଣ ସଂପତ୍ତି ହେବାରେ ସାର୍ଥକତା ପାଇଥାଏ, ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ସେହିମାନଙ୍କ ଭିତରୁ ଜଣେ । ଏକାଗ୍ରତାର ଅଭାବରୁ ଯେ ଜୀବନ ସ୍ଥାୟୀ ସିଦ୍ଧି କିଛି ରଖି ଯାଇପାରିଲା ନାହିଁ; ବହୁ ଲକ୍ଷ୍ୟ ହୋଇ କୌଣସି ହେଲେ ଲକ୍ଷ ରେ ହୁଏତ ପହଞ୍ଚି ପାରିଲା ନାହିଁ; କିନ୍ତୁ ତାଙ୍କ ଜୀବନର ପରମତମ ସାର୍ଥକତା ଏହି ଯେ, ବହୁ ଅନ୍ୟଙ୍କୁ ଲକ୍ଷ୍ୟସ୍ଥଳରେ ପହଞ୍ଚି ଯିବାକୁ ଓ ସିଦ୍ଧି ଲାଭ କରିବାକୁ ସେ ଜୀବନ ଦୁର୍ଲଭ ସହାୟତା ଦେଇ ପାରିଛି । ଏହି ବହୁ କୃତଜ୍ଞତାର ଗାଥା, ବହୁ ସହଯୋଗର କାହାଣୀ ହିଁ ଭାରତସେବକ ବା ମାନବସେବକ ଲକ୍ଷ୍ମୀନାରାୟଣ ସାହୁ । ସେହି ତାଙ୍କର ଜୀବନ ଚରିତ ।

ଆମ ପୁରୁଷଟି ଦେଶ ଓ ଜାତି ସଂପର୍କରେ ଓ ସେହି ପରିପ୍ରେକ୍ଷିତରେ ନିଜକୁ କିପରି ଗଢ଼ିବାକୁ ହେବ, ସେ ସମ୍ବନ୍ଧରେ ସଚେତନ ହୋଇ ଆସିଲାବେଳକୁ, ଓଡ଼ିଶାରେ ଏଥିପାଇଁ ଏକମାତ୍ର ନିର୍ଭରଯୋଗ୍ୟ ଅନୁଷ୍ଠାନ ସତ୍ୟବାଦୀ ସ୍କୁଲଟି ଲୋପ ପାଇଗଲା । ମିଃ ଦାସ ଏକ ଲିଜେଣ୍ଡ (କାହାଣୀ) ହୋଇ ଲୋକଲୋଚନ ଅଗୋଚରରେ ରହିଥାନ୍ତି ଏବଂ ଗୋପବନ୍ଧୁ ଏବଂ ତାଙ୍କର ସହକର୍ମୀ ଓ ଅନୁଗାମୀଗଣ ଜେଲ ବା ଅସହଯୋଗର ନୂତନ ସଂସାରରେ ବିଚରଣ କରୁଥାନ୍ତି । ତେଣୁ ଆମ ପୁରୁଷର କ୍ଷିପ୍ର ବର୍ଦ୍ଧିଷ୍ଣୁ ତରୁଣ ବୁଦ୍ଧିଜୀବୀ ସଂପ୍ରଦାୟଟି ବୌଦ୍ଧିକ ପ୍ରେରଣା ଦିଗରୁ ଏକପ୍ରକାର ବାପ ମା ଛେଉଣ୍ଡ ହୋଇ ବଢ଼ିଲି କହିଲେ ଚଳେ ।

କିନ୍ତୁ ଆଜିକୁ ଯୋଉ ପୁଣି ଜମାଇ ସେତେବେଳେ ଜଣେ ମାତ୍ର ଜନସେବୀ ଓଡ଼ିଶାରେ ବୁଲୁଥାନ୍ତି ।

ତାଙ୍କର ନାମ ଲକ୍ଷ୍ମୀନାରାୟଣ ସାହୁ ।

ଏବେ ପ୍ରତି ମାଇନର ସ୍କୁଲରେ ଛାତ୍ରସଂଘ ଓ ସେଥିରେ ପୁଣି କଂଗ୍ରେସ, ପ୍ରଜା-ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ପ୍ରଭୃତି ନାନା ଦଳ, ଗୋଷ୍ଠୀର ଅଦ୍ଭୁତ ଦଳାଦଳିର ପ୍ରତିବିମ୍ବ ଦେଖାଯାଉଛି । ଯା' ଫଳରେ ପିଲାବେଳୁ ଆମେ ଆଗାମୀ ପୁରୁଷର ବ୍ୟକ୍ତିତ୍ୱଗୁଡ଼ିକୁ କିପରି ଛିନ୍ନଭିନ୍ନ, କୁରୂପିତା କରି ବ୍ୟକ୍ତିଙ୍କୁ ଓ ... ସାଂଘାତିକ ଭାବରେ ମାରାତ୍ମକ ଏହି ତଥାକଥିତ ରାଜନୀତି (ପ୍ରକୃତରେ ନେତୃନୀତି) ତାହା ପ୍ରତି ତ କାହାର ଦୃଷ୍ଟି ଯାଇଥିଲା ନାହିଁ । ନାସନାଲ ଇଣ୍ଟିଗ୍ରେସନ୍ ଚିତ୍କାର କଲେ ଆସିବ କୁଆଡ଼ୁ ? ଆମେ ତ ଗଢ଼ା ହେଲା ବେଳୁ ପିଲାଙ୍କୁ ଶିଖାଇଲୁ ଖଣ୍ଡ ଖଣ୍ଡ ରହିବାକୁ । ସେମାନେ ସମଗ୍ର ଜାତିକୁ ଏକକ ଭାବରେ ଦେଖିବାକୁ ଶିଖିବାର ଅବସର ବା ଅବକାଶ ପାଇଲେ କାହିଁ ? ସମାଜରେ, ଶାସନରେ ନା ସ୍କୁଲ-କଲେଜରେ ?

ଆମ ପିଲାବେଳ ଏପରି ଦୁର୍ଦ୍ଦଶାଗ୍ରସ୍ତ ନ ଥିଲା । ଆମେ ପରାଧୀନ ଥିଲୁ, ଅସହଯୋଗରେ ନ ମିଶି ପାରି ତୁଚ୍ଛ ଓ ଅପାଂକ୍ତେୟ ମଧ୍ୟ ଥିଲୁ । କିନ୍ତୁ ଆମ ଚିତ୍ତରାଜ୍ୟର ସିଂହାସନ ମାତ୍ର ବସିଥିଲା, କୌଣସି ପାର୍ଟି ବା ଗୋଷ୍ଠୀ ନୁହେଁ— ତାହା ସମଗ୍ର ଭାବରେ ଅଧିକୃତ ହୋଇଥିଲା ଦେଶ ଓ ଜାତିର ଅଖଣ୍ଡ, ଏକକ ବ୍ୟକ୍ତିତ୍ୱ ଦ୍ୱାରା ।

ଏବଂ ଏଇ ଭାବଟା ବଂଚାଇ ରଖିବାରେ ଶ୍ରୀ ସାହୁଙ୍କ ସଂସ୍ପର୍ଶ ବହୁ ସାହାଯ୍ୟ କରିଥିଲା । ସାହୁଜୀ ଥିଲେ ଆମ ପାଖରେ ପ୍ରଥମ ଓଡ଼ିଆ, ଯେ ସମଗ୍ର ଭାରତ ବୁଲିଥିଲେ ଓ ଭାରତୀୟ ଜନତାକୁ ନିଜର ଲୋକ ପରି ଭାବୁଥିଲେ ପୁଣି ସେହି ସାହୁ ମଧ୍ୟ ଥିଲେ ଉଗ୍ର ଓଡ଼ିଆ । ଓଡ଼ିଶାର ସଂସ୍କୃତିର ଏପରି କୌଣସି ଅଂଶ ନ ଥିଲା ଯେଉଁଥିରେ ସାହୁଙ୍କ ଆଗ୍ରହ ନ ଥିଲେ । ସାହୁଙ୍କ ପ୍ରାକୃତିକ ଓଡ଼ିଶାକୁ ମଧ୍ୟ ଉତ୍ତମ ରୂପେ ଜାଣିଥିଲେ । କିନ୍ତୁ ଆମ ନିକଟରେ ସାହୁଜୀଙ୍କର ସଂସ୍ପର୍ଶ ମୂଲ୍ୟବାନ ଥିଲା ଏହି କାରଣରୁ ଯେ, ସେ ଆମର ସେକାଳର ଛାତ୍ରସମାଜ ନିକଟରେ ଏକମାତ୍ର ଲୋକ ଯେ କି ତିଳକ, ଗୋଖଲେ, ମୋତିଲାଲ, ଲଜପତଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଆମ ଆଗରେ କହି ଆମକୁ ମନ୍ତ୍ରମୁଗ୍ଧ କରି ରଖି ପାରୁଥିଲେ କେବଳ ନୁହେଁ, ତା ସାଥେ ସାଥେ ସେତେବେଳେ ଅବାଂଛନୀୟ ବୋଧ ହେଲେହେଁ ଅତ୍ୟନ୍ତ ଉଚିତ ଓ କଲ୍ୟାଣଜନକ କୌତୂହଳ ଦେଖାଉଥିଲେ, ଆମ ଭିତରୁ ଇଂରେଜୀ ବା ସଂସ୍କୃତ କିଏ ଭଲ ଲେଖି ପାରୁଛି ବା କହି ପାରୁଛି ତାହା ବରାବର ଖୋଜ ନେବାରେ ।

ସାହୁଜୀ ସ୍କୁଲମାଷ୍ଟର ହୋଇ ଜୀବନ ଆରମ୍ଭ କରିଥିଲେ । ଆମେ ଜାଣିଲାବେଳକୁ ସେ ସମଗ୍ର ଓଡ଼ିଶାର ଛାତ୍ରସମାଜର ଅନଭିଷିକ୍ତ ଉପଦେଷ୍ଟା । ସାହୁଜୀ, ହଷ୍ଟେଲ୍‌ରେ କୌଣସି ରୁମ୍‌ରେ ପଶିଗଲେଇ ହୋଇ ଉଠେଲା ଏକ ଶ୍ଳୋକାନ୍ତ ପ୍ରତିଯୋଗିତା ବା ଇଂରେଜୀ ଡିବେଟ୍ ବା କବିତା କମ୍ପିଟିସନ୍ । ଓଡ଼ିଶାର

କୌଣସି ହେଲେ ନେତା, ଛାତ୍ରସମାଜକୁ ଏପରି ଚାହିଁ ନାହାନ୍ତି କି ଏପରି ଅନାବିଳ ବୌଦ୍ଧିକ ସଂପର୍କ ଦେଇ ପାରି ନାହାନ୍ତି, ଯେପରି ଚାହିଁଥିଲେ ବା ଦେଇ ପାରିଥିଲେ ଲକ୍ଷ୍ମୀନାରାୟଣ ସାହୁ। ଓଡ଼ିଶାର ଚାରିଆଡ଼ର ଶତ ଶତ ଛାତ୍ରଙ୍କୁ ସାହୁଜୀ ବ୍ୟକ୍ତିଗତ ଭାବରେ ଜାଣିଥିଲେ ଓ ବହୁଙ୍କୁ ସେ ନିଜ ନିଜ ଜୀବନ ଗଢ଼ିବାରେ ସାହାଯ୍ୟ କରିଯାଇଛନ୍ତି।

ଶ୍ରୀ ସାହୁଙ୍କ ସହିତ ମୋର ପ୍ରଥମ ପରିଚୟ ଘଟେ ଏପରି ଏକ ଛାତ୍ର ସମ୍ମିଳନୀରେ, ପୁରୀରେ।

ସେତେବେଳେ ସମଗ୍ର ପୁରୀ ଜିଲ୍ଲାରେ ମାତ୍ର ଦୁଇଟି ହାଇ-ସ୍କୁଲ ଥିଲା। ସରକାରୀ ପୁରୀଜିଲ୍ଲାସ୍କୁଲ ଓ ବେସରକାରୀ ଖୋର୍ଦ୍ଧା ହାଇସ୍କୁଲ। ସତ୍ୟବାଦୀ ସ୍କୁଲଟି ବୁଦ୍‌ବୁଦ୍ ପରି ଉଠି ପୁଣି ସେତେବେଳକୁ ଉଭେଇ ଗଲାଣି। ଛନ୍ନଛଡ଼ା ସେହି ଅନୁଷ୍ଠାନର ଅନେକ ଛାତ୍ର ଆମ ସାଥିରେ ଖୋର୍ଦ୍ଧାରେ ଆସି ପାଠର ଛିଣ୍ଡାସୂତାକୁ ଗଣ୍ଠେଇଗାଣ୍ଠେଇ ଲମ୍ବେଇ ରଖିବାକୁ ଚେଷ୍ଟା କରୁଥିଲେ।

ଖୋର୍ଦ୍ଧାସ୍କୁଲର ପ୍ରତିନିଧି ଭାବରେ ଅନ୍ୟ କେତେକ ପିଲାଙ୍କ ସାଥିରେ ମୁଁ ସାହୁଜୀଙ୍କ ସଂଗଠିତ ପୁରୀରେ ବସୁଥିବା ନିଖିଳ ଉତ୍କଳ ଛାତ୍ରସମ୍ମିଳନୀରେ ଯୋଗ ଦେବାକୁ ଯାଇଥିଲି। ସଭାପତି ବୋଧହୁଏ ଥିଲେ ବଙ୍ଗଳାର ଦେବ ପ୍ରସାଦ ସର୍ବାଧିକାରୀ।

ସେହି ସମ୍ମିଳନୀରେ ପ୍ରବନ୍ଧ ବା ବକ୍ତୃତା ପ୍ରତିଯୋଗିତାରେ କୌଣସି ପୁରସ୍କାର ପାଇବାକୁ ସାହୁଜୀ ମତେ ଭଲ କରି ଚାହିଁଲେ। କହି ରଖେ ଯେ ସେହି ସମ୍ମିଳନୀର ବକ୍ତୃତା ପ୍ରତିଯୋଗିତା ଭିତରେ ହିଁ ଭାରତସେବକ-ସମିତିର ଅନ୍ୟତମ ସଭ୍ୟ ଓ ମୋର ପିଲାବେଳର ବନ୍ଧୁ ଶ୍ରୀ ଶ୍ୟାମସୁନ୍ଦର ମିଶ୍ରଙ୍କୁ ମୁଁ ପ୍ରଥମ କରି ସେଇଠି ଦେଖିବାକୁ ପାଇଥିଲି।

କେବେହେଲେ ସ୍ୱପ୍ନରେ ଭାବି ନ ଥିଲି ଯେ ମୁଁ ଜୀବନରେ କଲେଜ ମାଡ଼ିବି। କାରଣ ଅଙ୍କରେ ଅସାଧାରଣ ଦୁର୍ବଳତା ଯୋଗୁଁ ଧରି ନେଇଥିଲି ଯେ ମୁଁ ହୁଏତ ମାଟ୍ରିକୁଲେସନ୍ ପରୀକ୍ଷାରେ ଫେଲ୍ ହେବି ବା ପାଶ୍ କଲେ କୌଣସିମତେ ତୃତୀୟ ଶ୍ରେଣୀରେ ଓହ୍ଲାଇ ପାଶ୍ କରିବି। ଯେଉଁ ଅବସ୍ଥାରୁ ସେକାଳର ରାଜାଡ଼ମ୍ବରମୟ ରେଭେନ୍‌ସାକୁ ଆସିବାର କଳ୍ପନା କେବଳ ପାଗଳ କରିପାରେ। କିନ୍ତୁ ଶେଷରେ ବାଧ୍ୟ ହେଲି କଲେଜରେ ଯୋଗ ଦେବାପାଇଁ। କାରଣ ଫେଲ୍ ନ ହୋଇ ବୃତ୍ତି ପାଇ ପାଶ୍ କଲି, ଅକଳ୍ପନୀୟ ଭାବରେ। ଆସିଲି କଟକ ନଗର। ବୃତ୍ତି ମିଳିବ ଯାଇ ୩।୪ ମାସ ପରେ। ନାମ ଲେଖା ହେବା ପାଇଁ ଯେତିକି ଅର୍ଥ ଦରକାର, ସେତିକି ବି ପକେଟରେ ନାହିଁ। କ'ଣ କରେ? ଆସି' ପୁଣି କ'ଣ ଗାଁକୁ ଫେରିଯିବି?

ସେତେବେଳେ ସମଗ୍ର କଟକ ନଗରରେ ଜଣେ ମାତ୍ର ଲୋକଙ୍କୁ ମୁଁ ଜାଣିଥାଏ।

ତାଙ୍କ ନାମ ଲକ୍ଷ୍ମୀନାରାୟଣ ସାହୁ—ଉତ୍କଳର ଛାତ୍ର ସମାଜର ସେତେବେଳର ପରମତମ ମିତ୍ର ଓ ସହାୟକ।

ଶେଷ ଚେଷ୍ଟା ଭାବରେ ଦିନେ ବାଟ ପଚାରି ପଚାରି ରେଭେନ୍‌ସାରୁ ଚାଲି ଚାଲି ଇଦ୍‌ଗା ପଡ଼ିଆରେ ପହଞ୍ଚିଲି। ସାହୁଜୀ ଥିଲେ। ମତେ ଦେଖି ଓ ବୃତ୍ତି ପାଇଛି ଜାଣି (ସେ ଆଗରୁ ଜାଣି ମନେ ରଖିଥିଲେ) ଭାରି ଖୁସୀ ହେଲେ। ମନେ ହେଉଛି ଜଳଖିଆ ପ୍ରଭୃତି ବି ଦେଲେ। ତା' ପରେ ତାଙ୍କ ଘରୁ ବାହାରି ଟାଉନ୍ ଆଡ଼କୁ ଆସିଲୁ। କିନ୍ତୁ ଯେଉଁଥିପାଇଁ ଏତେ ବାଟ ଯାଇଥିଲି, ତା ଆଉ ମୁହଁ ଫିଟାଇ କହି ପାରୁ ନଥାଏ।

ସାହୁଜୀ ମୋ କାନ୍ଧରେ ହାତ ପକାଇ ଗପ କରି କରି ଚାଲିଥାନ୍ତି। ଆମେ ଆସି ସେଲ୍‌ଟର ସ୍କୁଲ ପାଖ ହେଲା ବେଳକୁ ସେ ନିଜେ କଥା ପ୍ରସଙ୍ଗରେ ପଚାରିଲେ—'ନାଁ ଲେଖାଇଲଣି ନା?

ମୁଁ ଥରି କହିଲି 'ନା!'

ସେ କହିଲେ—କାହିଁକି? ଟଂକା ନାହିଁ?

ମୁଁ ପୁଣି ଥରି କହିଲି—ନାହିଁ।

ସେ ବିସ୍ମିତ ହୋଇ କହିଲେ—ଓଃ ସେଇଥି ପାଇଁ ଆସିଥିଲ? ମତେ ଏଯାଏଁ ନ କହୁଛ କାହିଁକି? ଆସ ତାହାହେଲେ ଘରକୁ ଫେରିଯିବା। ମୁଁ ତମକୁ ଟଂକା ଦେଇ ଦେଉଛି।

ପୁଣି ସାହୁଙ୍କ ଘରକୁ ଫେରିଲୁ। ଆଜି ହୁଏତ କେହି ବିଶ୍ୱାସ କରିପାରିବେ ନାହିଁ ଯେ, ସେଦିନ ସାହୁଙ୍କଠାରୁ ସେହି ପଚିଶିଟି ମୁଦ୍ରାର ସାହାଯ୍ୟ ନ ପାଇଥିଲେ, ହୁଏତ ଏ ଲୋକର ଉଚ୍ଚଶିକ୍ଷାର ପ୍ରାରବ୍ଧମାତ୍ର ଅଧ୍ୟାୟଟି ସେଇଠି ହିଁ ଶେଷ ହୋଇଥାନ୍ତା।

ବୃତ୍ତି ପାଇଲି ପରେ ସାହୁଜୀଙ୍କୁ ତାଙ୍କ ଟଙ୍କା ଫେରାଇ ଦେଲି। କିନ୍ତୁ ସେଦିନ ତାଙ୍କର ସାହାଯ୍ୟର ମୂଲ୍ୟ ତ ପଚିଶି ଟଂକା ମାତ୍ର ନୁହେଁ। ତାର ମୂଲ୍ୟ ମୋର ସାରା ଜୀବନବ୍ୟାପୀ ତାଙ୍କ ନିକଟରେ କୃତଜ୍ଞତା। ଆଜି ସାହୁଜୀଙ୍କ ସ୍ମୃତି-ଦିବସରେ ସେହି କୃତଜ୍ଞତା ସର୍ବଜନସମକ୍ଷରେ ପ୍ରକାଶ କରି ମୁଁ କିଂଚିତ୍ ଋଣ-ମୁକ୍ତ ବୋଧ କରୁଛି।

ଏହା ପରେ ସମଗ୍ର ଛାତ୍ରାବସ୍ଥାରେ ସାହୁଜୀ ମୋ ପ୍ରତି ସଶ୍ରଦ୍ଧ ସସ୍ନେହ ବ୍ୟବହାର ଦେଖାଇ ମୋତେ ବିଶେଷ ଗୌରବାନ୍ୱିତ କରିଥିଲେ। ରେଭେନ୍‌ସାର ପଶ୍ଚିମଛାତ୍ରାବାସକୁ ଆସିଲେ ସେ

ବରାବର ମୋରଭି ଅତିଥି ହେଉଥିଲେ । ବି.ଏ. ପଢ଼ିଲାବେଳକୁ ତାଂକଠି ଦୁରାରୋଗ୍ୟ ସଂକ୍ରାମକ ବ୍ୟାଧି ଦେଖାଗଲା । ସାହୁଜୀ ମୃତ୍ୟୁ ପାଏ ସେହି ବ୍ୟାଧିର ଚିହ୍ନମାନ ନିର୍ବିକାର ଭାବରେ ବହନ କରି ପୂର୍ବପରି ଅସଂକୋଚ ଭାବରେ ମିଳାମିଶା କରୁଥାନ୍ତି । ବୋଧହୁଏ ସହି ବିଚରଣ ଓ ଗ୍ରହଣ ସାହୁଜୀଂକର ଦ୍ୱିତୀୟ ପ୍ରକୃତି ହୋଇ ଉଠିଥିଲା । ଏବେ ସାହୁଜୀ ଆସିଲେ, ତାଂକ ସହିତ ପୂର୍ବ ପରି ଏକ ଥାଳିରେ ମୁଁ ଜଳଖିଆ ଖାଉଥିଲି । କିନ୍ତୁ ଥରେ ଅତିଥି ସେ ମୋର ଅତିଥି ହୋଇ ହଟାଳଗରେ ଅନ୍ନଭୋଜନ ମଧ୍ୟ କଲେ । ବର୍ତ୍ତମାନ ବ୍ୟବହୃତ ଥାଳି ସାଧାରଣ ମେସ୍‌ର ଥିବାରୁ ସାଂଗପିଲେ ଆପତ୍ତି କରିବାକୁ ଲାଗିଲେ ଓ ମତେ କହିଲେ ସାହୁଜୀଂକୁ ମଧ୍ୟ ଆସିବାକୁ ମନା କରିବାକୁ । ମୁଁ ଉତ୍ତର ଦେଲି—"ମୁଁ ତା କରିପାରିବି ନାହିଁ । ତମର ଅବଶ୍ୟକତା ଥିଲେ ତମେ କହ ।"

କଥା ଓ୍ୱାର୍ଡେନ୍ ପଣ୍ଡିତସାହେବଙ୍କ କାନକୁ ଗଲା । ସେ ପିଲାଂକ ଆପତ୍ତି ଯଥାର୍ଥ ମନେ କଲେ ଓ ଥରେ ଉଦୁଉଦିଆ ଟଗିବେଳଟାରେ ସାହୁଜୀ ମୋ.ର ଅତିଥି ହୋଇ ଖାଇବାକୁ ଯିବାବେଳେ, ପିଲାଙ୍କ ଦୃଷ୍ଟିଗୋଚର ଗାମ୍ଭୀର୍ଯ୍ୟ ଭାବରେ ତାଂକୁ ବାରଣ କଲେ । ମୂଳରୁ ଶେଷଯାଏ ମୁଁ କେବଳ ନୀରବ ଓ ସ୍ତମ୍ଭୀଭୂତ ହୋଇ ରହିଥାଏ । ଶେଷରେ ବରେଣ୍ୟ ସାହୁଜୀ ଏହା କହି ମୋଠାରୁ ବିଦାୟ ନେଇ ଥିଲେ— 'ମାୟାଧର, ଦୁଃଖ କରିବ ନାହିଁ । ଦୋଷ ମୋର । ମୁଁ ବିଦାୟ ନେଉଛି ।'

ଏ କରୁଣ ଅଭିଜ୍ଞତା ମୋ ସ୍ମୃତିରେ ଏପର୍ଯ୍ୟନ୍ତ ଜୀବନ୍ତ ରହିଛି । ଏବେ ଜଣାପଡ଼ୁଛି ଯେ ସେ ରୋଗ ଯେପରି ସଂକ୍ରାମକ ଓ ଦୁରାରୋଗ୍ୟ ବୋଲି ଲୋକରେ ବିଶ୍ୱାସ ହେଉଥିଲା, ତାହା ଆଦୌ ନୁହେଁ । ଡକ୍ଟର ଆଇଜାକ୍ ସାନ୍ତ୍ରାଙ୍କ ଚିକିତ୍ସାରେ ସାହୁଜୀ ସଂପୂର୍ଣ୍ଣ ରୋଗମୁକ୍ତ ହୋଇ ଯାଇଥିଲେ । ପରେ ଡକ୍ଟର ସାନ୍ତ୍ରାଙ୍କ ସହିତ ସମ୍ବଲପୁରରେ ଘନିଷ୍ଠ ପରିଚୟ ହେଲା । ବକ୍ଷ୍ୟମାଣ ସମୟରେ ସାନ୍ତ୍ରା ଥିଲେ ଦକ୍ଷିଣ ଭାରତରେ ଭେଲୋର ସହରରେ । ସାନ୍ତ୍ରା କହୁଥିଲେ, ସାହୁଜୀଙ୍କୁ ସେ ଏକୋଇରେ ଝିଟକୁ-ଟେ-ଲଗାଇ ଶୁଆ ବସା କରି ଚିକିତ୍ସା କରାଉଥିଲେ ।

ଓଡ଼ିଆମାନଙ୍କର କୃପମଣ୍ଡୁକତାର ଦୃଷ୍ଟାନ୍ତ ସ୍ୱରୂପ ସାହୁଜୀ କିନ୍ତୁ ଅନେକ ଥର ଆମକୁ କହୁଥିଲେ—ମୋ ବ୍ୟାଧି ନେଇ ତ ଏତେ ଲୋକ ସଚେତନ । ମୁଁ ଭେଲୋରରେ ରହି ଆସିଲି ଏତେ ମାସ । ଜଣେ ହେଲେ ତ ଓଡ଼ିଆ ଗ୍ରାଜୁଏଟ ପଗ୍ଗରୁନ, ମୁଁ ଭେଲୋରରେ କଣ ଦେଖି ଆସିଲି ।

ଭେଲୋରରେ ଅଭିଜ୍ଞତା ଯୋଗ ସାହୁଜୀ ଚଉଦ୍ୱାରରେ କୁଷ୍ଠଚିକିତ୍ସାଳୟ ଖୋଲି ଦେଇଥିଲେ । କଲେଜର ଛାତ୍ର ଥିଲାବେଳେଇ ମୁଁ ତାଙ୍କ ସାଥିରେ ଚଉଦ୍ୱାର ଯାଇ ତାଙ୍କର କୁଷ୍ଠଚିକିତ୍ସା ଦେଖିଥିଲି । ସେ ନିଜେ ରୋଗୀମାନଙ୍କୁ ଇଂଜେକ୍‌ସନ୍ ଦେଉଥିଲେ ଓ ରୋଗୀ ନିଜେ ନିଜେ ଇଂଜେକ୍‌ସନ୍ କିପରି ନେଇପାରିବେ ତାହା ମଧ୍ୟ ବତାଇ ଦେଉଥିଲେ । ଏହା ସାନ୍ତ୍ରାଙ୍କ ପଦ୍ଧତି । ସାହୁଜୀଙ୍କ ଚିକିତ୍ସାରେ ହିଁ ଚଉଦ୍ୱାରଠାରେ ସମ୍ପୂର୍ଣ୍ଣ ଆରୋଗ୍ୟପ୍ରାପ୍ତ ଲୋକ ମୁଁ ଦେଖିଥିଲି ।

ଏଇପରି କେତେ ଜୀବନର କେତେ ବିପଦ, କେତେ ସଙ୍କଟ ବେଳେ ସାହୁଜୀ ଦେଖାଦେଇ ଅତି ଆବଶ୍ୟକ ସହି ସାହାଯ୍ୟ ସହାନୁଭୂତି ବିତରଣ କରିଯାଇଛନ୍ତି, କିଏ ତାର ତାଲିକା କରି ପାରିବ ? କେହି ବିଶ୍ୱାସ କରିବେକି, କହିଲେ, ଯେ ଯୁଦ୍ଧର ଭବାନୀପାଟଣାରେ ମୋର ପ୍ରଥମ ସନ୍ତାନର ଜନ୍ମ ହେଲାବେଳକୁ, ମୁଁ ଯେତେବେଳେ ବାହାର ବାରଣ୍ଡାରେ ବସି ମାତା ଓ ସନ୍ତାନର ନାନା କଳ୍ପିତ ବିପଦରେ ଗ୍ରୋତୁଦ୍ୟମାନ, ସେତେବେଳେ ସାହୁଜୀ ସ୍ଥାନୀୟ ଡାକ୍ତରଙ୍କ ସହିତ, ପ୍ରସୂତିର ଧାତ୍ରୀ କାମରେ ନିଯୁକ୍ତ ଥିଲେ ?

ପରେ ସାହୁଜୀ ଓଡ଼ିଶା ସାହିତ୍ୟ ଏକାଡେମୀର ମୁଖ୍ୟସ୍ଥାପନା ପ୍ରେସିଡେଣ୍ଟ ହେବା ଆଦୌ ପସନ୍ଦ କରି ନ ଥିଲି ଓ ପ୍ରକାଶ୍ୟରେ ଏହା ତାଙ୍କୁ କହିଥିଲି । ଶେଷ ବୟସରେ ପଦ-ପଦବୀର ଲାଳସା ବୋଧହୁଏ ଉଗ୍ର ଭାବରେ ଦେଖା ଦେଇଥାଏ । ଆମ ଦେଶରେ ବର୍ତ୍ତମାନ ମନୁଷ୍ୟଭାବରେ ମନୁଷ୍ୟର ବା ବ୍ୟକ୍ତି ଭାବରେ ବ୍ୟକ୍ତିତ୍ୱର ସମ୍ମାନ ଉଭେଇଗଲାଣି କହିଲେ ଚଳେ । ସ୍ୱାଧୀନତା ପରେ ଆମେ ଆମର ସକଳ ସମ୍ମାନ କୁର୍ସି-ଚରଣ ତଳେ ହିଁ ଢାଳିବାକୁ ବ୍ୟଗ୍ର । ଲକ୍ଷ୍ମୀନାରାୟଣ ସାହୁ ଭାବରେ ଲକ୍ଷ୍ମୀନାରାୟଣ ସାହୁଙ୍କର ଏ ଦେଶରେ ସମ୍ମାନ ନାହିଁ । ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତିର କୁର୍ସି, ଲକ୍ଷ୍ମୀନାରାୟଣ ସାହୁଙ୍କଠାରୁ ଅଧିକ ସମ୍ମାନଜନକ । ସେ ଚୌକିରେ ବସିବାର ବିନିମୟରେ ବରେଣ୍ୟ ସାହୁ କିଭଳି ଲାଞ୍ଛିତ ଓ ନିର୍ଯ୍ୟାତିତ ହୋଇଛନ୍ତି, ତାହା ଆମ କେତେକଙ୍କୁ ହୃତ୍ମର୍ମରୂପେ ଜଣା । ତାହା ଥିଲା ଚୌକି ଚୌକିର ସଙ୍ଘର୍ଷ । ଏପ୍ରକାର କୁତ୍ସିତ ଇତରତାରେ ସାହୁଜୀ ପଶିବା ଉଚିତ ନ ଥିଲା ।

ଯାହାହେଉ ସେ ଅଧ୍ୟାୟର ଦୁରନ୍ତ ସମାପ୍ତି ଘଟିଗଲା । ସାହୁଜୀ ବର୍ତ୍ତମାନ ଆମ ଆଗରେ ପଦ-ପଦବୀ-ନିର୍ବିଶେଷରେ ପୂର୍ବର ନିର୍ମଳ ଅକୃଣ୍ଠ-ସହି-ସହାୟତା-ବିତରଣକାରୀ ମାନବିକ ବ୍ୟକ୍ତିତ୍ୱ ନେଇ ଦଣ୍ଡାୟମାନ । ଜୀବନର ମୁଖ୍ୟ କାଳରେ ସାହୁଜୀ ଉତ୍କଳର ତରୁଣ ସମାଜରେ ଯେଉଁ ମୈତ୍ରୀ-ବନ୍ଧୁତା

ମହନୀୟ ଭୂମିକା ବହନ କରିଗଲେ, ତାହା ପ୍ରତି ପୁରୁଷ ହିଁ ଦର୍କାର କରେ । ତରୁଣ ପୁରୁଷ, ଜାତିର ଜୀବନର ସବୁ କେନ୍ଦ୍ରକୁ ଯୋଗକରୁଥିବା ଏକ ଅମାୟିକ ବ୍ୟକ୍ତିତ୍ୱର ସ୍ପର୍ଶ ଗୃହେ । ଆମ କାଳରେ ଲକ୍ଷ୍ମୀନାରାୟଣ ସାହୁ ଆମ ନିକଟରେ ଏଇ ଭୂମିକାରେ ଆବିର୍ଭୂତ ହୋଇ ସମଗ୍ର ଉତ୍କଳର ସେବା କରିଯାଇ ଅଛନ୍ତି ।

ସାହୁଙ୍କର ସେହି ମହନୀୟ ଭୂମିକାକୁ ବାରମ୍ବାର ନମସ୍କାର କରେ ।

"ସୁନ୍ଦର ମାନବ ଭାଇ ଅସୁନ୍ଦର ହୁଅ ନାହିଁ,
ବୃଥା ଦମ୍ଭ, ଗର୍ବ, ଅଭିମାନ ତେଜ ଦୁଇଦିନ ପାଇଁ,
ସୂର୍ଯ୍ୟ ସମ ଦୀପ୍ତ ହୁଅ, ଶଶୀ ସମ ଶାନ୍ତ,
ସ୍ନେହ ଦିଅ ବନ୍ଧୁର ଜଗତ ଜନେ କର ଦାନ୍ତ ।"

—ଲକ୍ଷ୍ମୀନାରାୟଣ

# ଏତେ ବଡ଼ ସିନ୍ଧୁ

## ଶ୍ରୀ ବ୍ରଜକିଶୋର ରାୟ

ଏତେ ବଡ଼ ସିନ୍ଧୁରୁ ଚଳେ ପାଣି ତୋଳିଆଣିବା ଯାହା, ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କର ଜୀବନ-ସମୁଦ୍ରରୁ କେତୋଟି ବାରିବିନ୍ଦୁ ଉଠାଇ ଆଣିବା ସେଇଆ । ସୁଲେଖକ, ଶିକ୍ଷାବିତ୍, ସଂସ୍କାରକ, ସମାଜସେବୀ, ଗୁଣଗ୍ରାହକ, ସ୍ନେହପ୍ରବଣ ଓ ଆତ୍ମପ୍ରତିଷ୍ଠ ଲକ୍ଷ୍ମୀନାରାୟଣଙ୍କର ଗୋଟିଏ ପୂର୍ଣ୍ଣାଙ୍ଗ ବ୍ୟକ୍ତିସତ୍ତାର ପରିଚୟ ଦେବା ଏକ ଦୁରୂହ କାର୍ଯ୍ୟ ବୋଲି ମନେହୁଏ ।

### ଅଧ୍ୟୟନ ଓ ଜ୍ଞାନସଂଗ୍ରହ

ଲକ୍ଷ୍ମୀନାରାୟଣଙ୍କ ଜୀବନର ବିଶିଷ୍ଟ ଗୁଣ ହେଉଛି ସର୍ବଦା ଅଧ୍ୟୟନରତ ରହିବା । ତାଙ୍କର ପ୍ରକୃତ ଶକ୍ତି ଏହି ଜ୍ଞାନ ସଂଗ୍ରହରେ ନିହିତ ଥିଲା । ସେ ବହୁ ପୁସ୍ତକ ଓ ପତ୍ରିକା ନିୟମିତ ଅଧ୍ୟୟନ କରୁଥିଲେ । ଯାହା ସେ ପାଠ କରୁଥିଲେ ତାହାର ଆକର୍ଷଣୀୟ ଅଂଶବିଶେଷକୁ ସେ ଲେଖି ରଖୁଥିଲେ । ବହୁ ଗ୍ରନ୍ଥାଗାରର ସଭ୍ୟ ଭାବରେ ସେ ପୁସ୍ତକ ପାଠରେ ବ୍ରତୀ ରହି ଦେଶ-ବିଦେଶର ଅନେକ ଉତ୍କୃଷ୍ଟ ଗ୍ରନ୍ଥାଲୋଚନାରୁ ଯାହା ଗ୍ରହଣ କରୁଥିଲେ, ତାହା ତାଙ୍କର ବ୍ୟକ୍ତିତ୍ୱକୁ ଅସାମାନ୍ୟ ପ୍ରଜ୍ଞାରେ ବିଭୂଷିତ କରୁଥିଲା । ପଢ଼ିବା ଓ ଲେଖିବା ତାଙ୍କର ଦୈନନ୍ଦିନ କାର୍ଯ୍ୟ ଥିଲା । ଏପରି ଅଧୀତି ବ୍ୟକ୍ତି କ୍ୱଚିତ ଓଡ଼ିଶାରେ ଏବେ ବିଦ୍ୟମାନ ଅଛନ୍ତି । ଲକ୍ଷ୍ମୀନାରାୟଣଙ୍କର ଏହି ବିଶିଷ୍ଟ ଗୁଣଟିକୁ ଅନୁକରଣ କରିବାକୁ ଓଡ଼ିଶାର ଯୁବକ, ଯୁବତୀ, ତରୁଣ ଓ ତରୁଣୀମାନଙ୍କୁ ମୁଁ ନିବେଦନ କରୁଛି । ଜ୍ଞାନହିଁ ଶକ୍ତି ଏବଂ ସେହି ଶକ୍ତିଦ୍ୱାରା ମନୁଷ୍ୟ ବିଶ୍ୱବିଜୟ କରିପାରେ — ଏହି ଭାବଟିକୁ ହୃଦୟରେ ରଖିପାରିଲେ ଓ ତଦନୁରୂପ କାର୍ଯ୍ୟ କରିପାରିଲେ, ଆମ ଯୁବସଂପ୍ରଦାୟକୁ ଯେ ଜଡ଼ତା ଓ ଆଳସ୍ୟ ଆକ୍ରମଣ କରିଛି, ତାହା ଅଚିରେ ଦୂର ହୋଇପାରିବ ।

### ସୁଖାଲାପ ଏକ ବିଶିଷ୍ଟ କଳା

ସାଧାରଣ ଲୋକେ ମନେକରନ୍ତି ସୁଖାଲାପରେ ବହୁ ସମୟ ନଷ୍ଟ ହୁଏ । ମାତ୍ର ମନେ ରଖିବାକୁ ହେବ ସୁଖାଲାପ କେବଳ କୁତ୍ସାରଟନା ବା ବିକ୍ଷିପ୍ତ ଜଳ୍ପନା ନୁହେଁ । ଲକ୍ଷ୍ମୀନାରାୟଣଙ୍କ ସଙ୍ଗରେ ଆଳାପ କଲାବେଳେ ମନେହୁଏ ଏକ ଅସରନ୍ତି ସରସ ତଥା ଜ୍ଞାନଦୀପ୍ତ ନିର୍ଝରର କୁଳୁକୁଳୁ ବାରିପ୍ରବାହରେ ଆଳାପରତ ସୁଧୀଜନ ଅବଗାହନ କରୁଛନ୍ତି । ତାଙ୍କର ଏପରି ଏକ ଶକ୍ତି ଥିଲା ଯେ ଯେତେବଡ଼ ଗୁରୁଗମ୍ଭୀର ଆଲୋଚନା ହେଉଥାଉ ପଛକେ ତାର ସମାଧାନ ସେ କରିଦେବେ ଏବଂ ତାହା କରିବେ ଏକ ପ୍ରଶାନ୍ତ ହସ ଓ ଆତ୍ମପ୍ରତିଭାର ମହତ୍ତ୍ୱ ସ୍ପର୍ଶ ଦେଇ । ସେଥିପାଇଁ ଦୀର୍ଘକାଳ ଧରି ଲକ୍ଷ୍ମୀନାରାୟଣଙ୍କ ସଙ୍ଗେ ଆଳାପଆଲୋଚନା କଲେ ବି ମନରେ ବିରକ୍ତି ଆସେ ନାହିଁ, କାରଣ ନବ ନବ ଉତ୍ତର ସନ୍ଧାନ ମିଳେ ତାଙ୍କର ଦୁରଧିଗମ୍ୟ ଜୀବନ ଅନୁଭବ ମଧ୍ୟରେ । ସବୁ ପ୍ରକାର ଲୋକଙ୍କ ଲୋଡ଼ି ସେ ମଣିଷକୁ ଆପଣାର କରି ନିଅନ୍ତି । କେଉଁଠି ଅଚଳାୟତନ ସେ ରଖିଦିଅନ୍ତି ନାହିଁ । ତାଙ୍କର ଆଳାପ ଓ ଦୃଷ୍ଟିରେଖାରେ ସାର୍ବଜନୀନ ମାନବିକ ଉଦ୍‌ଭାସ ପ୍ରକଟିତ ହୁଏ । ସେ ଜନତାର ବଜାରରେ ବସନ୍ତି, ଜନତାର କଥାରେ କଥା କହନ୍ତି ଓ ଜନତାର ମେଳା ଭିତରେ ନିଜକୁ ମିଳାଇ ଦିଅନ୍ତି । ତାଙ୍କ ସହିତ ସୁଖାଲାପରେ କାବ୍ୟ ଆସେ, କଳାର ବିଚାର ହୁଏ, ଆଧ୍ୟାତ୍ମିକ ଭାବରେ କଥା ପଡ଼େ । ପୁଣି ପଲ୍ଲୀ ମଣିଷର ହସ ଦୁଃଖ, ବେଦନା ସୁଷମାର କାହାଣୀ ଝରେ । କାଶି କାଶି ନିସ୍ତାନ୍ତ ହୋଇଗଲେ ବି ସର୍ବାଙ୍ଗରେ ବେଦନା ଫୁଟିପଡ଼ିଲେ ବି ଅପ୍ରତିହତ ତାଙ୍କର ମନୋବଳ ନୌକାମଙ୍ଗ ଧରିବା ଭଳି ଆଳାପ ଆଲୋଚନର ସୂତ୍ରକୁ ଧରି ରଖେ । ସଙ୍ଗୀତ କାବ୍ୟ, କଳା, ଭେଷଜ ଶାସ୍ତ୍ର, ଉଦ୍ଭିଦ ବିଜ୍ଞାନ ପ୍ରଭୃତି ବହୁ ବିଜ୍ଞାନ ଓ ଶାସ୍ତ୍ରର ଶିଷ୍ୟ ଲକ୍ଷ୍ମୀନାରାୟଣ ଅକପଟ କଳାପାରିପଟୀରେ ଯାହା ଅନ୍ୟ ହୃଦୟକୁ ବିତରଣ କରନ୍ତି, ତାହା ଦୀର୍ଘକାଳଯାଏ ରହିଯାଏ ଏକ ସୁଗନ୍ଧି ପ୍ରକାରରେ ।

### ଓଡ଼ିଆତ୍ୱରେ ଆସ୍ଥା

ନିଜକୁ ଜଣେ ଓଡ଼ିଆ କହିବାରେ ପୁଣି ସେ କହିବା ଭିତରେ ଗୋଟାଏ ପ୍ରକାର ଦାମ୍ଭିକତା ଅନୁଭବ କରିବାରେ ଲକ୍ଷ୍ମୀନାରାୟଣଙ୍କ ଭଳି ଦ୍ୱିତୀୟ ବ୍ୟକ୍ତି ଗୋପବନ୍ଧୁ ଓ କୁଳବୃଦ୍ଧ ମଧୁସୂଦନଙ୍କ ପରେ କେହି ଅଛନ୍ତି କି ନାହିଁ, କହିହେବ ନାହିଁ । ହୁଏତ ଥିବେ; ମାତ୍ର ଲକ୍ଷ୍ମୀନାରାୟଣଙ୍କର ପଞ୍ଚପ୍ରାଣ ଯେ ଏହି ଓଡ଼ିଆତ୍ୱ ନିଶାରେ ମୋହିତ ଓ ସେ ନିଜେ ଉଦ୍‌ଭ୍ରାନ୍ତ, ତାହା ଅନ୍ୟ କାହା ଚରିତରେ ଦ୍ରଷ୍ଟବ୍ୟ ବୋଲି ମନେହୁଏ ନାହିଁ ।

ଓଡ଼ିଶାର ଯେତେକ ଆନ୍ଦୋଳନ, ଗଣବିକ୍ଷୋଭ ଓ ସଭା ସବୁଥିରେ ଲକ୍ଷ୍ମୀନାରାୟଣ ଆଗଭର ଥିଲେ । ଯେଉଁଆଡ଼େ

ଭୁଲି ଯାଇଥିବେ, ଗୋଟାଏ ସଭା ନ କରି ଓ ସେଠାରେ କିଛି ନିଜେ ନ କହି ଓ ନ କୁହାଇ ସେ ସ୍ଥାନ ଛାଡ଼ିବେ ନାହିଁ। ବିଷୟବସ୍ତୁର ବୈଚିତ୍ର୍ୟ ଯେତେ ନୁହେଁ, ଯୁବଶକ୍ତି ସହିତ ସେ କିପରି ମିଶିଯାଇ ସେ ଶକ୍ତିକୁ ଉଜ୍ଜୀବିତ କରୁଛନ୍ତି, ସେହି ପ୍ରଚେଷ୍ଟାରେ ତାଙ୍କର ଆଗ୍ରହ ବିଭିନ୍ନ ବୈଠକ ଓ ସଭାସମିତିରେ ପ୍ରକାଶ ପାଉଥିଲା। ଅସଂଖ୍ୟ ସମିତି, କମିଟି ଓ ସଭାରେ ତାଙ୍କର ସଭ୍ୟପଦ ରହିଥିଲା। ସେ ଜଣେ ଦେଶାତ୍ମବୋଧୀ, ନିରହଙ୍କାର ସଜ୍ଜନ ପୁରୁଷ ଥିଲେ।

## ଆର୍ତ୍ତପ୍ରାର୍ଥୀତର ସେବକ

ସେବକ ଲକ୍ଷ୍ମୀନାରାୟଣ ଘରେ ଘରେ ପରିଚିତ। ଦୁଃଖୀ, ଦୁଃସ୍ଥ ଓ ଅଶାନ୍ତ ଲୋକର ପ୍ରାଣକୁ ଶାନ୍ତ କରିବାରେ ତାଙ୍କର କାର୍ଯ୍ୟ ଅବାରିତ ରହିଥାଏ। ସାହାଯ୍ୟ ଓ ସହଯୋଗ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା। ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଏହି ସାହାଯ୍ୟସହଯୋଗଦ୍ୱାରା ସେ ନିଜ ଜୀବନର ଶ୍ରେୟକୁ ଉପଲବ୍ଧି କରି ପାରିଥିଲେ। ଶରୀରରେ ବୌଦ୍ଧଶ୍ରମଣ ରୂପ, ମନରେ ମାନବିକ ମୈତ୍ରୀଭାବ ଧାରଣ କରି ଦୁଃସହ ଜୀବନ-ପଥ ଉପରେ ଲକ୍ଷ୍ମୀନାରାୟଣ ଯାତ୍ରା କରିଗଲେ ଆଲସ୍ୟହୀନ ଅଶ୍ରାନ୍ତ ଭାବରେ।

## ନୀତି ଥିଲା, ରାଜନୀତି ନ ଥିଲା

ଲକ୍ଷ୍ମୀନାରାୟଣ ନରମପନ୍ଥୀ ରାଜନୀତିଜ୍ଞ ଥିଲେ। ହଠାତ୍ ଏକ ସନ୍ଦିଗ୍ଧ କାର୍ଯ୍ୟାନୁଷ୍ଠାନରେ ସବୁ ପରିବର୍ତ୍ତନ କରିବାକୁ ସେ ଉଚିତ ମନେ କରୁ ନ ଥିଲେ। ଧୀର ପାଣି ପଥର କାଟେ ନୀତିରେ ସେ ଧୈର୍ଯ୍ୟର ସହିତ ସବୁ ସମସ୍ୟାକୁ ଅନୁଧ୍ୟାନ କରି ସିଦ୍ଧାନ୍ତ କରୁଥିଲେ। ଆଚାରବ୍ୟବହାର ଓ ଜୀବନ-ଧାରାରେ ତାଙ୍କର ବହୁ ନୀତି ଥିଲା। ଅମାୟିକ ତାଙ୍କ ମନପ୍ରାଙ୍ଗଣରୁ ଯାହା ନିର୍ଗତ ହେଉଥିଲା, ସେଥିରେ କେବଳ ସ୍ନେହ, ଶ୍ରଦ୍ଧା ଓ ମୈତ୍ରୀର ପୁଷ୍ପ ଫୁଟୁଥିଲା। "ଆଜି ତୁମ ଘରେ ଆହାର କରିବି" କହି ସେ ନିଜ କନ୍ୟାସମ କାହା ବଧୂର ରାନ୍ଧଣଶାଳ ଭିତରକୁ ପଶି ଆସି ପରମ ଆଦରରେ ତାର ଶୁଭ ସମ୍ବାଦ ଜିଜ୍ଞାସା କରୁଥିଲେ। କିଏ କଅଣ ଭାବିବେ ଅବା ତାଙ୍କର ସରଳ ପ୍ରାଣ-ବନ୍ୟା ସର୍ବତ୍ର ହୁଏତ ପ୍ରବାହିତ ହୋଇ ନ ପାରେ, ଏ କଥା ସେ ଭାବି ପାରୁ ନ ଥିଲେ। ତାଙ୍କ ଜୀବନରେ ରାଜନୀତିର କଳୁଷ ନାହିଁ।

## ସେ ନିଜେ ନିଜ ଜୀବନୀକାର

ତାଙ୍କ ଜୀବନ ଏତେ ବିସ୍ତୃତ ବିଚିତ୍ର ଯେ, ସେ ନିଜେ ନ ଲେଖିଲେ ଆଉ କେହି ତାଙ୍କ ଜୀବନୀ ଲେଖିଦେବେ ବୋଲି ବିଶ୍ୱାସ ନୁହେଁ। "ଡଗର" ପତ୍ରିକାରେ ତାଙ୍କର ଜୀବନୀ ଉପନ୍ୟାସ ସୁଲଭ କଳାକର୍ମରେ ଅନୁରଞ୍ଜିତ ହୋଇ ପ୍ରକାଶ ପାଇଥିଲା। ସେଥିରେ ଶତାଧିକ ସେବକ ବହୁଘଟଣା, ଦୁର୍ଘଟଣା, ଚରମ ନରମ ସର୍ବପ୍ରକାର ଅନୁଭବ, ସଂଗ୍ରାମ, ଶାନ୍ତି, କ୍ଷୋଭ ବିକ୍ଷୋଭ ପ୍ରତ୍ୟେକ ଦୃଶ୍ୟର ସୁନିପୁଣ ପ୍ରକାଶ ରହିଥିଲା। ଏଭଳି ଏକ ଜୀବନୀ ଦେଶର ପରମ ସଂପଦ। ତାଙ୍କର ଦେହାନ୍ତ ପରେ ତାଙ୍କର ଆତ୍ମସ୍ମୃତି ସଂକଳିତ ହେବା ଆବଶ୍ୟକ। ଓଡ଼ିଶାର ସାଂସ୍କୃତିକ ଓ ରାଜନୈତିକ ଜୀବନ ସହିତ ଜଡ଼ିତ ଏହି ମହାପ୍ରାଣଙ୍କର ଜୀବନକାଳ ମହାକାଳର ବିସ୍ତାର ପାଖରେ ତୁଚ୍ଛ ହେଲେ ବି ଜାତୀୟ ଗ୍ରନ୍ଥାଘରେ ସୁରକ୍ଷିତ ରହିବାର ପ୍ରୟୋଜନ ଅଛି।

## ତାଙ୍କର ମାତ୍ର ଦୋଷ

ଏ ଦୋଷ ସମସ୍ତଙ୍କର ଥାଆନ୍ତା କି ? ନିଷ୍ଠାର ପରମ ସାଧକ ଲକ୍ଷ୍ମୀନାରାୟଣ ଯେ କାର୍ଯ୍ୟ ହାତକୁ ନେଇଥିଲେ, ତାହା ସୁରୁଖୁ ରୂପରେ ସମ୍ପାଦନ କରୁଥିଲେ। ଯେତିକି ସେ କହୁଥିଲେ, ତାହାଠାରୁ ଢେର ବେଶୀ ସେ ଶୁଣୁଥିଲେ। ଘଣ୍ଟାଘଣ୍ଟାରୁ ଊର୍ଦ୍ଧ୍ୱ ସଭା ଚାଲିଛି; କିଏ କୁଆଡ଼େ ଗଲେଣି ଅବା ଥରେ ଦୁଇ ଥର ଗୋଡ଼ ଖେଳେଇ ଆସିଲେଣି। ମାତ୍ର ଲକ୍ଷ୍ମୀନାରାୟଣ ଘଣ୍ଟା ପରେ ଘଣ୍ଟା ନିର୍ବିକଳ୍ପ ସମାଧିରେ ବସିବା ଭଳି ବସି ଯାଇଛନ୍ତି—ଶୁଣୁଛନ୍ତି କିଏ କଅଣ କହୁଛନ୍ତି। ମୋଟାକିଆ ଚଷମା ଭିତରେ ସେ ଯେ କି ଅନ୍ତର୍ଦୃଷ୍ଟି! ସେ ଯେ କି ଅଧିଗମନ! ହାତରେ ପ୍ରକମ୍ପ, ଚକ୍ଷୁ ଜ୍ୟୋତିହୀନ, ଶ୍ୱାସର ଘନଘନ ଜୁଆର—ତଥାପି ନିଷ୍ଫଳ ଏଇ ମଣିଷ ରହି ଯାଇଛନ୍ତି—କେବଳ ଶୁଣୁଛନ୍ତି, ସାହିତ୍ୟର କଥା, କଳାର ଚର୍ଚ୍ଚା, କବିତା ପାଠ, ଭଜନ ଓ ସଙ୍ଗୀତ ନୃତ୍ୟର ସ୍ପନ୍ଦନ ଓ ମୂର୍ଚ୍ଛନା। ନିଜକୁ ସେ ଜଣେ ଆତ୍ମବ୍ରହ୍ମ ଭାବରେ ନ ଚଢ଼ିଲେ, ଏପରି ପରମାର୍ଥିକ ଆନନ୍ଦ ବିଳାସ କାହିଁ ଅନ୍ତରକୁ ଅଧିକାର କରେ ନାହିଁ। ଲକ୍ଷ୍ମୀନାରାୟଣ ପରମାନନ୍ଦ ସେବକ ଭାବରେ ଜୀବନର କୃଚ୍ଛ୍ର ସାଧନାରୁ ଆହରଣ କରୁଥିଲେ ଅମୃତ ଏବଂ ସେହି ଅମୃତହିଁ ତାଙ୍କୁ କାୟାକ୍ଲେଶ ବାହାରେ ଦେଇଥିଲା ଏକ ଅନିର୍ବଚନୀୟ ଆତ୍ମା ଯାହାର ବିନାଶ ନାହିଁ, ବିଲୟ ନାହିଁ।

## ଅବହେଳିତ ପ୍ରାଣୀଙ୍କ ସେବକ

ଓଡ଼ିଶାର ଅରଣ୍ୟ-ପ୍ରକୃତିରେ ବର୍ଦ୍ଧିତ ଜନ-ସମାଜ ସହିତ ଲକ୍ଷ୍ମୀନାରାୟଣଙ୍କର ହୃଦୟର ମେଳନ ଥିଲା । ଆଦିବାସୀ ସଂସ୍କୃତି ଓ ନୃତତ୍ତ୍ୱ ଅଧ୍ୟୟନରେ ସେ ପରମ ଆନନ୍ଦ ଉପଭୋଗ କରୁଥିଲେ । ଆଦିବାସୀମାନଙ୍କ ଗହଣରେ ସେ ବହୁକାଳ ବିତାଇଛନ୍ତି । ଏ ସମ୍ପର୍କୀୟ ତାଙ୍କ ରଚିତ ପୁସ୍ତକାବଳୀ ଏହାର ସାକ୍ଷ୍ୟଦିଏ । ଅବହେଳିତ ପ୍ରାଣୀଙ୍କର ସୁଖ ଦୁଃଖ ଅଶ୍ରୁପ୍ରବାହରେ ତାଙ୍କର ଜୀବନ ନିରନ୍ତର ପ୍ଲାବିତ । କାହା ପ୍ରତି ତାଙ୍କର ହେୟ ଦୃଷ୍ଟି ନ ଥିଲା. ସର୍ବତ୍ର ଈଶ୍ୱର ସ୍ଥିତିର ଏକ ଅବବୋଧ ତାଙ୍କର ଜୀବନକୁ ସରସ ରଖିଥିଲା । ନିଜେ ଅଜନ୍ମ ରୁଗ୍ଣ ଥିବାରୁ ଅନ୍ୟର ବ୍ୟାଧି ପ୍ରପୀଡ଼ନରେ ତାଙ୍କର ମମତାଉଜ୍ଜ୍ୱଳ ଆଖି ଦୁଇଟି ବାଷ୍ପାଚ୍ଛନ୍ନ ହେଉଥିଲା । ସେ ଦୁଃଖୀର ଦୁଃଖୀ ଥିଲେ । ନିଜର ସୁଖାନୁଭବ ପ୍ରତି ଜଳାଞ୍ଜଳି ଦେଇ ଏକ ଚିରଣ ସନ୍ନ୍ୟାସୀ ଭଳି ଓଡ଼ିଶାର ପୁରପଲ୍ଲୀ, ନଗର ଜନପଦରେ ଘୂରି ବୁଲୁଥିଲେ ଆର୍ତ୍ତର ସେବାରେ ।

## ପ୍ରତିଭାର ଗ୍ରାହକ

ଗ୍ରାହକତ୍ୱ ଏକ ଅନବଦ୍ୟନୀୟ ଗୁଣ । ନିଜର ଉଦାର ବକ୍ଷ ଓ ମୈତ୍ରୀମୟ ଦୃଷ୍ଟି ନ ଥିଲେ ଅପରର ପ୍ରତିଭାକୁ ଆବିଷ୍କାର କରି ଉତ୍ସାହିତ କରିବା ସହଜସାଧ୍ୟ ନୁହେଁ । ଯେଉଁଠି ଈର୍ଷା ଓ ଅସୂୟାର ପ୍ରଚଣ୍ଡ ଅଗ୍ନି ଜଳୁଛି, ମଣିଷ ମଣିଷକୁ ଯେଉଁ ଦେଶରେ କବଳିତ କରିବା ପାଇଁ ଅହରହ ସଚେଷ୍ଟ ରହୁଛି, ସେଠାରେ ଲକ୍ଷ୍ମୀନାରାୟଣ ପରମ ଆଲିଙ୍ଗନ ଆବେଶରେ ପ୍ରତ୍ୟେକ ମଣିଷର ପ୍ରତିଭା ଓ କୃତୀକୁ ପରୀକ୍ଷା କରି ସାଧୁବାଦ ଦେଉଥିଲେ । ତାଙ୍କର ଉତ୍ସାହ ଓ ଉଦ୍ଦୀପନା ଯେ ଏ ଦେଶର କେତେ ଲୋକଙ୍କୁ ପ୍ରଭାବିତ କରିଛି, ତାର କଳନା ନାହିଁ । ନିଃସ୍ୱାର୍ଥପର ଏହି ଶ୍ରେଷ୍ଠ ସେବକ-ସନ୍ତାନଙ୍କୁ କିଛିକାଳ ବକ୍ଷରେ ଧାରଣକରି ଦେଶମାତୃକା ଧନ୍ୟ ହୋଇଛି ।

## ଅବହେଳିତ ସାହିତ୍ୟସେବା

କବି ବା କାବ୍ୟକାର କହିଲେ ଯାହା ବୁଝାଏ, ଲକ୍ଷ୍ମୀନାରାୟଣ ତାହା ନ ଥିଲେ । ତାଙ୍କର ସ୍ୱତଃସ୍ଫୂର୍ତ୍ତି ଅନ୍ତର ଭାବକୁ ସେ ଛନ୍ଦୋମୟ ବା ଛନ୍ଦୋହୀନ ଭାଷାରେ ପ୍ରକାଶ କରି ହୃଦୟର ତାଡ଼ନାକୁ ରୂପ ଦେଉଥିଲେ । ଅଳଂକରଣ ଓ ସଜ୍ଜୀକରଣର ବାହ୍ୟାଡ଼ମ୍ବରରେ ରହି କେବଳ ଅକୃତ୍ରିମ ଭାବ ଜୁଆରକୁ ସେ ପ୍ରକାଶ କରୁଥିଲେ ନାନା ବୈଚିତ୍ର୍ୟ ବିଷୟବସ୍ତୁ ମାଧ୍ୟମରେ । ଆଡ଼ମ୍ବରହୀନ ସରଳ ସ୍ୱତଃ ଉଚ୍ଛ୍ୱସିତ ଭାବରାଜିର କବିତା ଲକ୍ଷ୍ମୀନାରାୟଣଙ୍କର ଲେଖନୀରେ ଯାହା ସ୍ରବି ଆସିଛି ତାହା ଉତ୍କଳ ସାହିତ୍ୟ ଗଗନରେ ଏକ ବିଚିତ୍ର ଭୂଷାରେ ଚିରକାଳକୁ ସଂପାଦିତ ହେଉଛି । ତାଙ୍କର ଗଦ୍ୟ କଥନୀୟ ଶୈଳୀରେ ପ୍ରକାଶ ପାଏ । ସେଥିରେ ଜ୍ଞାନ ଓ ତତ୍ତ୍ୱର ବିଗ୍ରହ ଥାଏ । ତାଙ୍କର ପତ୍ରାବଳୀରେ ଏକ ସନ୍ଦନ ଅମାୟିକ ବ୍ୟକ୍ତି ସତ୍ତାର ସ୍ୱାକ୍ଷର ରହିଥାଏ । ଇଂରାଜୀ ତଥା ବଙ୍ଗଳା ଭାଷାରେ ତାଙ୍କ ପ୍ରଣୀତ ପୁସ୍ତକ ରହିଛି । ଇଂରାଜୀ, ବଙ୍ଗଳା, ହିନ୍ଦୀ ଓ ଅନ୍ୟାନ୍ୟ ପ୍ରାଦେଶିକ ଭାଷା ଓ ସାହିତ୍ୟରେ ତାଙ୍କର ପ୍ରଗାଢ଼ ଜ୍ଞାନ ଥିଲା । ଅନୁସନ୍ଧିତ୍ସା ଓ ଅଧ୍ୟୟନ ଏ ଦୁଇଟି କର୍ମ ତାଙ୍କର ପ୍ରକୃତିଗତ ବୋଲି ମନେହୁଏ ।

## ସ୍ମୃତି ଓ ସ୍ମାରକ

ଦେଶ ଲକ୍ଷ୍ମୀନାରାୟଣଙ୍କୁ ଯେପରି ସ୍ମୃତିମୟ କରେ । ଶିଳ୍ପ-ବିଜ୍ଞାନ କାରଗରୀ ଯୁଗର ଯେ ବିପୁଳ ପଦସଂଗ୍ରହ ଦେଖାଯାଉଛି, ସେଠାରେ ଲକ୍ଷ୍ମୀନାରାୟଣଙ୍କର ଜୀବନର ସ୍ଥିତି ଓ ପ୍ରତିଭାକୁ ସମୁଜ୍ଜ୍ୱଳ ରଖିବାକୁ ହେଲେ ଦେଶର ନିଭୃତ ଶାନ୍ତିମୟ କୋଣରେ ତାଙ୍କର ସ୍ମୃତିସ୍ତମ୍ଭ, ସ୍ମାରକ ପୀଠିକା, ନାମିତ ଗ୍ରନ୍ଥାଗାର ସ୍ଥାପନ କରିବାକୁ ହେବ । ନଗର କୋଳାହଳ ଭିତରେ ସେ ବଞ୍ଚିପାରିବେ ନାହିଁ । କୋରାପୁଟର ଅରଣ୍ୟ ଶୈଳସମ୍ପଦ ତଳେ କୁଷ୍ଠାଶ୍ରମର ବ୍ୟାଧିମୟ ଅଶାନ୍ତ ଜୀବନତଟରେ ଅବା ଗ୍ରନ୍ଥାଗାରର ନିବିଷ୍ଟମାନସ ତରୁଣ ସମାଜ ପାଖରେ କିମ୍ବା ଲକ୍ଷ ଲକ୍ଷ ଦୁଃସ୍ଥ ଲାଞ୍ଛିତ ପୀଡ଼ିତ ଜନସମାଜର ପ୍ରାଙ୍ଗଣ ଉପରେ ତାଙ୍କର ତ୍ୟାଗମୟ ପରମ ବୈଭବ ପରିଚ୍ଛନ୍ନ ରୂପ ବିକଶିତ ହେଉ । ବକ୍ତୃତାମାଳା, ପ୍ରବନ୍ଧ ଲେଖନ, ଜୀବନୀ ସମ୍ପାଦନ ପ୍ରଭୃତି କାର୍ଯ୍ୟାବଳୀରେ ତାଙ୍କର ଜୀବନ-ଅଙ୍ଗୀକାର ସ୍ୱୀକୃତ ହେଉ । କୋଟିକରେ ଗୋଟିଏ ଏହି ମନସ୍ୱୀ ସାଧକଙ୍କୁ ଉତ୍ତରପୁରୁଷଙ୍କ ଭାବନା ତନ୍ତ୍ରୀରେ ପ୍ରୋଥିତ କରିବାକୁ ହେଲେ, ଆଜିଠାରୁ କାର୍ଯ୍ୟ ଆରମ୍ଭ ହେଉ ।

# ଅଭୁଲା ସେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ନାଟ୍ୟାଚାର୍ଯ୍ୟ

ସେ ତ ଅନେକ ଦିନର ଅନେକ କଥା—ଲେଖିବି କୋଉଟି-ଆଉ ନ ଲେଖିବି ବା କୋଉଟି ?

ପହିଲି ଭେଟ—ଠିକ୍ ଦିନ ବାର ହେଉ ନାହିଁ—ସ୍ୱର୍ଗୀୟ ଅଧ୍ୟାପକ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କ ବସା, ଟାଉନହଲ ରୋଡ଼ରେ—ସେଇଠି ମୋର ସେତେବେଳେ ପୁଣି ରହଣି ବେଳ । ସେ ହେଲା ୧୯୧୭ ସାଲ କଥା । କଟକରେ ଗୋଟିଏ ସଙ୍ଗୀତ ବିଦ୍ୟାଳୟ କେମିତି ଆରମ୍ଭ କରାଯିବ, ସେଇ ବାବଦ ଆଲୋଚନା ଆମର ଚାଲିଥାଏ । ହଠାତ୍ ଆସି ପହଞ୍ଚିଲେ ଲକ୍ଷ୍ମୀନାରାୟଣ ବାବୁ । ନାଆଁ ତ ଢେର ଶୁଣା, ହେଲେ ମୁହଁଚିହ୍ନା ନ ଥିଲା । ଚିହ୍ନାପରିଚୟ କରାଇଦେଲେ ସ୍ୱର୍ଗୀୟ ଚୌଧୁରୀ । ସେଇଦିନୁଁ କେତେ ଆପଣାର କରି ସାହୁଜୀ କାଙ୍କ ଧରିଥିଲେ ସେଦିନ ମୋତେ-ସେ କଥା ଅଭୁଲା ରହିଚି-ରହିବ ଜୀବ ଥିବାଯାଏ । ସଂଗୀତ ବିଦ୍ୟାଳୟ ଲାଗି ସେ ଲାଗିପଡ଼ିଲେ ଆମମାନଙ୍କ ସାଥିରେ ।

ସେଇକାଳରୁ ଭଲରେ ମନ୍ଦରେ ଡକାହକା, ଖିଆପିଆ, ଆଦର ସ୍ନେହ କ୍ରମେ ଘନେଇ ଉଠିଲା ଆମ ଭିତରେ । ମୁଁ ତାଙ୍କର 'କାଳୀ' ହୋଇ ରହିଥାଏ । ମୋର ସେତେବେଳକୁ ରସଦଳ ଚାଲିଥାଏ । ମୁଁ କଟକ ଆସି ଶ୍ରୀରାମଚନ୍ଦ୍ର ଭବନରେ ରାଧିକା ପାଣ୍ଡେଙ୍କ ଭଡ଼ାରେ ମାସ ମାସ ଧରି ରସ ଅଭିନୟ କରାଉଥାଏ । କେଜାଣି କଦବା ତାଙ୍କ ହାଜିରା ପଡ଼ିଆ ରହିଲେ ରହେ କିନା ନଇଲେ ଲକ୍ଷ୍ମୀନାରାୟଣ ବାବୁ ଥିଲେ ଏକପ୍ରକାର ଲାଗୁଆ ଗରାଖ । ପାଁଟା ଚନାବାଦାମ, ଗୁରୁଚଅଟା କଦଳୀ, କମଳା ଇତ୍ୟାଦି— କିଛି ନା କିଛି ତାଙ୍କ ହାତ ମୁଠାରେ ଆଣି ଆସିଥିବେ ସେ ମୋ ଲାଗି ।

ନିଜେ ଗାଇ ବଜାଇ ଜାଣନ୍ତି ନାହିଁ-ହେଲେ ବଡ଼ ତାଜୁବ୍ କଥା - ସେ ସଂଗୀତର ତଥ୍ୟ ବ୍ୟାଖ୍ୟାନ କରିଥାଆନ୍ତି ବେଳେ ବେଳେ—ଯାହା ତଥାକଥିତ ସଂଗୀତ ଓସ୍ତାଦମାନଙ୍କ ବି ଜଣାନାହିଁ । ସେ ପଢ଼ନ୍ତି—ମନେରଖନ୍ତି—ପୁଣି ଏତେ ମନେରଖନ୍ତି ଯେ, ଯାହା କହିଲେ, ତାହା ତାଙ୍କ ପାଖେ ଯେମିତି କୋଉ କାଳର ପଢ଼ାପାଠ । ମୁଁ ଅଙ୍ଗେଲିଭ କଥା କହୁଛି—ସେ କେଉଁ ବିଷୟ ଉପରେ ଗୋଟା ଗୋଟା ଦ'ପଦ ନ କହିବେ, ଏପରି ନୁହେଁ । ପଢ଼ନ୍ତି ଯେମିତି, ହେତୁ ବି ରଖିପାରନ୍ତି ସେମିତି । ଠିକଣାବେଳରେ, ଠିକଣା ଥାନରେ, ଏମିତି ସୁପଣମାନ ଦିଅନ୍ତି ଯେ, ମନେହୁଏ ଯେମିତି ସତେ ଘୋଷିକରି ପାଣି ପରି କରି ଆସିଛନ୍ତି ସେଇଆଡ଼ୁ ।

ଆଦର କେମିତି କରାଯାଏ, ଲୋକ କେମିତି କଣାଖରିଦା ହୋଇ ରହେ—ସେ କଦର ତାଙ୍କଠାରୁ ଶିଖିବା କଥା ।

ମୁଁ ବରାବର ବାରୁଛି—ସେ ଓଡ଼ିଆ—ସବୁ କଥାରେ ସେ ଓଡ଼ିଆ । ଓଡ଼ିଶା ଥିଏଟର ଆରମ୍ଭ ପୂର୍ବରୁ କେତେ ଜାଗାକୁ ସେ ମୋତେ ସଂଗୀତ ସମ୍ମିଳନୀର ସଭାପତି କରି ନେଇଛନ୍ତି । ସବୁଠି ସେ ଓଡ଼ିଶୀ ଗୀତ, ଓଡ଼ିଶାର ଲୋକଗୀତ, ଛାନ୍ଦ ଚୌପଦୀ ଏଇ ସବୁଥିର ପ୍ରତିଯୋଗିତା କରାନ୍ତି । ଭାରି ଦୁଃଖ କରି କହନ୍ତି:—"ଆମ ସଂଗୀତର କେହି ପୁନରୁଦ୍ଧାର କଲାବାଲା ବାହାରୁ ନାହାନ୍ତି ।"

ଲୋକର ସାମାନ୍ୟ ଗୁଣକୁ ଆଦର କରିବା, ତାକୁ ଉତ୍ସାହ ଦେବା, ତା'ର ଖ୍ୟାତିରେ ପରମ ସୁଖୀହେବା ପାଇଁ ତାଙ୍କଭଳି ପ୍ରଅଟାଏ ଜୀବନରେ ଅବଧି ଦେଖିନାହିଁ । ବାଲୁଗରଡ଼ାକୁ ସାଉଁଟି ଆଣି ଝଟୁଲିରେ ଶାଳଗ୍ରାମ ଶିଳା କରିବା ଲୋକ ସେ । ଏକଥା ଆଜି ତାଙ୍କ ପଛରେ କହୁନାହିଁ—ଆଗରେ ବି କହିଛି ୧୯୪୭ରୁ । ଆଉ ଥରେ ଦୋଅଡ଼ ଦଉଛି ସେଇକଥା—ସ୍ନେହମିଶା ଭକ୍ତି-ନୁଆଁ ମଧ୍ୟରେ ।

—ବେକାର ନାଟକ—

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଏମ. ଏ., ଏମ. ଏଲ. ଏ.
ପରମ ଶ୍ରଦ୍ଧାସ୍ପଦେଷୁ

ଭଙ୍ଗା କୁଡ଼ିଆରେ ଦିନେ—ରାଜମହଲରେ ଦିନେ—ଖୁଦ୍ର ଗୃହଲରେ ଦିନେ—ପୁଣି ଖିରି ଖିରସାରେ ଦିନେ ଏଇ ହେଲା ଯାହାର ଜୀବନର ଆନନ୍ଦ—ଏ ଦୁନିଆର ଚଉଆଖାନା ସେଇ ଏକା ଦେଖିଛୁ, ଦେଖିଲାପରି । ସରଳିଆ ମନ, ହସଫୁଟା ମୁହଁ, ଅହଙ୍କା ନ ଥିଲା ଗୁଡ଼—ଗୋଟିଏ ଦାମ ଅଛୁ ଏ ସବୁର । ଭଗବାନଙ୍କ ଦିଆ ଏହି ଜିନିଷଗୁଡ଼ିକ ଠିକଏ ଖରଚନ୍ତି କାମରେ ଲଗାଇ ପାରିଲେ ସିଧା ବାଟ ବେଶ ଚକ୍କଣ ହୋଇଥାଏ । ଆପଣ ଛାତିରେ ହାତ ରଖି କହିପାରିବେ ଲକ୍ଷ୍ମୀନାରାୟଣ ବାବୁ, ମୁଁ ଯାହା କହିଲି ସବୁ ଆପଣ ସାଇତି ରଖିନାହାନ୍ତି ? ବୁଲା ଫକୀର କେତେ ଦୁଃଖ ସୁଖ ଭିତରେ ଦୁଃଖୀ ସୁଖୀଙ୍କ ସାଙ୍ଗରେ ଜୀବନ ବିତାଏ; ସେଇଥିଭିତରୁ ଗୋଟିଏ ଛବି ଏହି 'ବେକାର' ହାତରେ ଦେଉଛି—ଏଇ

ଧାରଣାରେ ଯେ ଆପଣ ଏ 'ବେକାର'ର ମନ କଥା ଠିକ୍‌ଏ ବୁଝିବେ, ଶୁଣିବେ ।

ବିନୀତ
କାଳୀଚରଣ
ତା ୧୫-।୮୫

ସାହୁଙ୍କର ଆଉ ଏକ ସମାଲୋଚନା ଦିଆ ଢଙ୍ଗ କହୁଚି—

ଧରନ୍ତୁ ଅଭିନୟବେଳେ ଗୋଟାଏ କେଉଁଠି ଗ୍ରୀଷ୍ମଦିନର ଘଟଣା ଦେଖାଉଚନ୍ତି, ଅଥଚ ସେଇଟା ଶୀତକାଳ । ସାହୁଜୀ ଲେଖନ୍ତି—ଆଜିକାଲି ଶୀତଦିନରେ ଷ୍ଟେଜରେ ପଙ୍ଖାରେ ବାୟୁସେବନ ଦୃଶ୍ୟଟା ଦେଖାଇବା ଉଚିତ ହେଉ ନାହିଁ । ସେ ଭୁଲିଯାଆନ୍ତି ଯେ ଏଇଟା ରଙ୍ଗମଞ୍ଚ, ଅଭିନୟସ୍ଥଳୀ । ଏତେ ଜାଣିବାର ହୋଇ ଏଇଟା ଯେ କାହିଁକି କେମିତି ହୁଏ ମୁଁ ବୁଝିପାରେ ନାହିଁ—ମୁଁ ଓ ମୋର ସାଥିମାନେ ତାଙ୍କ ମନ୍ତବ୍ୟ ପଢ଼ି ହସୁ । କିନ୍ତୁ କେବେ ଦିନେହେଲେ ମୁଁ ତାଙ୍କୁ ଏ ସମ୍ବନ୍ଧେ କିଛି ପଚାରି ନାହିଁ ।

ବରାବର ସେ ମୋ ବସାକୁ ଆସୁଥିଲେ । ଥରେ ଦଳର କେତେ ଜଣଙ୍କୁ ତାଙ୍କ ଘରକୁ ଖାଇବାକୁ ଡାକିନେଲେ । ପାଠୁଆ ପଣ୍ଡିତପଣିଆ ଛଡ଼ା ସେ ଯେ ଜଣେ ପୋଖତ ସୁଆର, ସେଇଦିନ ତାଙ୍କ ରନ୍ଧା ଚେନା ତର୍କାରି ସେ କଥା ଜଣାଇ ଦେଲା ।

ଅନାହୂତ ଭାବରେ ସେ ବେଳେବେଳେ ଆସନ୍ତି, ଯାହା ଦେଲେ ଆନନ୍ଦରେ ଖାଇ ପ୍ରଶଂସା ଶଗଡ଼ ଅଜାଡ଼ି ଦେଇ ଯାଆନ୍ତି । ପର ଅପଣା ବିଚାର ମୁଁ ତାଙ୍କଠି ଦିନେ ହେଲେ ଦେଖି ନାହିଁ । ସମସ୍ତଙ୍କୁ ବଡ଼ କରିବାକୁ ତାଙ୍କର ଇଚ୍ଛା । କାହାରି ନିନ୍ଦା ବା କୁତ୍ସା ତାଙ୍କ ତୁଣ୍ଡରୁ ଶୁଣି ନାହିଁ ଦିନେ ହେଲେ । ଅନେକଙ୍କୁ ସେ ସାହାଯ୍ୟ ଦିଅନ୍ତି, ଦିଆନ୍ତି ମଧ୍ୟ ନାନାମତେ ।

ଲେଖକ ସାହୁ ତାଙ୍କ ମନର ଭାବନା ସଜାଡ଼ି ଥୋଇବାକୁ ଧୁରନ୍ଧର । ଓଡ଼ିଆ କହ, ବଙ୍ଗଳା କହ, ଇଂରାଜୀ କହ—ସବୁଥିରେ ସେ ଗଦ୍ୟ, କବିତା ଲେଖିଛନ୍ତି । କଲମ ଧରିଲେ ଲେଖିଲେ—ବିଳମ୍ବ ନାହିଁ କି ଭାବିବାକୁ ନାହିଁ । ପଢ଼ି ଶୁଣାନ୍ତି ମଧ୍ୟ ଖୁବ୍ ସରାଗରେ ।

ଚାଲିଯିବାର କିଛିଦିନ ଆଗରୁ—ଆଉ ଦିନ ନ ଥାଏ ଦେହରେ—କାବୁ କରି ଦେଇଥାଏ ଶ୍ୱାସ ତାଙ୍କୁ । ଗୋଟିଏ ପିଲାକୁ ସାଙ୍ଗରେ ନେଇ ଆସିଥାନ୍ତି ମୋ ବସାକୁ । ଚାଲିଥିଲା ସେ ପିଲାଟି—ସାହୁଙ୍କ ବଗିଚା ଗୀତ ଧ'ରୁଚନ୍ତି । ସେଇଦିନ ପରେ—ସେଇ ତାଙ୍କର "କାଳୀ ତୁମ ଘରେ ଆଜି ମୋର ନିମନ୍ତ୍ରଣ" ବୋଲି ହସି ହସି କହୁଥିବା ଦିନଟି ପରେ—ସେ ହେଲେ ମୋର ଆଖିର ଅଦେଖା; କିନ୍ତୁ ମନର ଅଭୁଲା ଲେଖା ।

ଏ ଆଖି ତ କେତେ ଦେଖିଛି—ଦେଖୁଛି—ହେଲେ ସାହୁଙ୍କ—

ବାହାରେ ସଙ୍ଗାତ, ସଙ୍ଗାତ
ଭିତରେ କାହାରି କରତ—ନୁହନ୍ତି

କେବଳ ଗଣ ଭିତରେ ଯେ ଜଣେ ହୋଇ ଗଲା—ତାକୁ ଭଲ ଭୁଲିବି କେମିତି ?

ସତରେ ମୋର ପ୍ରତେ ହଉ ନାହିଁ ଜମା—ସାହୁଜୀ ଦୁନିଆରୁ ବିଦାଛପା ଦେଲେଣି ବୋଲି ।

"କିଏ ରେ ମରେ ମରଣ କା'ର କାହିଁ ?
ସୁନ୍ଦରାତ୍ମାର ମରଣ ନାହିଁ ନାହିଁ ।"

—ଲକ୍ଷ୍ମୀନାରାୟଣ

# ଚିରଯୌବନ ଚିରବସନ୍ତ

ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

କବିମାନେ ଚିରଯୌବନ ଓ ଚିର ବସନ୍ତର ପରିକଳ୍ପନା କରି ଭାଷା, ଛନ୍ଦ ଓ ରସ ବିନ୍ୟାସରେ ସେ କଳ୍ପନାକୁ ରୂପ ଦେବାର ଉଦ୍ୟମ କରନ୍ତି । ମୁନି ଋଷି, ରାକ୍ଷସ ଓ ଅସୁରଗଣ ଘୋର ତପସ୍ୟା କରନ୍ତି ଜରାମୃତ୍ୟୁ ଦୁଃଖାଦି ଅବସ୍ଥାନ୍ତରକୁ ଏଡ଼ି ଦେଇ ଏହିପରି ଏକ ଅବସ୍ଥା ପ୍ରାପ୍ତି ଆଶାରେ । ମୃତ୍ୟୁର ଅଧୀନ ମନୁଷ୍ୟ ଅମର ହେବା ଆଶାରେ ଯୁଗେ ଯୁଗେ ନାନା ଭାବରେ ତପସ୍ୟା ଓ ସାଧନା କରିଆସିଛି । କିନ୍ତୁ ଜଣେ ଜଣେ ବ୍ୟକ୍ତି ଜନ୍ମାବଧି ସେପରି ଅବା ଚିରଯୌବନ ଓ ଚିରବସନ୍ତର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ସଂସାରକୁ ଆସନ୍ତି ।

ଜଗତର ସାଧାରଣ ଜୀବନପ୍ରବାହର ସେହି ଅଳ୍ପ କେତେଜଣ ହେଲେ ବ୍ୟତିକ୍ରମ ଓ ବିସ୍ମୟ । ପରଲୋକଗତ ଲକ୍ଷ୍ମୀନାରାୟଣ ସାହୁ ସେହିଭଳି ଏକ ବ୍ୟତିକ୍ରମ । ବାଲ୍ୟ, ଯୌବନ, ପ୍ରୌଢ଼ କିମ୍ବା ବାର୍ଦ୍ଧକ୍ୟରେ ଯେଉଁ ବହୁମୁଖୀ କର୍ମ-ଧାରା ତାହାଙ୍କ ଜୀବନରେ ଲକ୍ଷ୍ୟ କରାଯାଏ, ସେଥିରୁ ତାଙ୍କର ସୁଦୂରପ୍ରସାରୀ ଯୋଜନା ଓ କଳ୍ପନାର ପରିଚୟ ମିଳେ । କିନ୍ତୁ ବାଲ୍ୟକାଳରୁ ମାତାପିତାଙ୍କ ଅନୁଶାସନ ମଧ୍ୟରେ ଶିକ୍ଷାଲାଭ କରି ବୃଦ୍ଧବୟସପର୍ଯ୍ୟନ୍ତ ଅତି ଆଶ୍ଚର୍ଯ୍ୟ ଭାବରେ ତାଙ୍କର ସରଳ ଶିଶୁ ଅନ୍ତର ଅକ୍ଷୁଣ୍ଣ ରହିଯାଇଥିଲା । ବୟସ ଦୃଷ୍ଟିରୁ ତାଙ୍କୁ ଅବଶ୍ୟ ଶିଶୁ, କିଶୋର, ଯୁବକ, ପ୍ରୌଢ଼ କିମ୍ବା ବୃଦ୍ଧାବସ୍ଥା ଆଦି ଅତିକ୍ରମ କରିବାକୁ ହୋଇଥିଲା; ମାତ୍ର ତାଙ୍କ ଚରିତ୍ର କିମ୍ବା ଅନ୍ତର ବୟସାଧିକ୍ୟ ଦ୍ୱାରା ପ୍ରାୟ ପ୍ରଭାବିତ ହୋଇନାହିଁ । ଶେଷପର୍ଯ୍ୟନ୍ତ ତାହା ଶିଶୁସୁଲଭ ସରଳ ତରଳ ସ୍ୱଚ୍ଛ ଢଳଢ଼ଳ । ସ୍ନେହମମତା କ୍ଷେତ୍ରରେ ଶିଶୁପରି ସେ ଅତ୍ୟାଗ୍ରହୀ । ସ୍ନେହର ପାତ୍ର ଯେତେ ବିରକ୍ତ ଅସ୍ଥିର ହେଲେହେଁ ତାହାଙ୍କ ସ୍ନେହାତି-ଶଯ୍ୟର ବିରାମ ନାହିଁ ।

ସଂସାରର କୌଣସି ଦୁଃସହ ଭାର କିମ୍ବା ଜୀବନର ସୁଖ ଦୁଃଖ ପୂର୍ଣ୍ଣ ନିରବଚ୍ଛିନ୍ନ ଜଞ୍ଜାଳ କେବେହେଲେ ଲକ୍ଷ୍ମୀନାରାୟଣଙ୍କ ଶିଶୁ ଅନ୍ତରକୁ ଗ୍ରାସ କରି ନାହିଁ । ପାରିବାରିକ ତଥା ସାଂସାରିକ କ୍ଷେତ୍ରରେ ଅନ୍ୟମାନଙ୍କ ଭଳି ଯେ ଅନ୍ତର ଅବଶ୍ୟ ବହୁ ଘାତପ୍ରତିଘାତର ସମ୍ମୁଖୀନ ହୋଇଛି—ବିବ୍ରତ ବିଚଳିତ ହେବାର ପରିସ୍ଥିତିରେ ନିଷ୍ପେଷ ପଡ଼ୁଛି । ଜୀବନପଥର ଯାହା ସବୁ ଅବଶ୍ୟମ୍ଭାବୀ ପରିଣତି । କିନ୍ତୁ କାହିଁରେ ସୁଦ୍ଧା ତାହା ନଷ୍ଟ ହୋଇଯାଇନାହିଁ । ଚିରକାଳ ତାହା ସତେଜ, ସୁକୁମାର, ଅମଳିନ ରହି ଆସିଛି । ତାଙ୍କ ସଂସ୍ପର୍ଶରେ ଆସିଥିବା ପ୍ରତ୍ୟେକ ବ୍ୟକ୍ତିଙ୍କର ଏହା ଏକ ଅନୁଭୂତିର ସାମଗ୍ରୀ ।

ଛାତ୍ରରୂପେ, ଶିକ୍ଷକରୂପେ, ସ୍ୱାଧୀନତା ସଂଗ୍ରାମୀ ସମାଜର ସଭ୍ୟରୂପେ କିମ୍ବା କବି, ଲେଖକ ଓ ସଂପାଦକ ରୂପେ ବିଭିନ୍ନ କ୍ଷେତ୍ରରେ, କର୍ମୀ, ସଂଗଠକ କିମ୍ବା ସଭାମଣ୍ଡପରେ ବାଗ୍ମୀ ରୂପେ ତାଙ୍କ ସାକ୍ଷାତକାର ଅନେକେ ଅବଶ୍ୟ ପାଇଥିବେ । କାରଣ କର୍ମୀ, ସାଧକ, ସେବକ ତଥା କବି, ରସିକ ଓ ପ୍ରେମିକ ରୂପେ ତାଙ୍କ ପରିଚୟର ସ୍ପର୍ଶ ସେ ସର୍ବତ୍ର ଦେଇ ଯାଇଛନ୍ତି ।

କେଉଁଠାରେ ନ୍ୟାୟ ଓ ସତ୍ୟ ପାଇଁ ତାଙ୍କର ଦୁର୍ଦ୍ଦମନୀୟ ସାହସିକତା ଓ ସ୍ପଷ୍ଟବାଦିତା ଗଗନ ସ୍ପର୍ଶ କରିଛି, ଅନ୍ୟ କେଉଁଠି କ୍ଷମା ଓ ପ୍ରେମର କୋମଳତା ଅନ୍ତରର ଅତଳଗାମୀ ହୋଇଛି, କେଉଁଠି ଧନ, କ୍ଷମତା ଓ ଶକ୍ତିର ଗର୍ବକୁ ସେ ଏକ ଫୁତ୍କାରରେ ଉଡ଼ାଇ ଦେଇ ସତ୍ୟ ଓ ନ୍ୟାୟର ବିଜୟ ନିଶାଣ ସର୍ବୋପରି ଊର୍ଦ୍ଧ୍ୱକୁ ଟେକି ଧରିଛନ୍ତି, ଆଉ କେଉଁଠି ଅରକ୍ଷ ଅସହାୟ ମାତୃପିତୃହୀନ ବୁଭୁକ୍ଷିତ ଶିଶୁକୁ ନିଜ ସ୍କନ୍ଧରେ ଧରି ବନ୍ୟାଞ୍ଚଳରୁ ନେଉଥିଛନ୍ତି ।

ଛାତ୍ରମାନଙ୍କ ପ୍ରତି ଅନ୍ୟାୟ ବିଚାରର ପ୍ରତିବାଦ କରି ସେ ଶିକ୍ଷକ ଚାକିରିରୁ ଇସ୍ତଫା ଦେଇଛନ୍ତି, ପୁଣି ପ୍ରବଳ ପ୍ରତାପୀ ରାଜନୈତିକ ନେତାମାନଙ୍କ ବିରୁଦ୍ଧରେ ସୁଦ୍ଧା ଅଭିଯାନ ଆରମ୍ଭ କରି ବ୍ୟବସ୍ଥା ପରିଷଦକୁ ସଭ୍ୟ ରୂପେ ନିର୍ବାଚିତ ହୋଇଛନ୍ତି ତଥାପି ଏହି ସବୁ ପରସ୍ପର ବିରୋଧୀ କର୍ମଧାରା ମଧ୍ୟରେ ତାହାଙ୍କ ଜୀବନ-ଦର୍ଶନର ଯେଉଁ ସୂତ୍ରଟି ମିଳିଥାଏ, ତହିଁରୁ ସେ ବଡ଼ ସାଧକ, କର୍ମୀ କିମ୍ବା ତତୋଧିକ ପ୍ରେମିକ ଓ କଳ୍ପନାପ୍ରିୟ ଭାବୁକ, ତାହା ବୁଝିବା କଷ୍ଟକର । ବୋଧହୁଏ ଦୁଇଟିଯାକର ଏକ ଅପୂର୍ବ ସମନ୍ୱୟ ଘଟିଛି ଲକ୍ଷ୍ମୀନାରାୟଣଙ୍କ ଜୀବନରେ । ନିଜ କର୍ମକୁ ଯେପରି ସେ ପ୍ରେମର ମାଧୁର୍ଯ୍ୟ ରସ-ଦ୍ୱାରା ସିଞ୍ଚିତ କରି କୋମଳ ସୁନ୍ଦର କରିପାରିଥିଲେ, ତାହାର ଅନ୍ୟ ଉଦାହରଣ ଏ ଦେଶରେ ଦୁଷ୍ପ୍ରାପ୍ୟ ।

ସେବାବ୍ରତ ଓ କର୍ମପ୍ରସଙ୍ଗରେ ସେ ଯେଉଁ ପ୍ରବ୍ରଜ୍ୟା ବ୍ରତ ଗ୍ରହଣ କରିଥିଲେ, ତାହା ଯେପରି ଅନନ୍ତ, ସେହିପରି ଏକଲା, ନିଃସଙ୍ଗ ଏବଂ ଏକକ । ଏହି ପରିବ୍ରାଜକର ଦୀକ୍ଷା ଯଥାର୍ଥରେ ସେ କୌଣସିଟାରୁ ଗ୍ରହଣ କରିନାହାନ୍ତି; ଯଦିବା କୁମ୍ଭୀପାଟୁଆ କିମ୍ବା

ଅଲେଖ ଧର୍ମ ଓ ବୌଦ୍ଧ, ଜୈନ ଇତ୍ୟାଦି ଧର୍ମ ପ୍ରତି ସେ ପ୍ରକାଶ୍ୟରେ ଆକୃଷ୍ଟ ହୋଇଥିଲେ; ମାତ୍ର ସେ ଦୀକ୍ଷା ତାଙ୍କର ସେପରି ଜନ୍ମଗତ । ସେ ବାଲେଶ୍ୱରରେ ଜନ୍ମଗ୍ରହଣ ଓ ଶିକ୍ଷାରମ୍ଭ କରି ଏବଂ କଲିକତାରେ ଶିକ୍ଷା ସମାପ୍ତ କରି ଓ କଟକରେ ଶିକ୍ଷକତା ଆଦି କାର୍ଯ୍ୟ କରି ତାହା ପରେ ଭାରତର ବିଭିନ୍ନ ସ୍ଥାନ କାର୍ଯ୍ୟ ଉପଲକ୍ଷରେ ପରିଭ୍ରମଣ କରିଥିଲେ । କଟକରେ ତାଙ୍କର ନିଜର ଗୃହ ମଧ୍ୟ ଅଛି; ମାତ୍ର ସେ ଘରେ କେବେ ରହନ୍ତି କିମ୍ବା ଅନ୍ୟ କେଉଁଠି ଦିବସ ବା ରାତ୍ରି ଯାପନ କରନ୍ତି, ତାର ସ୍ଥିରତା ଜାଣିବା ସହଜ ନୁହେଁ ।

ପ୍ରବ୍ରଜ୍ୟାହିଁ ତାଙ୍କର ଜନ୍ମଗତ ଓ ବ୍ୟକ୍ତିଗତ ଧର୍ମ ହେଲେହେଁ କୌଣସି ନିର୍ଦ୍ଦିଷ୍ଟ ପନ୍ଥା କିମ୍ବା ନିର୍ଦ୍ଦିଷ୍ଟ ଗୁରୁଙ୍କଠାରୁ ସେ ଦୀକ୍ଷା ବା ମନ୍ତ୍ର ଗ୍ରହଣ କରିନାହାନ୍ତି । ଭାଗବତର ଅବଧୂତଙ୍କ ପରି ତାଙ୍କର ଗୁରୁ ଅନେକ, ସେହି କାରଣରୁ ତାଙ୍କର ତୁଳନା ଖୋଜି ପାଇବା ଅତି ଦୁରୂହ । ଯଥାର୍ଥରେ ସେ ଚିର ବସନ୍ତ ଓ ଚିର ଯୌବନର ଜୀବନ୍ତ ପ୍ରତୀକ ରୂପେ ଏ ଦେଶର ଦ୍ୱାରେ ଦ୍ୱାରେ ଆଘାତ କରି ଯାଇଛନ୍ତି, ଜଗାଇ ଯାଇଛନ୍ତି ଏକ ଅମର ଆହ୍ୱାନର ବାଣୀ ଶୁଣାଇ ଦେଇ । ସେହି ବାଣୀର ନିବିଡ଼ ଛନ୍ଦ ଏ ଦେଶରୁ କେବେହେଲେ ଲିଭିଯିବ ନାହିଁ । ସବୁରି ବୃହତ୍‌କୁ ସେ ନିଜର ବୋଲି ଜ୍ଞାନକରି ସମସ୍ତଙ୍କୁ ଜାତିଧର୍ମ ବୟସ ନିର୍ବିଶେଷରେ ଅତି ଆପଣାର କରି ପାରିଛନ୍ତି । ସେପରି ସାମର୍ଥ୍ୟ ଓ ଶକ୍ତି ଅର୍ଜନ କରିବାରେ ଆମ ଦେଶବାସୀରେ ତାଙ୍କ ଅଦ୍ୱିତୀୟ ନ କହି ହେବ ନାହିଁ ।

ଲକ୍ଷ୍ମୀନାରାୟଣ ସେପରି ସାଧକ ଓ ପ୍ରେମିକ ଥିଲେ, ସେହି ସାଧନା ଓ ପ୍ରେମ ପାଇଁ ଜୀବନବ୍ୟାପୀ ସେ ସଂଗ୍ରାମ କରିଛନ୍ତି । ଯଥାର୍ଥରେ ସେ ବିପ୍ଳବୀ ଥିଲେ ଏବଂ ସେ ବିପ୍ଳବ ଥିଲା ପ୍ରେମର ବିପ୍ଳବ । ସେଥିରେ ସେ ବିଜୟୀ ହୋଇ ଅଜାତଶତ୍ରୁ ରୂପେ ସର୍ବଶେଷରେ ପରିଚିତ । ଲକ୍ଷ୍ମୀନାରାୟଣଙ୍କ ଚରିତରେ ଭାଗବତୀୟ ସାହିତ୍ୟର ସେହି ଗୋଟିଏ ମହାନ୍ ବହୁସ୍ତରର ଚରିତ୍ର ସହିତ ଅଦ୍ଭୁତ ସାମଞ୍ଜସ୍ୟ ଦେଖାଯାଏ । ତାହା ଶ୍ରୀମଦ୍ ଭାଗବତର ଏକାଦଶସ୍କନ୍ଧରେ ବର୍ଣ୍ଣିତ ଅବଧୂତଙ୍କର ଚରିତ୍ର । ଯେଉଁ ଅବଧୂତ କେବଳ ପ୍ରେମର ବିତରଣ ଲାଗି ଭିକ୍ଷାଥାଳି ଧରି ଦ୍ୱାରେ ଦ୍ୱାରେ ବୁଲିଛନ୍ତି କୀଟ, ପତଙ୍ଗ, ଅଜଗର, ପକ୍ଷୀ, ସରୀସୃପ ଆଦି ବହୁ ଗୁରୁ ଗ୍ରହଣ କରିଛନ୍ତି, ପୁଣି ସେମାନଙ୍କ ମଧ୍ୟରେ ପିଙ୍ଗଳା ବେଶ୍ୟା ଓ ସାଲଙ୍କାରା ବ୍ରାହ୍ମଣକନ୍ୟା ମଧ୍ୟ ଅଛନ୍ତି, ସେହି ଅବଧୂତଙ୍କର ଭେଟ ଆମ୍ଭେମାନେ ସ୍ୱଚକ୍ଷୁରେ ପାଇ ଧନ୍ୟ ହୋଇଛୁ ।

"ସକଳ ସ୍ଥାନେ ମସ୍ତ ଭ୍ରମେ । ମୁଁ ଥାଇ ଅଜଗର ଧର୍ମେ ॥
ସ୍ୱର୍ଗ ନର୍କେ ବେନି ବାଣୀ । ମୁଁ ଏହା ଏକ ଧର୍ମେ ଜାଣି ॥
ଏଣୁ ମୋ ଦୁଃଖ ସୁଖ ଏକ । ସମ ମଣଇ ସର୍ବଲୋକ ॥
ଆହାରେ ଭଲ ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ॥
ସନ୍ତୋଷେ କରଇ ଆହାର । ତେଣୁ ବିଗୁର ନାହିଁ ମୋର ॥
ଅଳପେ ବହୁତେ ସନ୍ତୋଷ । ନ ମିଳେ କରେ ଉପବାସ ॥
କର୍ମକ୍ଷପଣ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ॥
ସମେ ମଣଇ ଦୁଃଖ ସୁଖ । ଅନ୍ତରେ ନ ହୋଇ ବିମୁଖ ॥"

ଲକ୍ଷ୍ମୀନାରାୟଣଙ୍କୁ ସେହି ପରମଯୋଗୀ ଅବଧୂତଙ୍କ ଯୁଗାବତାର କୁହାଯାଇ ପାରେ, ଯେ ସର୍ବକାଳର ସୁମହାନ୍ ଶିକ୍ଷା, ଦୀକ୍ଷାର ଆଦର୍ଶ ହୋଇ ରହି ପାରନ୍ତି ।

ଝିଅ ଶାନ୍ତି ମା' ବାଣୀ
ଉମର ମୁଁ ସିନା ଜଣା ।

—ଲକ୍ଷ୍ମୀନାରାୟଣ

# ଲକ୍ଷ୍ମୀନାରାୟଣ ବାବୁ

## ସରଳା ଦେବୀ

ଶ୍ରୀ ସାହୁ ମହାଶୟ ଯେଉଁ କାଳରେ ଭାରତସେବକ ସମିତିରେ ଦେଶସେବା କରିବା ପାଇଁ ନିଜ ଜୀବନ ଉତ୍ସର୍ଗ କଲେ, ସେ ସମୟରେ ସାରା ଉତ୍କଳରେ ଯୁବକମାନଙ୍କ ଭିତରେ ଚହଳ ପଡ଼ିଥିଲା । ମୋର ସେକାଳ କଥା ମନେ ଅଛି । ରେଭେନ୍‌ସା କଲେଜରେ ଯେତେବେଳେ ପଢ଼ିଲି ବାଲେଶ୍ୱରବାସୀ ଜଣେ ଗ୍ରାଜୁଏଟ ସରକାରୀ ଚାକିରି ମୋହକୁ ପାଦରେ ଠେଲି ସ୍ୱଦେଶର ସେବା କରିବା ପାଇଁ ସେହି ଜୀବନ ବରଣ କଲେ, ସେତେବେଳେ ମୋର ବିସ୍ମୟର ସୀମା ରହିଲା ନାହିଁ । ସେକାଳରେ ବି,ଏ, ଏମ ଏ, ପାସ ଯେଉଁମାନେ କରୁଥିଲେ, ସମସ୍ତେ ସେମାନେ କିପରି ଗୋରୁଖୁଆଡ଼ରେ ବନ୍ଧା ହୋଇ ଚାକିରି ଗୁହାଳରେ ରହିବେ, ଏହାର ସୁଖସ୍ୱପ୍ନ ଦେଖୁଥିଲେ । ତେଣୁ ସାହୁଙ୍କ ଆଦର୍ଶ ଓଡ଼ିଆ ଯୁବକମାନଙ୍କ ମନରେ ଗୋଟାଏ ନୂଆ ବିପ୍ଳବ ପନ୍ଥା ଖୋଲି ଦେଇଥିଲା । ସେ ଜୀବନରେ ପରାଧୀନତାକୁ ଅତିବ ଘୃଣା କରୁଥିଲେ । କିନ୍ତୁ ସକ୍ରିୟ ରାଜନୀତିକୁ ଯିବାରେ ତାଙ୍କର ଅନ୍ତର ବାଧା ଦେଉଥିଲା ।

ଗାନ୍ଧିଜୀଙ୍କ ଅହିଂସ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସ୍ୱରାଜ୍ୟ ଲାଭ ପାଇଁ ବିପ୍ଳବମୟ ପଥ ଗ୍ରହଣ କରିବାକୁ ତାଙ୍କୁ ବହୁ ବିଶିଷ୍ଟ ନେତା ଓ କଂଗ୍ରେସର ଲୋକେ କହିଥିଲେ । ମୁଁ ମଧ୍ୟ କହିଥିଲି ଆପଣ ଏ ଯୁଗରେ ଗୋଖଲେଙ୍କ ପ୍ରତିଷ୍ଠିତ ଭାରତସେବକ ସମିତିରେ ବୈତନିକ ଭାବରେ ରହି ଦେଶର ଅନ୍ଧକାର କିପରି ଦୂର କରିବେ । ଆପଣ ମାନ୍ଧାତାକାଳିଆ ମତ ଛାଡ଼ନ୍ତୁ । କିନ୍ତୁ ସେ ମୋର କଥାରେ କର୍ଣ୍ଣପାତ ନ କରି କହିଥିଲେ, ତୁମେମାନେ ତୁମ କାମ କର । ବର୍ତ୍ତମାନ ଯୁଗରେ ଦେଶର ସ୍ୱାଧୀନତା ପାଇଁ ତିଆରି କର । ଲୋକଶିକ୍ଷାର ବ୍ୟବସ୍ଥା କର । ଲୋକସ୍ୱାସ୍ଥ୍ୟ ଭଲ କିପରି ରହିବ, ଶିଶୁମାନେ ଆନନ୍ଦ ମନରେ ସୁସ୍ଥ ସବଳ ଜୀବନ କିପରି ବିତାଇବେ, ନାରୀଜାତି ଗୃହକୋଣରୁ ବାହାରି ଦୁନିଆ ଦେଖି ଦୁନିଆ ସହିତ କିପରି ସଂପର୍କ ରଖିବେ, ଆଗ ସେ କଥା ନ କରି କେବଳ ଲୁଣ ମାରି ଜେଲ ଯାଇ ମାଡ଼ ଖାଇ ଗ୍ରେଫ୍ତାରରେ ପଡ଼ି ଇଂରେଜଙ୍କୁ ତଡ଼ି ଦେଲେ କଣ ତମ ଦେଶ ସୁନାର ଦେଶ, ଧନଧାନ୍ୟ ପୁଷ୍ପଭରା ହୋଇଯିବ ? ମୁଁ ତୁମ ଗାନ୍ଧିଜୀଙ୍କ ଅସହଯୋଗ ବାଟ ପସନ୍ଦ କରେ ନାହିଁ । ବିପ୍ଳବ କରି ଦେଶ ସ୍ୱାଧୀନ କରିବାର ସ୍ୱପ୍ନ ମୁଁ ଦେଖେ ନାହିଁ, ମୋ ଆଗରେ ଶତ ଶତ ବୁଭୁକ୍ଷୁ, ରୋଗୀ, ମୂର୍ଖ ନର ନାରୀ ଚୈତନ୍ୟ ହରାଇ ପଡ଼ିଛନ୍ତି । ସେମାନଙ୍କୁ ତ ଅକ୍ଷର ପାଠ ପଢ଼ାଇବାର ସମ୍ବଳ ଓ ଶକ୍ତି ମୋଠି ନାହିଁ କି ବୁନ୍ଦାଏ ଔଷଧ ଦେଇ ସେମାନଙ୍କ ରୋଗରେ ପଥ୍ୟ ଟିକେ ଯୋଗାଇବା ମୋର ଶକ୍ତି ଭିତରେ ନାହିଁ । ସ୍ୱରାଜ୍ୟ ହୋଇଗଲେ ଦେଶରୁ ଏ ସବୁ ସମସ୍ୟା ଦିନେ ଉଭେଇଯିବ, ଏ ଭେଲିକିଲଗା କଥା ମୂର୍ଖମାନଙ୍କୁ କହ— ତମ ରାଜନୀତିକୁ ଟାଣି କାମରେ ଲଗାଅ—ମୋତେ କହନା । ମୁଁ ଏ ସବୁ ବିଶ୍ୱାସ କରେ ନାହିଁ । ସେକାଳରେ ଯେଉଁ ଉତ୍ତେଜନା ସଂଗ୍ରାମର ବାତାବରଣ ତଳେ ଭାରତ ଆତ୍ମା ସନ୍ତୁଳି ହେଉଥିଲା, ତାର ଦାହ ସାହୁଙ୍କଠାରେ ବାଜୁଥିଲା ସତ; ମାତ୍ର ସେ ନିଜର ମତ ଓ ଗତିପଥରୁ ଟିକେ ଟଳି ନ ଥିଲେ । ସେଥିପାଇଁ ତତ୍କାଳୀନ ରାଜନୈତିକ ନେତାମାନେ ତାଙ୍କୁ ଓ ତାଙ୍କ ବିଚାରକୁ ଖୁବ ପରିହାସ କରି କହୁଥିଲେ । ତାଙ୍କୁ ତାଚ୍ଛଲ୍ୟ କରୁଥିଲେ । ନେତାଏ କହୁଥିଲେ ସ୍ୱରାଜ ପାଇଲେ ଗୋଟିଏ କିମିଆଁରେ ସାହୁ କହୁଥିବା ଦେଶର ସମସ୍ୟାମାନଙ୍କର ସମାଧାନ ହୋଇଯିବ । ଆଗ ଘୋଡ଼ା ନା ଆଗ ଗାଡ଼ି । ଏ ସବୁ ଶୁଣି ମଧ୍ୟ ସାହୁ ହଲି ନ ଥିଲେ ।

ସାହୁ ସାହିତ୍ୟପ୍ରାଣ ଥିଲେ । ଉତ୍କଳ-ସାହିତ୍ୟ ସମାଜର ସମ୍ପାଦକ ଭାବରେ ସେ ବହୁ ବର୍ଷ କାର୍ଯ୍ୟ କରି ସମାଜର ଅଚଳ ଅବସ୍ଥାକୁ ସଚଳ ଓ ସକ୍ରିୟ କରିଥିଲେ । ଶ୍ରୀରାମଚନ୍ଦ୍ର-ଭବନର କବାଟ ସାହିତ୍ୟିକମାନଙ୍କର ପ୍ରବନ୍ଧାଲୋଚନା, କବିତା ପାଠ ପାଇଁ ପ୍ରତି ସପ୍ତାହରେ ତାଙ୍କର ନିର୍ଦ୍ଦେଶରୁ ଖୋଲିଯାଇ କାର୍ଯ୍ୟକାରୀ ହେଉଥିଲା । ସେ ନିଜେ ମଧ୍ୟ ବରାବର କବିତା, ପ୍ରବନ୍ଧ ଲେଖି ସମସ୍ତଙ୍କୁ ଶୁଣାଉଥିଲେ । ତାଙ୍କର ବିଦ୍ୟାନୁରାଗ ଏତେ ବେଶୀ ଥିଲା ଯେ ବୁଢ଼ା ବୟସରେ ଘରୋଇ ଭାବରେ ପାଠପଢ଼ି ସେ ଦୁଇଟି ବିଷୟରେ ଏମ୍‌ଏ ପରୀକ୍ଷା ଦେଇ ପାସ କରିଥିଲେ । ସେ ରାଜନୈତିକ, ସାହିତ୍ୟିକ ଓ ସାମାଜିକ ତଥା ସବୁ ପ୍ରକାର ସଭାମାନଙ୍କରେ ବରାବର ଯୋଗ ଦେଉଥିଲେ ଓ ଭାଷଣ ଦେଇ ଦେଶର ଜନତାକୁ ଓ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । ସାହିତ୍ୟ ସମାଜର ସମ୍ପାଦକ ଥିଲାବେଳେ ତାଙ୍କର ସାହିତ୍ୟ ପ୍ରୀତି ଯୋଗୁଁ ସେ ଘରକୁ ନ ଯାଇ ସମାଜ ଗୃହରେ ରାତିରେ ରହି ଯାଉଥିଲେ ।

ସ୍ୱର୍ଗତ ରାୟବାହାଦୁର ଶ୍ରୀ ଭିକାରୀଚରଣ ପଟ୍ଟନାୟକଙ୍କ ଘରଠାରୁ

ନିଜ ଖାଦ୍ୟ ଅଣାଇ ଖାଇ ଜଣ ଶୋଇ ଯାଉଥିଲେ । କାରଣ ତାଙ୍କ ପରୁ ଏତେଦୂରରୁ ଆସି ସାହିତ୍ୟକାର୍ଯ୍ୟ କରି ପାରିବେ ନାହିଁ ।

ଓଡ଼ିଶା ସାହିତ୍ୟ ଏକାଡେମୀର ଚେୟାରମ୍ୟାନ ଥିବାବେଳେ ସେ ବୈଠକକୁ ଆସୁଥିଲେ । ମାତ୍ର ଅନ୍ୟମାନଙ୍କ ପରି ସେ କଟକ ଘରକୁ ନ ଆସି ଭୁବନେଶ୍ୱରରେ ରହି ଏକାଡେମୀର କାର୍ଯ୍ୟ ସମ୍ପାଦନା ନମ୍ର'ର ସହିତ କରି ଯାଉଥିଲେ ।

ସେ Controversy ଓ କଳିକଜିଆ ଦ୍ୱନ୍ଦାତ୍ମକ ସମସ୍ୟାମାନଙ୍କୁ ନିଷ୍ପତ୍ତି କରୁଥିଲେ ମଧ୍ୟ ନିଜେ ସେହିସବୁ ପରିସ୍ଥିତିରୁ ଦୂରରେ ରହୁଥିଲେ । ନିଜେ ଏସବୁ ଗଣ୍ଡଗୋଳରେ ଲଗୀଦାର ବା party ହୋଇଯାଉ ନ ଥିଲେ । ତେଣୁ ସେ ସବୁଥିରେ ଥିଲେ ବି କୋଉଥିରେ ନ ଥିଲେ । ଜୀବନ ତାଙ୍କର ନିରପେକ୍ଷ ଥିଲା । କେବେହେଲେ କାହାରିକୁ ଗାଳିଦେବା, ନିନ୍ଦିବା କଥା ତାଙ୍କଠି ନ ଥିଲା କିମ୍ବା କୌଣସି ଉତ୍ତେଜକ ଘଟଣାବଳୀ ତାଙ୍କ ଚିତ୍ତବୃତ୍ତିରେ ରେଖାପାତ କରି ତାଙ୍କୁ ବିଚଳିତ କରୁ ନ ଥିଲା । ପରିବାରରେ ତାଙ୍କ ପ୍ରିୟ ଶାନ୍ତିକୁ ସେ ଅତି ସ୍ନେହ କରୁଥିଲେ ଏବଂ ପାରିବାରିକ ସମ୍ପର୍କ ଓ ବନ୍ଧନ ଭିତରେ ନିଜକୁ କେବେ ସେ ବୁଡ଼େଇ ରଖୁ ନ ଥିଲେ । ସବୁବେଳେ ଲୋକଙ୍କ ଦୁର୍ଦ୍ଦଶା ଆଦିବାସୀଙ୍କ ଦୁର୍ଦ୍ଦଶା ଶୁଣି ସେ ଦୁଃଖ କରୁଥିଲେ ଏବଂ କୌଣସି ଲୋକଙ୍କ ବିପଦ କଥା ଶୁଣି ଉଦାସୀନ ଭାବରେ "ମୋର କଅଣ ଅଛି—ମୋର କଅଣ ଗଲା" ବୋଲି କହି ନିଜର ନିଷ୍କ୍ରିୟତା, ସ୍ୱାର୍ଥପରତା ଓ ପଶ୍ଚାତ୍‌ଗାମୀ ମନୋବୃତ୍ତିତଳେ ଆଶ୍ରୟ ନେଇ 'ସାଧୁତ୍ୱ' ଦେଖାଇବାକୁ ବସୁରୁ ନ ଥିଲେ ।

ପରେ ତାଙ୍କର ଝିଅ ମରିଯିବାରୁ ସେ ଦାରୁଣ ଆଘାତ ପାଇ ମଧ୍ୟ ନିଜକୁ ସମ୍ଭାଳି ନେଇଥିଲେ । ବୃଦ୍ଧାବସ୍ଥାର ଦୁଃଖ ଦେଇ, ନାରୁଣୀର ଦୁଃଖ ଦେଇ ସେ ଟିକିଏ ପ୍ରକୃତିସ୍ଥ ହୋଇଥିଲେ ।

ସେ ସଦାବେଳେ ଖଦୀ ପିନ୍ଧୁଥିଲେ ଓ ବିଳାସବ୍ୟସନ ଜୀବନପଦ୍ଧତିକୁ ଘୃଣା କରୁଥିଲେ । ଅତି ନିରାଡ଼ମ୍ବର ତାଙ୍କର ବେଶ ଓ ଚାଲିଚଳଣି ଥିଲା । ସବୁ ଝିଅ ପୁଅଙ୍କୁ ସେ ଆଦର ଓ ଉତ୍ସାହ ଦାନ କରୁଥିଲେ । ସାନ ପିଲାମାନଙ୍କୁ ମଧ୍ୟ ସ୍ନେହ କରୁଥିଲେ ।

ଏବେ ଦୁ'ଅକ୍ଷର ପଢ଼ି ଯେଉଁମାନେ ଅଧପାଠୁଆ ବା ପାଠୁଆ ହୋଇଛନ୍ତି, ସେମାନଙ୍କର ବୃଥା ଆତ୍ମାଭିମାନ ଓ ଆତ୍ମମ୍ଭରିତା, ଗର୍ବ ଓ ଔଦ୍ଧତ୍ୟ ଗୁରୁଜନମାନଙ୍କ ଅବାଧ ହେବା ଅଶାଳୀନ ଗାଢ ଦେଖି ସେ ବଡ଼ ଦୁଃଖିତ ହୋଇ କହୁଥିଲେ । ମାତ୍ର ସେ ଏତେବଡ଼ ପ୍ରବୀଣ ବିଦ୍ୱାନ ଥାଇ ମଧ୍ୟ ତାଙ୍କର ବିଦ୍ୟା ଓ ଜ୍ଞାନର ପରିଚୟ ଦେବାକୁ କୁଣ୍ଠାବୋଧ କରୁଥିଲେ ଏବଂ ନିଜର ବିଦ୍ୟା ଓ ଜ୍ଞାନର ପରିଚୟ ନ ଦେଇ ଲୁଚାଇ ରଖୁଥିଲେ ଓ ନିଜକୁ "ଜଣେ ମୂର୍ଖଲୋକ" ବୋଲି ମଧ୍ୟ କେବେ କେବେ କେତେକଙ୍କ ଆଗରେ କହୁଥାନ୍ତି । ଏପରି ସୁମହାନ୍ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ଆମର ଲକ୍ଷ୍ମୀନାରାୟଣ ସାହୁ ମହାଶୟ ।

ଓଡ଼ିଆ ରାଜ୍ୟ ଏକ ଶାସନରେ ରହି ଓଡ଼ିଆ ଭାଷା, ଓଡ଼ିଆ ଧନ ଓ ଓଡ଼ିଆଙ୍କର ଜାତୀୟ ଜୀବନ କିପରି ବିକାଶ ଲାଭ କରିବ, ଏଥିନିମନ୍ତେ ସେ ଉତ୍କଳ ପ୍ରଦେଶ ଆନ୍ଦୋଳନରେ ଅପ୍ରତ୍ୟକ୍ଷ ଭାବରେ ନିଜର କର୍ମ ଓ ଭାବଧାରାକୁ ମିଶାଇ ଦେଇଥିଲେ । ବିଚ୍ଛିନ୍ନ ଉତ୍କଳର ଏକତ୍ରୀକରଣ, ଉତ୍କଳ ସମ୍ମିଳନୀର ପୁନର୍ଗଠନ ଓ କାର୍ଯ୍ୟ ପ୍ରଭୃତିରୁ ସେ ନିଜକୁ କେବଳ ଦ୍ରଷ୍ଟା ଭାବରେ ଅଲଗା କରି ରଖୁ ନ ଥିଲେ । ଜାତୀୟ କର୍ମଧାରାରେ ସେ ନିଜକୁ ସର୍ବତୋଭାବେ ହଜାଇ ଦେଉଥିଲେ ।

ଓଡ଼ିଆ ଭାଷା ଓ ସାହିତ୍ୟ ତଥା କଳାର ଅବନତି ଦେଖି ସେ ଶାନ୍ତହୋଇ ରହୁ ନ ଥିଲେ । ଓଡ଼ିଆ ଭାଷାକୁ ବଡ଼ କରିବା ଓ ବଞ୍ଚାଇ ରଖିବା ପାଇଁ ତାଙ୍କର ଚେଷ୍ଟା ବରାବର ରହିଥିଲା ।

ସେ ଏପରି ବିନୟୀ ଓ ମିଶୁକ ଥିଲେ ଯେ ସବୁ ବର୍ଣ୍ଣର ଲୋକଙ୍କୁ ଆପଣାର କରି ପାରୁଥିଲେ । ଯେଉଁମାନେ ତାଙ୍କୁ ନିମନ୍ତ୍ରଣ କରୁଥିଲେ, ସେମାନଙ୍କ ଘରେ ଜାତି ବା ପଦମର୍ଯ୍ୟାଦା ବିଗ୍ଭର ନ କରି ସେ ସମସ୍ତଙ୍କ ଘରେ ଆନନ୍ଦରେ ଭୋଜନ କରୁଥିଲେ ।

ତାଙ୍କପରି ଲୋକ ଏ ଯୁଗରେ ବିରଳ । ତାଙ୍କର ଆଦର୍ଶକୁ ଯୁବକମାନେ ଗ୍ରହଣ କଲେ ଭାରତବର୍ଷର ସେବା ସର୍ବାଧିକ ଭାବରେ ଦେଶପ୍ରେମୀ ଯୁବକ ଯୁବତୀମାନେ କରି ପାରିବେ । ଜୀବନରେ କଳାକୁ ସେ ଆଦର କରୁଥିଲେ ।

ଏ ଯୁଗରେ ତାଙ୍କର ତିରୋଧାନ ଆମ୍ଭମାନଙ୍କ ପକ୍ଷରେ ଅତି କଷ୍ଟଦାୟକ ହୋଇଛି

---

# ସ୍ମୃତି-ତର୍ପଣ

## ଶ୍ରୀ ଚିନ୍ତାମଣି ମିଶ୍ର

ଏ ମାସରେ ଆମ ରାଜ୍ୟର ତିନିଜଣ ବିଶିଷ୍ଟ ବ୍ୟକ୍ତିଙ୍କ ଇହଲୀଳା ସାଙ୍ଗ ହୋଇଛି । ସେମାନେ ୰ ଲକ୍ଷ୍ମୀନାରାୟଣ ସାହୁ, ୰ ଅପର୍ଣ୍ଣା ଦେବୀ, ଓ ୰ ମହେନ୍ଦ୍ର ପଟ୍ଟନାୟକ । ସଂସାରରେ ଯିବାଆସିବା ଲାଗିଛି । ସେମାନଙ୍କର ସ୍ଥାନ ଅପୂର୍ଣ୍ଣ ରହିବ ବୋଲି ମନରେ ଭାବିବା ଚରମ ନାସ୍ତିକତା ବୋଲି ସମସ୍ତେ କହନ୍ତି । ଭଗବାନଙ୍କର ଅଘଟଣ-ଘଟଣ-ପଟୀୟସୀ ଲୀଳାରେ ଅଧର୍ମ ଗର୍ଭରୁ ଧର୍ମର ଜନ୍ମ ଯେପରି ସମ୍ଭବ, କାଳର ଆବର୍ତ୍ତିରେ ଅଯୋଗ୍ୟ ପରେ ଯୋଗ୍ୟର ଆବିର୍ଭାବ ସେହିପରି ସମ୍ଭବ । ଏବେ ଯେଉଁମାନେ ଚାଲିଯାଇଛନ୍ତି, ସେମାନଙ୍କଠାରୁ ଯୋଗ୍ୟତର ଓ ଶ୍ରେଷ୍ଠତର ବ୍ୟକ୍ତି ଆମର ଏ ପୁଣ୍ୟଭୂମିରେ ଜନ୍ମ ହେବେ, ହୁଏତ ସେମାନଙ୍କ ମୃତ୍ୟୁଦିନ ହିଁ ଜନ୍ମହୋଇ ସାରିବେଣି । ଏହି କଥା ସ୍ମରଣ କରି ପ୍ରିୟଜନଙ୍କ ମୃତ୍ୟୁ ଶୋକର ଅପନୋଦନ କରିବା ବିଧି ଆମର ସ୍ମୃତିରେ ଅଛି । ଏସବୁ ସତ୍ତ୍ୱେ ଉଲ୍ଲିଖିତ ମୃତାତ୍ମାମାନଙ୍କର ଦଶାହ ଗତ ହୋଇଥିଲେହେଁ ସେମାନଙ୍କ ଅଭାବ ମନରେ ଗୋଟାଏ ଗୋଟାଏ ଦାଗ ପରି ଅଦ୍ୟାପି ରହିଛି; ମନେହୁଏ, ଅନେକ ଦିନ ରହିବ ।

୰ ଲକ୍ଷ୍ମୀନାରାୟଣ ସାହୁଙ୍କପରି ଲୋକ ସଂସାରରେ ଅତି ବିରଳ । ସେ ଉଚ୍ଚଶିକ୍ଷିତ ଥିଲେ; କିନ୍ତୁ ତାହା ବୋଲି ତାଙ୍କ ମନରେ କିଞ୍ଚିନ୍ମାତ୍ର ଅହଙ୍କାର ନ ଥିଲା । ଜୀବନର ବହୁବର୍ଷ ସେ କୌଣସି ନା କୋଣସି ଉତ୍କଟ ବ୍ୟାଧି ଯୋଗୁଁ କଷ୍ଟ ପାଉଥିଲେ; କିନ୍ତୁ ବ୍ୟାଧି ତାଙ୍କ କାର୍ଯ୍ୟରେ ବାଧା ଦେଇପାରି ନ ଥିଲା । ଧନର ମୋହ ଛାଡ଼ି ନିଃସ୍ୱାର୍ଥ ଜୀବନ ବରଣକରି-ନେଇଥିବାରୁ ଜୀବନତମାମ ସେ ଅଭାବ ଅନାଟନ ଭିତରେ କଟାଇ ଯାଇଛନ୍ତି; କିନ୍ତୁ ନିଜର ସମସ୍ତ ଅଭାବ ଅସୁବିଧା ଭିତରେ ଅନ୍ୟର ଦୁଃଖ ଦୂର କରିବାକୁ ସେ ଯେପରି ଉତ୍ସାହ ଓ ଆଗ୍ରହରେ ବାହାରି ପଡ଼ୁଥିଲେ, ତାହା ତାଙ୍କଠାରୁ ବହୁଗୁଣରେ ସମର୍ଥ ଓ ସଚ୍ଛଳ ବ୍ୟକ୍ତିମାନଙ୍କଠାରେ ଦେଖାଯାଏ ନାହିଁ । ସେ ତାଙ୍କ ଜୀବନରେ ଦେଖାଇ ଯାଇଛନ୍ତି ମନ ଥିଲେ, ମଣିଷର ଗତିପଥରେ ଅନ୍ୟ କୌଣସି ଅଭାବ ଅନ୍ତରାୟ ହୋଇ ଠିଆହୋଇ ନ ପାରେ । ୰ ଲକ୍ଷ୍ମୀନାରାୟଣଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଯେ ଆସିଛି, ସେ ତାଙ୍କଦ୍ୱାରା ପ୍ରଭାବିତ ହୋଇଛି ଓ ସେ ପ୍ରଭାବର ସୁଫଳ ସେ ପାଇଛି ବୋଲି ମୁଁ ନିଜ ଅଭିଜ୍ଞତାରେ ଜାଣେ ।

ମୋର ଭାଗ୍ୟ, ମୋର ଛାତ୍ର-ଜୀବନରୁ ମୁଁ ତାଙ୍କ ସମ୍ପର୍କରେ ଆସିଥିଲି । ୧୯୨୭ ଖ୍ରୀଷ୍ଟାବ୍ଦର ଘଟଣା । କଟକ ଜିଲାର ଗୋଟିଏ ଦରିଦ୍ର ଛାତ୍ର ପାଇଁ କିଛି ସାହାଯ୍ୟ କରାଇ ଦେବାକୁ ମୁଁ କଟକ ସହରରେ କେତେଜଣ ବିଶିଷ୍ଟ ଧନୀ ଓ ମାନୀ ଲୋକଙ୍କର ଦ୍ୱାରସ୍ଥ ହୋଇ ନିରାଶାରେ ଫେରୁଥାଏ । ବିଶେଷକରି ମୋର ଜଣେ ପରମ-ଆରାଧ୍ୟ ବ୍ୟକ୍ତିଙ୍କର କୃପଣତା ମୋତେ ବିଶେଷ ଉଦ୍‌ବେଳିତ କରି ପକାଇଥାଏ । ନିମଚଉଡ଼ି ଛକ ଉପରେ ୰ ଲକ୍ଷ୍ମୀନାରାୟଣଙ୍କ ସଙ୍ଗେ ଦେଖା ହୋଇଗଲା । ମୋର ବିକ୍ଷୋଭର କାରଣ ଶୁଣି ସେ ମୃଦୁ ମୃଦୁ ହସିଲେ ଓ କହିଲେ, "ଭାତ ହାଣ୍ଡିରୁ ଗୋଟିଏ ଚିପିଦେଲେ ସମସ୍ତଙ୍କ ଅବସ୍ଥା ଜଣାଯାଏ ବୋଲି ବିଚାରିଛ ପରା ! ଜଣେ ଦୁଇଜଣ ନାହିଁ କରିଦେଲେ ବୋଲି ଏତେ ରାଗ କାହିଁକି ?" ଏହା କହି ସେ ଆମ ଦୁହିଁଙ୍କୁ ସାଙ୍ଗରେ ଧରି ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କ ପାଖକୁ ଗଲେ; ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜାଙ୍କ ପାଖକୁ ଯିବାକୁ ନିର୍ଦ୍ଦେଶ ଦେଲେ; କହିଲେ, "ଯା ପରେ ଆଉ ଯାହା ଦରକାର, ତାହା ମୁଁ ଦେବି ।" ଏହି ପ୍ରତିଶ୍ରୁତି ଅନୁସାରେ ତାଙ୍କର ମାସକୁ ତିନିଟଙ୍କା ଦେବାର କଥା । ସେ ସେତେବେଳର ଭାରତସେବକ ସମିତିରୁ କେତେ ପାଉଥାନ୍ତି ଆମମାନଙ୍କୁ ଅଗୋଚର ନ ଥିଲା । ମଝିରେ ମଝିରେ ତାଙ୍କ ଘରକୁ ଯାଉଥିବାରୁ ସେ ପଇସା ଅଭାବରେ କିପରି ହାଣ୍ଡି ହେଉଥାନ୍ତି ଆଖିରେ ଦେଖୁଥାଉଁ । ଦୁଇ ମାସପର୍ଯ୍ୟନ୍ତ ମୁଁ ବା ସେ ପିଲାଟି ଘରକୁ ନ ଯାଇ ଲୁଚିଲୁଁ । ଦିନେ ରାତିଟାବେଳେ ସେ ଆସି ଆମ ମେସ୍‌ରେ ପହଞ୍ଚିଲେ ଓ ନିଜ ଅଣ୍ଟିରୁଣିଆ କୋଟର ଏକାଧିକ ପକେଟ ଭିତରୁ ନୋଟ୍, ଟଙ୍କା ଓ ରେଜାରେ ସାତଟଙ୍କା ଦଶଅଣି ବାହାର କରି ମୋ ଆଗରେ ରଖି ତାଙ୍କର ଦେୟ କେତେ ବୋଲି ପଚାରିଲେ । ଦୁଇମାସର ଦେୟ ଛଅଟଙ୍କା ଶୁଣି ଟଙ୍କାଟିକର ରେଜା ପୁଣି ପକେଟସ୍ଥ କରି ଯାଉ ଯାଉ କହିଲେ, 'ମାସକୁ ମାସ ମୋର ଦେୟ ଆଦାୟ କରି ପାରିଲେ ମୋତେ ଅଡ଼ୁଆ ହେବନାହିଁ ।' ମୁଁ

ଜାଣେ, ସେ ଦିନ ସେଇ ସାତୋଟି ଟଙ୍କା ବ୍ୟତୀତ ତାଙ୍କର ଆଉ ସମ୍ବଳ ନ ଥିଲା ।

କେତେ ବର୍ଷ ପରେ ଏଇଭଳି ଅଭାବ ଭିତରେ ତାଙ୍କର ମନେ ହେଲା, କ୍ଷୀଣାୟୁ 'ବୈତରଣୀ' ଇଂରାଜୀ ମାସିକକୁ ପୁନର୍ଜୀବନ ଦେବେ । ମୁଁ ତାହା ଛପିବ ବୋଲି ସ୍ଥିର ହେଲି । କଥାପ୍ରସଙ୍ଗରେ ମୁଁ କହିଲି, "ଛ'ମାସ ଯାଇଥିବ କି ନାହିଁ, କାଗଜ ଖର୍ଚ୍ଚ ଦେଇ ପାରିବେ ନାହିଁ, କାଗଜଟି ବନ୍ଦ ହେବ । ତା' ଅପେକ୍ଷା ଏ କାର୍ଯ୍ୟରୁ ଏକାବେଳକେ ବିରତ ହେବା ଉଚିତ ।" ନମ୍ରସ୍ୱରରେ ସେ ଉତ୍ତର ଦେଲେ, "ତୁମେ ଯେପରି ହାତେ ମାପି ଗୃହଣ୍ଡେ ଗୃଲିବାକୁ ପରାମର୍ଶ ଦେଉଛ, ସମସ୍ତେ ଯଦି ସେହିପରି କରି ବସନ୍ତି, ତେବେ କେବଳ ମୁଠିଏ ମୁଠିଏ ଖାଇବା ବ୍ୟତୀତ ସଂସାରରେ କେବେ କିଛି ହୋଇପାରିବ ନାହିଁ ।" ମୁଁ ତୁନି ହେଲି । 'ବୈତରଣୀ' ସେଥର ଛ'ମାସ ମଧ୍ୟ ବଞ୍ଚିଲା ନାହିଁ । କିନ୍ତୁ ତାଙ୍କର ଉତ୍ସାହ ସେହିପରି ଜୀବନ୍ତ ଥାଏ । ସେ ଚେଷ୍ଟା କରୁଥାନ୍ତି, କାଗଜ ଦୁଇ ରିମ୍ କିଣିବାକୁ ପଇସା ସଂଗ୍ରହ କରି ପାରିଲେ, ପୁଣି 'ବୈତରଣୀ' ଛପା ହେବ । 'ବୈତରଣୀ' କିଛିଦିନ ପରେ ପୁଣି ଦୁଇ ତିନି ମାସ ଆବିର୍ଭୂତ ହୋଇ ଛପିଲା; କିନ୍ତୁ ତା'ରି ଯୋଗୁଁ ଲକ୍ଷ୍ମୀନାରାୟଣ ବାବୁଙ୍କ ଆଶୀର୍ବାଦତା ମୋ'ଠାରୁ ସହିମିଲି ଓ 'ମୁଁ ହାତେ ମାପି ଗୃହଣ୍ଡେ ଗୃଲିବା' ନୀତି ଛାଡ଼ି 'ଡୋଳେ ପିଇ, ଦଣ୍ଡେ ଜୀଇଁ' ମତର ସମର୍ଥକ ହୋଇଗଲି ।

ସ୍ୱାଗ କେତେବର୍ଷ ପରେ । ୧୯୩୯ ଖ୍ରୀଷ୍ଟାବ୍ଦରେ ଆମ ଗାଁଟି ବନ୍ୟାସୋତ୍ରେ ପୋଡ଼ିଗଲା । ତିନି ଦିନରେ ଖବରକାଗଜରେ ଏ ସଂବାଦ ଖୁବ୍ ସଂକ୍ଷେପରେ ବାହାରିଲା । ତା'ପର ଦିନ ସକାଳେ ଲକ୍ଷ୍ମୀନାରାୟଣ ବାବୁ ଆସି ଆମ ଗାଁରେ ହାଜର । ସବୁଠାରୁ ଅକିଞ୍ଚନ ପଚିଶଟି ପରିବାରକୁ ପାଞ୍ଚଟଙ୍କା ଲେଖାଏଁ ସାହାଯ୍ୟ ସର୍ବପ୍ରଥମେ ଦେବୁ ବୋଲି ଆମ 'ଘରପୋଡ଼ିଆ'ସାକ ବସି ଯୋଜନା କରୁଥାଉଁ । ଲକ୍ଷ୍ମୀନାରାୟଣ ବାବୁ ଆଗୁଡ଼ାପଡ଼ି କହିଲେ, "ପ୍ରଥମ ଦଶଟି ପରିବାର ମୋର" । ସେଇଦିନ ତାଙ୍କର ସାଙ୍ଗରେ ଯାଇ ପୋଡ଼ିଆ ଘରରୁ ସମସ୍ତଙ୍କ ପାଇଁ ବାଉଁଶ କିଣିଲୁଁ । ଗାଁ ଭିତରେ ବୁଲୁ ବୁଲୁ ସେ ଲକ୍ଷ୍ୟକଲେ, ଗାଁର ୩୦ ଜଣ ତନ୍ତୀଙ୍କର ତନ୍ତସଜ ପୋଡ଼ିଯାଇଛି । ସାଙ୍ଗେ ସାଙ୍ଗେ ସେ ସିଦ୍ଧାନ୍ତ କରିଦେଲେ, ଚୌଦ୍ୱାରରେ ଅଚଳହୋଇ ପଡ଼ିଥିବା ତାଙ୍କ ତନ୍ତଶାଳ ସବୁ ଆମ ଗାଁ ତନ୍ତୀଙ୍କୁ ଦେଇଦେବେ । ମୁଁ କୌତୁକରେ କହିଲି, "ଏମାନଙ୍କ ତନ୍ତସଜ ପୋଡ଼ିଯିବାରୁ ଆପଣଙ୍କର ବହୁତ ଲାଭ ହେଲା । ଚୌଦ୍ୱାର ତନ୍ତଶାଳ ଯେଉଁତକ ଜାଗା ମାଡ଼ି ବସିଥିଲା, ସେତକ ଅନ୍ୟ କାମରେ ଲଗାଇ ପାରିବେ ।" ଶୁଣିଲି ସେଠାରେ ଗୋଟିଏ ହରିଜନ ବିଦ୍ୟାଳୟର ଯୋଜନା ହୋଇ ସାରିଥାଏ ।

ତାଙ୍କ ମୃତ୍ୟୁ ଖବର ପାଇଲାଦିନୁଁ ଏଇପରି କେତେ ଘଟଣା ମନେ ପଡ଼ୁଛି । କୋଟି କୋଟି ଟଙ୍କାରେ ଯୋଜନା ତିଆରି ହେଉଥିଲାବେଳେ, ଲୋକଙ୍କୁ ଲକ୍ଷ ଲକ୍ଷ ଟଙ୍କା ସାହାଯ୍ୟ ମିଳୁଥିବାବେଳେ, ଏସବୁ କଥା ଅତି ତୁଚ୍ଛ ବୋଲି ମନେ ହୋଇପାରେ, କିନ୍ତୁ ଟିକିଏ ତଳେଇ କରି ବିଗ୍ଭରିଲେ ମନେହୁଏ, ଲକ୍ଷ୍ମୀନାରାୟଣ ବାବୁଙ୍କର ଯୋଜନାହୀନ ସାହାଯ୍ୟ ଓ ସହାନୁଭୂତିର ଫଳ, ବହୁ ଅର୍ଥବ୍ୟୟରେ ହେଉଥିବା ଯୋଜନାର ଫଳଠାରୁ ଢେର ଅଧିକ । ଏହା ଦ୍ୱାରା ଧନବୃଦ୍ଧି ହୋଇପାରେ; କିନ୍ତୁ ତା'ଦ୍ୱାରା ମନର ପୁଷ୍ଟି ହେଉଥିଲା । 'ମନୋମୟ ମିଦଂ ଜଗତ୍' ।

ଲକ୍ଷ୍ମୀନାରାୟଣ ବାବୁଙ୍କ ମନର ବଳ କେତେ ଅଧିକ, ତାହା ତାଙ୍କର ବନ୍ଧୁ ସମସ୍ତଙ୍କୁ ଜଣା । ଶ୍ୱାସରୋଗ ଯୋଗୁଁ ତାଙ୍କୁ ରାତି ରାତି ଉଜାଗର ରହିବାକୁ ପଡ଼େ । ଧଇଁ ସେଲୁଥାଏ, କିରାସିନ ପଟା ବାକସ ଉପରେ ମାଣ୍ଡି ଥୋଇ ତା'ରି ଉପରେ ଓଠ ରଖି ସେ ଅସ୍ୱସ୍ତି ସଙ୍ଗେ ସଂଗ୍ରାମ କରୁଥାନ୍ତି; ସଙ୍ଗେ ସଙ୍ଗେ ଏମ୍. ଏ. ପାଠ୍ୟପୁସ୍ତକ ସଙ୍ଗେ ସଂଗ୍ରାମ ଗ୍ଭଲିଥାଏ । ଏଇ ଅବସ୍ଥାରେ ପରୀକ୍ଷା ଦେଇ ସେ ଗୃରୋଟି ବିଷୟରେ ଏମ୍. ଏ. ପାସ୍ କରିଥିଲେ । ଶେଷବାର ପରୀକ୍ଷା ଦେଲାବେଳକୁ ତାଙ୍କ ବୟସ ପଚାଶରୁ ବେଶୀ । ପରୀକ୍ଷା ଫଳ ବାହାରିବାର କିଛି ଦିନ ପରେ ମୁଁ ତାଙ୍କୁ ବିଦ୍ରୂପ କରି କହିଲି, "ଆଉ ଗୋଟିଏ ରାମାନନ୍ଦୀ ତିଳକ କାଟିଦେଲେ ସରି ?" (ସେ ସବୁଥର ତୃତୀୟ ଶ୍ରେଣୀରେ ପାସ୍ କରିଥିବାରୁ, ରୋମାନ୍ ତିନି ଅଙ୍କ ସଙ୍ଗେ ରାମାନନ୍ଦୀ ଚିତାର ରୂପ-ସାଦୃଶ୍ୟକୁ ଲକ୍ଷ୍ୟକରି ଶ୍ଳେଷ) । ସେ ନିର୍ବିକାରଭାବେ ଉତ୍ତର ଦେଲେ, "ରାମାନନ୍ଦୀ ତ ପୁଣି ମୋଟାଏ ଚିତା, ତୁମେ ସେଥିରୁ ଗୋଟାଏ କାଟ ।" ମୋର ସେତେବେଳକୁ ୩୫ ବର୍ଷ । ପରୀକ୍ଷା ଦେବାର ମନ ବେଳେ-ବେଳେ ନ ହେଉଥାଏ ନୁ-ହଁ; କିନ୍ତୁ ଏଭଳି ପରିଣତ ବୟସରେ ଏତେ ଜଞ୍ଜାଳ ଭିତରେ ପରୀକ୍ଷା ପାଇଁ ପ୍ରସ୍ତୁତ ହେବ କେତେବେଳେ ! ମୋ'ଠାରୁ ମନଟାଣ, ଉଦ୍ୟମୀ ଅନେକ ବନ୍ଧୁ ଲକ୍ଷ୍ମୀନାରାୟଣ ବାବୁଙ୍କଦ୍ୱାରା ପ୍ରଭାବିତ ହୋଇ ଘରୋଇ ଭାବରେ ଏମ୍. ଏ. ପରୀକ୍ଷା ଦେଇଛନ୍ତି ।

ଏବେ ବର୍ଷକ ପୂର୍ବର କଥା । 'ନବଜୀବନ'ରେ ଛପା ହେବା ପାଇଁ ଗୋଟିଏ ଲେଖା ଦେବାକୁ ସେ ଆସିଥାନ୍ତି । ଶ୍ୱାସର ପ୍ରକୋପ ବଢ଼ିଥାଏ । ସେ ଆସି ପହଞ୍ଚିଲାବେଳକୁ ମୁଁ ଗାଁକୁ ଯିବାକୁ ବାହାରୁଥାଏ । ସେ ବାହାରିଲେ ମୋ ସଙ୍ଗେ ଆମ ଗାଁକୁ ଯିବାକୁ । ତାଙ୍କୁ ନିବର୍ତ୍ତାଇବାକୁ କହିଲି, "କଟକ

ଓ କଟଣୀ ଉଭୟଠାରେ ଦିନେ ଦିନେ ଆକାଶ ମାର୍ଗରେ ( Overbridge ) ଯିବାକୁ ପଡ଼ୁଛି ।" ସେ ଉତ୍ତର ଦେଲେ, "ଧୀରେ ଧୀରେ ଗଲେ କିଛି ଅସୁବିଧା ହେବନାହିଁ ।" ଏ କଥାକୁ ଆଉ ଉତ୍ତର କ'ଣ ? ତାଙ୍କୁ ସାଙ୍ଗରେ ନେଲି । ଦକ୍ଷିଣ ଗାଡ଼ିରେ ପ୍ରଥମ ଶ୍ରେଣୀରେ ମଧ୍ୟ ବସିବାକୁ ଜାଗା ମିଳିଲା ବହୁତ କଷ୍ଟରେ । ଆମ ଷ୍ଟେସନର ନମ୍ବର ପ୍ଲାଟ୍‌ଫର୍ମକୁ ଓହ୍ଲାଇ ଓହ୍ଲାଉ ପଡ଼ିଯାଇଥାନ୍ତେ । ବାଟରେ ଶଗଡ଼ଗାଡ଼ିରେ ଯାଉ ଯାଉ କହିଲି, "ଏଭଳି ଅବସ୍ଥାରେ ଘରୁ ଗୋଡ଼ କାଢ଼ି ଆସିବା ଠିକ୍ ନୁହେଁ । ସେ ହସି ହସି କହିଲେ, "ଘରକୁ ପଶି ଯାଉଥାଇଁ !" ମୋତେ ବୁଝାଇବାକୁ ଚେଷ୍ଟା କଲେ, ଶ୍ୱାସ ବେଶୀ ହେଲାବେଳେ ବୁଲାବୁଲି କଲେ ମନ ଆନମାନ ହୋଇଯାଏ । ମୁଁ ଏ ତତ୍ତ୍ୱ ବୁଝିପାରିଲି ନାହିଁ । ଏତିକିରେ ସରିଲା ନାହିଁ । ମୋ ସଙ୍ଗେ ମୋ ଘରେ ଦୁଇଦିନ ରହିବା ପରେ କହିଲେ, 'ଶଗଡ଼ ସୁବିଧା କଲେ ଟିକିଏ ଖୋର୍ଦ୍ଧା ଯାଆନ୍ତି । ସେଠାରେ ଜଣେ ପ୍ରିୟ ଲୋକ ଅଛନ୍ତି । ପାରିଲେ ସେଠାରୁ ବସ୍‌ରେ ଭୁବନେଶ୍ୱର ହୋଇ କଟକ ଯା'ନ୍ତି ।' ସେ ଶଗଡ଼ରେ ବସିଲାବେଳେ କହିଲି, "ଆପଣ ଯେପରି ହେଉଛନ୍ତି ବାଟରେ ମୋ ଶଗଡ଼କୁ ହତ୍ୟାଦୋଷ ଲାଗିବ ।" ସେ କହିଲେ, ଶଗଡ଼ ଫେରିଲେ, ତୁମେ ନିଜେ ମୋର ସଂସ୍କାର କରି ଦେବ; ଘରକୁ ଖବର ଦେଇ ଦେବ ଓ ଖବର କାଗଜକୁ ସମ୍ବାଦ ଦେଇଦେବ । ଏଥିରେ କ'ଣ ଦୋଷ କଟିବ ନାହିଁ ?" ମୁଁ ଅଭିଭୂତ ହୋଇଗଲି । ମନେମନେ ଭଗବାନଙ୍କୁ ଡାକିଲି, ଜୀବନକୁ ଏଇପରି ତୁଚ୍ଛ ମନେ କରିବାକୁ ମୋତେ ଶକ୍ତି ଦିଅ । ତା'ର ତିନିଦିନ ପରେ କଟକରେ ଆସି ଦେଖିଲି, ମୋର ସଦ୍ୟ ଛପା ହୋଇଥିବା ଖଣ୍ଡିଏ ଗଳ୍ପ ପୁସ୍ତକ ଉପରେ ତାଙ୍କର ଦୀର୍ଘ ମୁଖବନ୍ଧ । ମୁହଁ ପାଖରୁ ତିନିଇଞ୍ଚ ଦୂରରେ ବହି ନ ରଖିଲେ ସେ ପଢ଼ି ପାରୁ ନ ଥାନ୍ତି । ଧରିଁ ପେଲୁଥାଏ । ମୁଁ ତାଙ୍କୁ ସମ୍ମାନ ଦେଖାଇ ବହି ଖଣ୍ଡିଏ ଦେଇଥିଲି, ପଢ଼ିବାକୁ ନୁହେଁ । ମୁଖବନ୍ଧରୁ ଦେଖିଲି, ବହିର ବାରଟା-ଯାକ ଗପ ସେ ତନ୍ନତନ୍ନ କରି ଦେଖିଛନ୍ତି । ଏଭଳି ଲୋକ ଯେଉଁ ମାଟିରେ ଗୋଡ଼ ଦିଅନ୍ତି, ତାହା ପୁଲକିତ ହେବାର କଥା । ଆଜି ତାଙ୍କ ପ୍ରସଙ୍ଗରେ ଗୋଟିଏ ସଂସ୍କୃତ ଶ୍ଳୋକ ମନେ ପଡ଼ୁଛି :—

ଯେ ଦୀନେଷୁ ଦୟାଲବଃ ସ୍ପୃଶତି ଯାନ୍
ଅଲ୍ପୋଽପି ନ ଶ୍ରୀମଦୋ
ବ୍ୟଗ୍ରା ଯେ ଚ ପରୋପକାରକରଣେ
ହୃଷ୍ୟନ୍ତି ଯେ ଯାଚିତାଃ
ସ୍ୱସ୍ଥାଃ ସନ୍ତି ଚ ଯୌବନୋନ୍ମଦମହାବ୍ୟାଧି-
ପ୍ରକୋପେଽପି ଯେ
ତୈଃ ସ୍ତମ୍ଭୈରିବ ସୁସ୍ଥିରୈଃ କଲି
ଭରକ୍ଲାନ୍ତା ଧରା ଧାର୍ଯ୍ୟତେ ॥

ଅର୍ଥାତ୍, ଯେଉଁମାନେ ଦୀନମାନଙ୍କ ପ୍ରତି ଦୟାଳୁ, ଯେଉଁମାନଙ୍କୁ ଧନମାନ ଅହଂକାର କଦାପି ବିକ୍ଷୁବ୍ଧ ନ କରେ, ଯେଉଁମାନେ ନିଜର ସାମର୍ଥ୍ୟ ନ ଥିଲେ ବି ଅପରର ଉପକାର କରିବାକୁ ବ୍ୟଗ୍ର, ଯେଉଁମାନେ ଦେବାକୁ ପଡ଼ିଲେ ଆନନ୍ଦିତ ହୁଅନ୍ତି, ଯୌବନର ସ୍ୱଭାବଗତ ଲୋଭ ମୋହରୁ ଯେଉଁମାନେ ନିଜକୁ ମୁକ୍ତ ରଖି ପାରନ୍ତି, ସେଇମାନେ ନାନା ପ୍ରକାର ଦୁର୍ନୀତି-ଜର୍ଜରିତ ସମାଜର ସ୍ଥିତି-ସ୍ଥାପକ ଦୃଢ଼ ସ୍ତମ୍ଭ ସରି ।

ବର୍ତ୍ତମାନ ପରିସ୍ଥିତିରେ ଆମ ସମାଜରେ ଏହିପରି ସ୍ତମ୍ଭର ଆବଶ୍ୟକତା ସବୁଠାରୁ ବେଶୀ । ଆମ୍ଭମାନଙ୍କର କାମନା, ଲକ୍ଷ୍ମୀନାରାୟଣ ବାବୁଙ୍କ ସ୍ମୃତି-ଜଳରେ ସେହିପରି ସ୍ତମ୍ଭମାନେ ଉଜ୍ଜୀବିତ ହୁଅନ୍ତୁ । ତାଙ୍କଠାରୁ ବଳି ଦେଶସେବକ ଥାଇ-ପାରନ୍ତି, ତାଙ୍କଠାରୁ ବଳି ସାହିତ୍ୟିକ ଓ ବ୍ୟବସ୍ଥାପକ ମିଳିବେ; କିନ୍ତୁ ତାଙ୍କର ପରି ମନୀଷୀର ପ୍ରୟୋଜନ ସବୁଠାରୁ ବେଶୀ ।

"ଉଠ ଉଠ ଜଗତବାସୀ, ସକଳର ମଙ୍ଗଳ ମନାସି !
ସମସ୍ତଙ୍କର ମଙ୍ଗଳ ଚାହିଁବା—ଆପଣାର ମଙ୍ଗଳ କରିବା ।"

—ଲକ୍ଷ୍ମୀନାରାୟଣ

# ଲକ୍ଷ୍ମୀନାରାୟଣ-ସ୍ମୃତି

## ଡାକ୍ତର ଶ୍ରୀ ବନବିହାରୀ ପଟ୍ଟନାୟକ

ଅନେକ ଦିନ ତଳର କଥା କିନା ସାଲଟା ଠିକେ ଠିକେ ମନେ ପଡ଼ୁନାହିଁ । ୧୯୧୬ କି ୧୭ ହେବ । ଖଣ୍ଡପଡ଼ାର ଚକ୍ରଧର—ଚକ୍ରଧର ପଟ୍ଟନାୟକ—ମୋର ଜଣେ ବଡ଼ ସାଙ୍ଗ । ସେ ପଢ଼ୁଥାଏ ମିଶନ ସ୍କୁଲରେ । (ଆହା ବିଚରା ଚକ୍ରଧର ଆଉ ନାହିଁ, ମରିବାର ହୋଇଗଲାଣି ଅତି କମରେ ଚାଳିଶ ପଇଁଚାଳିଶ ବର୍ଷ । ମିଶନ ସ୍କୁଲରୁ ଗଲା ମେଡ଼ିକାଲ ସ୍କୁଲକୁ । ବର୍ଷେ ଦୁଇବର୍ଷ ପଢ଼ିଛି କି ନାହିଁ ସେଠାରେ ସିଷ୍ଟରମାନଙ୍କ ସଙ୍ଗେ କଣ କଳିକଜିଆ କରି ସେଠା ଛାଡ଼ି ପ୍ରଥମ ମହାଯୁଦ୍ଧରେ ଯୋଗ ଦେଲା । ଯୁଦ୍ଧରୁ ଫେରି କିଛିଦିନ ପରେ ମରିଗଲା । ) ଚକ୍ରଧର ବରାବର କହେ, ଆମର ଜଣେ ନୂଆମାଷ୍ଟ୍ର ଆସିଛନ୍ତି, ଭାରି ଭଲ ଲୋକ ସେ । ପିଲାଙ୍କ ସାଙ୍ଗରେ ଭାରି ମିଶୁଛନ୍ତି । ପଢ଼େଇବାରେ ବି ଧୁରନ୍ଧର । ସେତେବେଳେ ମୁଁ କଲେଜିଏଟ୍ ସ୍କୁଲର ଛାତ୍ର । କଲେଜିଏଟ୍ ସ୍କୁଲ ହେଉଥାଏ ବକ୍ସିବଜାର ମାର୍କେଟପାଖ ଧର୍ମୀଭଗତଙ୍କ କୋଠାରେ; ଯେଉଁଠିକି ସରକାରୀ ଛାପାଖାନା ହେଉଥିଲା । ଦିନେ ମୁଁ ସ୍କୁଲରୁ ଫେରୁଛି ଲକ୍ଷ୍ମୀନାରାୟଣ ବାବୁ ଯାଉଛନ୍ତି କଟକଚଣ୍ଡୀ ଛକ ପାଖରେ । ସାଙ୍ଗରେ ତାଙ୍କର ଅଛନ୍ତି ୧୦।୧୨ଜଣ ଛାତ୍ର । ଚକ୍ରଧର ମଧ୍ୟ ସେ ଦଳରେ ଅଛି । ଚକ୍ରଧର ମତେ ଡାକି ଚୁପକରି କହିଲା, ଏଇ ହେଉଛନ୍ତି ଆମ ମାଷ୍ଟ୍ର ଲକ୍ଷ୍ମୀନାରାୟଣବାବୁ । ସେତେବେଳେ ଲକ୍ଷ୍ମୀନାରାୟଣବାବୁଙ୍କର ଟୋକା ଉମର । ସେ ବି ଗୋଟିଏ ଛାତ୍ରଭଳି ଦିଶୁଥାନ୍ତି । ମୁଁ ସେ ଦଳର ସଙ୍ଗ ଧରିଲି । ଚକ୍ରଧର ଲକ୍ଷ୍ମୀନାରାୟଣ ବାବୁଙ୍କ ସଙ୍ଗେ ମୋର ପରିଚୟ କରିଦେଲା ; ଲକ୍ଷ୍ମୀନାରାୟଣ ବାବୁଙ୍କ ସଙ୍ଗେ ସେଇ ହେଲା ମୋର ପ୍ରଥମ ପରିଚୟ ।

ମୁଁ କଲିକତା ମେଡ଼ିକାଲ କଲେଜରେ ପଢ଼ୁଥାଏ । କଲିକତା ଓଡ଼ିଆ ସମାଜ ପକ୍ଷରୁ ବାଲମୁକୁନ୍ଦ ଓ ମୁଁ ଆମ ଦୁହିଁଙ୍କୁ ପଠାଗଲା ଯିବାକୁ କାଲମାଟି । ବାଲମୁକୁନ୍ଦ—ଡାକ୍ତର ବାଲମୁକୁନ୍ଦ ନାୟକ ମୋର ସହପାଠୀ,ଆବାଲ୍ୟ ବନ୍ଧୁ, ସ୍ୱନାମ-ଧନ୍ୟ ଏ. ଡ଼ି. ପି. ଏଚ. କେତେକ ସମୟ ପାଇଁ ସ୍ୱାସ୍ଥ୍ୟବିଭାଗର ଡ଼ିରେକ୍ଟର ହୋଇଥିଲେ ମଧ୍ୟ । ରଥଯାତ୍ରାବେଳେ ପୁରୀରେ ହେଉଥିଲା ଭୀଷଣ କଲେରା । ଲୋକେ ମରି ପଟା ପଡ଼ି ଯାଉଥିଲେ । ଏହାଙ୍କ ଉଦ୍ୟମରେ କଲେରା ଏବେ ନାହିଁ କହିଲେ ଚଳେ । କର୍ମକୁଶଳତା ପାଇଁ ଅତି ଅଳ୍ପ ବୟସରେ ଇଏ ଇଂରେଜ ସରକାରଙ୍କଠାରୁ ରାୟସାହେବ ଖିଲାପ ପାଇଥିଲେ । ଅନେକଦିନୁ ଅବସର ନେଲେଣି । ସେତେବେଳେ ଲୋକେ ଜାମସେଦପୁରକୁ କାଲମାଟି କହୁଥିଲେ । ଏବେ ତାକୁ କହୁଛନ୍ତି ଟାଟାନଗର । ଆମେ ଯାଇ ପହଞ୍ଚିଲୁ ଏଲ୍ ଟାଉନରେ ଲକ୍ଷ୍ମୀନାରାୟଣବାବୁଙ୍କ ଘରେ । ସେତେବେଳକୁ ଲକ୍ଷ୍ମୀନାରାୟଣ ବାବୁ ଆଉ ମାଷ୍ଟ୍ର ନୁହନ୍ତି । ଭାରତ-ସେବକସମିତି (Servants of India society) ପକ୍ଷରୁ ସେ ଜଣେ ଦେଶସେବକ । ଆମେ ଦୁହେଁ ରହିଲୁଁ ତାଙ୍କ ବସାରେ । ସେତେବେଳକୁ ଶାନ୍ତ ପିଲା (ଲକ୍ଷ୍ମୀନାରାୟଣ ବାବୁଙ୍କ ଝିଅ) ୩।୪ ବର୍ଷର ଶିଶୁ । ଲକ୍ଷ୍ମୀନାରାୟଣ ବାବୁଙ୍କର ଜଣେ ବାଲ୍ୟବନ୍ଧୁ ତାଙ୍କ ପାଖକୁ ଆସିଥାନ୍ତି କିଛି ସାହାଯ୍ୟ ପାଇଁ । ଏକାସଙ୍ଗେ ଦୁହେଁ ପଢ଼ୁଥିଲେ । ତାଙ୍କୁ ଧରିଥାଏ କୁଷ୍ଠରୋଗ; ବିଚରା ବଡ଼ ନାହାରପୁ ହୋଇ ପଡ଼ିଥାନ୍ତି । ଉକ୍ତ ବନ୍ଧୁଙ୍କୁ ଲକ୍ଷ୍ମୀନାରାୟଣବାବୁ ନିଜ ବସା ବାରଣ୍ଡାରେ ସ୍ଥାନ ଦେଇଥାନ୍ତି । ଦିନେ ଗପସପ କରୁ କରୁ ଲକ୍ଷ୍ମୀନାରାୟଣ ବାବୁଙ୍କୁ ମୁଁ କହିଲି "ଆଜ୍ଞା, ଶାନ୍ତ ପିଲା—ସେ ଯେପରି ସ୍ୱାଙ୍କ ସଙ୍ଗେ ନ ମିଶେ । ଏ ରୋଗଟା ବଡ଼ ଖରାପ ରୋଗ—ପିଲାଙ୍କଠାକୁ ସହଜରେ ଡେଇଁଥାଏ ।" ଲକ୍ଷ୍ମୀନାରାୟଣ ବାବୁ ମତେ କହିଲେ "ବନବିହାରୀ ବାବୁ, ଆପଣ ଏ ରୋଗ ପାଇଁ କିଛି କରନ୍ତୁ—କେତେଲୋକ ଯେ ଆମର ନଷ୍ଟ ହୋଇ ଯାଉଛନ୍ତି ତାର ସୀମା ନାହିଁ ।" ମୋର ଧାରଣା ଲକ୍ଷ୍ମୀନାରାୟଣ ବାବୁଙ୍କର ଏହି କଥା ମତେ ଦେଇଥିଲା ପ୍ରେରଣା—ପରବର୍ତ୍ତୀକାଳରେ କୁଷ୍ଠରୋଗ ବିଷୟରେ ଯତ୍କିଞ୍ଚିତ ଚର୍ଚ୍ଚା କରିବାକୁ । ମୋର ବିଶ୍ୱାସ କୁଷ୍ଠରୋଗର ପ୍ରତିଷେଧ, ପ୍ରତିକାର, ଚିକିତ୍ସା ଆଦି ପାଇଁ ଓଡ଼ିଶାରେ ଯାହା କିଛି କାର୍ଯ୍ୟ ହୋଇଛି, ତାର ମୂଳଦୁଆ ଯେ କେହି ଲକ୍ଷ୍ମୀନାରାୟଣ ବାବୁ ଦେଇଥିଲେ । କେବଳ ସେତିକି ନୁହେଁ, ସେ କୁଷ୍ଠନିରୋଧ କାର୍ଯ୍ୟ ସବୁକୁ ବହୁ ଦୂରକୁ ଆଗେଇ ନେଇ ଯାଇଛନ୍ତି । ସେ କଥା କହୁଛି । ଜାମସେଦପୁର ନୂଆ ସହର ହୋଇ ଉଠୁଥାଏ ଓଡ଼ିଆ ପ୍ରଧାନ ସ୍ଥାନ । ଲକ୍ଷ୍ମୀନାରାୟଣ ବାବୁ ଅନେକ ଗୁଡ଼ିଏ ଓଡ଼ିଆ ସ୍କୁଲ ବସେଇବା ସଙ୍ଗେ ସଙ୍ଗେ ସେଠାରେ ସାମାଜିକ ସଂଗଠନ କାର୍ଯ୍ୟମାନ କରୁଥିଲେ ।

ଏହା ପରେ ହେଲା ପୁରୀଜିଲାରେ ବର୍ଷେ ଭୀଷଣ ବନ୍ୟା ଲକ୍ଷ୍ମୀନାରାୟଣ ବାବୁ, ଠକ୍କର ବାପା ଆଦି ଲାଗିଗଲେ ବନ୍ୟାବିପନ୍ନ ଅଞ୍ଚଳରେ କାର୍ଯ୍ୟ କରିବାକୁ । କଲିକତା ଓଡ଼ିଆ ସମାଜ ତରଫରୁ ବହୁତ ଟଙ୍କା, ଲୁଗାପଟା, ଚାଉଳ ଆଦି

ସଂଗ୍ରହ କରି ପଠାଗଲା ପୁରୀ ବନ୍ୟା ଅଞ୍ଚଳକୁ । ସେତେବେଳେ ମୁଁ ଥାଏ ଓଡ଼ିଆ ସମାଜର ଜଣେ ସେକ୍ରେଟେରୀ, ତେଣୁ ଲକ୍ଷ୍ମୀନାରାୟଣ ବାବୁଙ୍କ ସମ୍ପର୍କରେ ଆସିବାର ସୁବିଧା ମିଳିଲା ଯଥେଷ୍ଟ । ଘନିଷ୍ଠତା ବଢ଼ିଲା ମଧ୍ୟ ବହୁତ । ସେ ବି କଲିକତା ଗଲେ ମଝିରେ-ମଝିରେ ଆମ ବସାରେ ରହୁଥିଲେ ।

ମୋର ଚାକିରି କରିବାର ପ୍ରଥମ ଅବସ୍ଥା । ସେତେବେଳେ ଥାଏ ମୁଁ ସ୍କୁଲବିଭାଗର ଡାକ୍ତର । ସାରା ଓଡ଼ିଶାର ସମସ୍ତ ଉଚ୍ଚ ଇଂରାଜି ବିଦ୍ୟାଳୟ ଏବଂ କେତେକ ମଧ୍ୟ ଇଂରାଜୀ ସ୍କୁଲ ପରିଦର୍ଶନ କରିବା କାମ । ବସା ଥିଲା ଗଙ୍ଗାମନ୍ଦିରରେ । ଯେତେବେଳେ ସୁବିଧା ପାଉଥିଲି କାଳିଆବୋଦା ସେପଟେ କୁଷ୍ଠାଶ୍ରମକୁ ଯାଇ ସେଠାରେ ରୋଗୀମାନଙ୍କୁ ଦେଖୁଥିଲି ଓ ସେଠି ଡାକ୍ତରଙ୍କ ସଙ୍ଗେ ଉକ୍ତ ରୋଗ ବିଷୟରେ ମଧ୍ୟ ଚର୍ଚ୍ଚା କରୁଥିଲି । ଓଡ଼ିଶାର ଶିକ୍ଷିତ ସମାଜରେ ଅନେକେ ଉକ୍ତ ରୋଗରେ ଆକ୍ରାନ୍ତ; ତେଣୁ ସେମାନଙ୍କୁ ମୋର ଉପଦେଶ ଦେବା କଥା । କଲିକତାରେ ଥିବାବେଳେ କୁଷ୍ଠ ବିଶେଷଜ୍ଞ ଡାକ୍ତର ମୁର୍‌ଙ୍କ ସଙ୍ଗେ ମୋର ଘନିଷ୍ଠତା ହୋଇଥିଲା । ବେଳେ ବେଳେ ଏହି ରୋଗ ବିଷୟରେ ତାଙ୍କ ସଙ୍ଗେ ଚର୍ଚ୍ଚା, କରୁଥିଲି ଏବଂ ଓଡ଼ିଶାର କେହି ରୋଗୀ ଡାକ୍ତରୀ ଉପଦେଶ ପାଇଁ କଲିକତା ଗଲେ, ତାଙ୍କୁ ମୁର ସାହେବଙ୍କ ପାଖକୁ ନେଇ ଯାଉଥିଲି । କୁଷ୍ଠ ବିଶେଷଜ୍ଞ ଡାକ୍ତର ଆଇଜାକ୍ ସାହିବଙ୍କ ସାଙ୍ଗରେ ମୋର ଆଗରୁ ପରିଚୟ ଥିଲା । ସେ ଥରେ କଲିକତା ଆସି ସେଠାରେ କେତେଦିନ ରହିଲେ । ସେତେବେଳେ ତାଙ୍କ ସଙ୍ଗରେ ଘନିଷ୍ଠତା ବଢ଼ିଗଲା ।

ଖୁବ୍ ବଡ଼ିଭୋରୁ ଜଣେ ଅଧେ ଲୋକ ଉଠିଛନ୍ତି କି ନାହିଁ, ରାସ୍ତାରେ ଲୋକ ସମାଗମ ହୋଇ ନାହିଁ । ଗଙ୍ଗା-ମନ୍ଦିରରେ ମୋ ବସା ସାମନା ବଗିଚାରେ ବୁଲୁଛି । ଲକ୍ଷ୍ମୀନାରାୟଣ ବାବୁ ଆସି ପହଞ୍ଚିଗଲେ । ଅସମୟରେ ଦେଖା—ସେଥିରେ ପୁଣି ତାଙ୍କ ଉପର ଓଠଟା ବହୁତ ଫୁଲି ଯାଇଛି । ଘନିଷ୍ଠତା ନ ଥିଲେ ବୋଧହୁଏ ମୁଁ ସଙ୍ଗେ ସଙ୍ଗେ ଚିହ୍ନିପାରି ନ ଥାନ୍ତି । ତାଙ୍କୁ ପଚାରିଲି 'ଏ ସମୟରେ ଆପଣ ?' ସେ ହସି ହସି ମତେ ତାଙ୍କ ଓଠ ଦେଖାଇ ଦେଲେ । ବାରଣ୍ଡାରେ ଚୌକି ପଡ଼ିଥିଲା, ବସିଲୁଁ । ପରୀକ୍ଷା କରି ଦେଖିଲି । କୁଷ୍ଠ ରୋଗର ଲକ୍ଷଣ ପାଇଲି । ମତେ ଭାରି ଦୁଃଖ ହେଲା—ତାଙ୍କୁ କହିବାକୁ ମୋର ସାହସ ହେଲା ନାହିଁ । କିନ୍ତୁ ନ କହୁଛି ବା କିପରି ? କହିଲି ଟିକିଏ ଚାଲନ୍ତୁ କଲିକତା ଯିବା । ଥରେ ମୁର ସାହେବଙ୍କୁ ଦେଖାଇ ଆସିବା । ସେ ହେଲେ ସର୍ବପ୍ରଧାନ କୁଷ୍ଠ ବିଶେଷଜ୍ଞ । ସେହିଦିନ ଆମେ ଦୁହେଁ ଗଲୁ କଲିକତା । ମୁର ସାହେବ ପରୀକ୍ଷା କରି କହିଲେ—ରୋଗଟା କୁଷ୍ଠରୋଗ । ସେ ମଧ୍ୟ ଚିକିତ୍ସା ପ୍ରଣାଳୀ ଲେଖି ଦେଲେ । ସେ ଅନୁସାରେ ଚିକିତ୍ସା ଚାଲିଲା । ଲକ୍ଷ୍ମୀନାରାୟଣ ବାବୁଙ୍କର ଥାଏ ଗୋଟାଏ କଳା କନାର ଝୁଲା ମୁଣି—ସାଇକେଲରେ ଝୁଲା ହୋଇଥାଏ । ସେହି ମୁଣିରେ ରହିଥାଏ ସମସ୍ତ ଔଷଧପତ୍ର, ଇଞ୍ଜେକ୍‌ସନ ସିରିଞ୍ଜ ଅଉ ଟିକିଏ ସ୍ପିରିଟ । ଔଷଧ ପ୍ରୟୋଗର ସମୟ ହୋଇଗଲେ ଆଖପାଖରେ ଯେଉଁ ଡାକ୍ତରଙ୍କୁ ଦେଖନ୍ତି, ତାଙ୍କୁ କହନ୍ତି—ମତେ ଟିକିଏ ଇଞ୍ଜେକ୍‌ସନ ଦେଇ ଦିଅନ୍ତୁ ।

ଆଇଜାକ୍ ବାବୁ କାର୍ଯ୍ୟୋପଲକ୍ଷେ ଆସିଥାନ୍ତି ବ୍ରହ୍ମପୁରକୁ । ଆମେ ଦୁହେଁ— ଲକ୍ଷ୍ମୀନାରାୟଣ ବାବୁ ଓ ମୁଁ ଗଲୁ ତାଙ୍କ ସଙ୍ଗେ ଦେଖା କରିବାକୁ । ତାଙ୍କ ସଙ୍ଗେ କୁଷ୍ଠରୋଗ, ଲକ୍ଷ୍ମୀନାରାୟଣ ବାବୁଙ୍କ ଚିକିତ୍ସା ଏବଂ ଓଡ଼ିଶାରେ କୁଷ୍ଠ ନିରୋଧ ଆଦି ବିଷୟରେ ଅନେକ କଥାବାର୍ତ୍ତା ହେଲା । ଏକେତ ଆଇଜାକ ବାବୁ କୁଷ୍ଠ ନାଁରେ ପାଗଳ; ତାଙ୍କ ସାଙ୍ଗରେ ମିଶିଗଲେ ଅଉ ଜଣେ ପାଗଳ, ଲକ୍ଷ୍ମୀନାରାୟଣ ବାବୁ । ଓଡ଼ିଶାରୁ କିପରି କୁଷ୍ଠରୋଗ ଦୂର ହେବ, ଏହି ହେଲା ତାଙ୍କର ଏକମାତ୍ର ଧ୍ୟାନ । ଆଉ କାହିଁରେ ତାଙ୍କର ମନ ରହିଲା ନାହିଁ । ଖାଇବା ପିଇବାର ନାମ ଧରିଲେ ନାହିଁ । ଦିନ ନାହିଁ —ରାତି ନାହିଁ ଲାଗି ରହିଲେ କୁଷ୍ଠନିରୋଧ କାର୍ଯ୍ୟରେ । ସେ ଯେଉଁ ପରିଶ୍ରମ ତାହା କେବଳ ଲକ୍ଷ୍ମୀନାରାୟଣ ବାବୁ କରି ପାରନ୍ତି । ଗାଁକୁ ଗାଁ ଖରାନାହିଁ, ବର୍ଷା ନାହିଁ, ପାଣିକାଦୁଅ କିଛି ନ ମାନି ଚାଲି ଚାଲି ବୁଲି କେଉଁ ଗାଁରେ କେତେଜଣ କୁଷ୍ଠରୋଗୀ ଅଛନ୍ତି, ଆଉ ସେମାନଙ୍କର କିପରି ଚିକିତ୍ସା ହେବ, ଏହିଥିରେ ଲାଗିପଡ଼ିଲେ । ଓଡ଼ିଶାରୁ କିପରି କୁଷ୍ଠରୋଗ ଦୂର ହେବ ଏହା ହେଲା ତାଙ୍କର ଏକମାତ୍ର ଚିନ୍ତା । ତାଙ୍କର ଏହି ଉଦ୍ୟମ ଫଳରେ ଓଡ଼ିଶାର ଅନେକ ସ୍ଥାନରେ କୁଷ୍ଠରୋଗ ଚିକିତ୍ସାର କେନ୍ଦ୍ର ସବୁ ସ୍ଥାପିତ ହେଲା । ସେ ନିଜେ ମଧ୍ୟ ଚଉଦୁଆରରେ ଗୋଟିଏ କେନ୍ଦ୍ର ସ୍ଥାପନ କଲେ । ସତେ ଯେପରି ଭଗବାନ ଲକ୍ଷ୍ମୀନାରାୟଣ ବାବୁଙ୍କୁ କୁଷ୍ଠରୋଗ ଦେଇଥିଲେ ଓଡ଼ିଶାର ମଙ୍ଗଳ ପାଇଁ । ଚିକିତ୍ସା ଦ୍ୱାରା ସେ ନିଜେ ତ ଅଳ୍ପଦିନ ମଧ୍ୟରେ ରୋଗମୁକ୍ତ ହେଲେ ଓଡ଼ିଶାର କେତେ ଲୋକ ଯେ କୁଷ୍ଠ କବଳରୁ ରକ୍ଷା ପାଇଲେ ଏବଂ ପାଉଛନ୍ତି, ତାହା କହିହେବ ନାହିଁ ।

କି ଅଦ୍ଭୁତ ଶକ୍ତି ଭଗବାନ ଲକ୍ଷ୍ମୀନାରାୟଣ ବାବୁଙ୍କୁ ଦେଇଥିଲେ, ତାହା କଳି ହେବ ନାହିଁ । କେବଳ ଯେ ସେ କୁଷ୍ଠନିରୋଧ ଦିଗରେ ଦୃଷ୍ଟି ଦେଇଥିଲେ ତାହା ନୁହେଁ, ମୌଳିକ ଗବେଷଣା ମଧ୍ୟ ତାଙ୍କର ଥିଲା ବହୁତ । ଜୟପୁର ମାଳ ଅଞ୍ଚଳରେ ରହି ସେ ଆଦିବାସୀମାନଙ୍କ ବିଷୟରେ ଯେଉଁ

ଗବେଷଣା ଚଳାଇଥିଲେ, ତାହାର ଫଳରେ ସେ "Hill Tribes of Jeypore" ନାମକ ଏକ ବିଶାଳଗ୍ରନ୍ଥ ପ୍ରଣୟନ କରି ଅଛନ୍ତି । ଓଡ଼ିଶାରେ ଜୈନଧର୍ମ ବିଷୟ ଚର୍ଚ୍ଚାକରି ଓଡ଼ିଶାରେ ଜୈନଧର୍ମ ନାମକ ଖଣ୍ଡେ ସୁବୃହତ୍ ଗ୍ରନ୍ଥ ମଧ୍ୟ ପ୍ରଣୟନ କରିଛନ୍ତି । ସେ ସର୍ବଦା କାର୍ଯ୍ୟବ୍ୟସ୍ତ ଥାଇ ଛୋଟ ବଡ଼ ଯେତେ ବହି ଲେଖିଛନ୍ତି ତାର ସଂଖ୍ୟା ଶହେରୁ ଅଧିକ ହେବ । ଏତିକି ନୁହେ, ତାଙ୍କର ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଥିଲା— ସେ ଥିଲେ ଜଣେ ସେବକାର ପାସକରି ଉପାଧ୍ୟାୟ ପଣ୍ଡିତ । ଗୋଟିକ ପରେ ଗୋଟିଏ ବିଷୟରେ ପରୀକ୍ଷା ଦେଇ ସେ ଯେତେଗୁଡ଼ିଏ ଭିନ୍ନ ଭିନ୍ନ ବିଷୟରେ M.A. ପାସ କରିଛନ୍ତି, ଓଡ଼ିଶାରେ ତ ସେପରି ଆଉ ଜଣେ ନାହାନ୍ତି ଅନ୍ୟତ୍ର ମଧ୍ୟ ଅଛନ୍ତି—ଯାହା ଅନୁସନ୍ଧାନ । ବଙ୍ଗଳା ଭାଷାରେ ତାଙ୍କର ଦକ୍ଷତା ଥିଲା ଜଣେ ଖାଣ୍ଟି ବଙ୍ଗାଳୀ ପଣ୍ଡିତଙ୍କ ପରି । ସେ ବଙ୍ଗଳାରେ କେତେ ଖଣ୍ଡ ବହି ମଧ୍ୟ ଲେଖି ଅଛନ୍ତି ।

ତାଙ୍କ ମୃତ୍ୟୁ ହେବାକୁ ଥାଏ ମାତ୍ର ଅଳ୍ପ କେତେକ ଦିନ । ତାଙ୍କ ସଙ୍ଗେ ଦେଖା କରିବାକୁ ଗଲି ଦିନେ ତାଙ୍କ ବସାକୁ । ନାନା ବିଷୟରେ ଗପସପ ହେଲା । କଥା ପ୍ରସଙ୍ଗରେ କହିଲି, "ଲକ୍ଷ୍ମୀନାରାୟଣ ବାବୁ ! ଆପଣଙ୍କର ସବୁ ବହି ମୋ ପାଖରେ ନାହିଁ ।" ସେ ମତେ ଉତ୍ତର ଦେଲେ "ମୋ ପାଖରେ ବି ମୋର ସବୁ ବହି ନାହିଁ, ତେବେ ଯାହା ଅଛି ଖଣ୍ଡେ ଖଣ୍ଡେ ନେଇଯାଆନ୍ତୁ ।" ଯେଉଁ ସବୁ ବହିଥିଲା, ସବୁଥିରୁ ଖଣ୍ଡେ ଖଣ୍ଡେ ପ୍ରାୟ ୫୦।୬୦ ଖଣ୍ଡ ବହି ମତେ ସଙ୍ଗେ ସଙ୍ଗେ ଦେଲେ । ସେଇ ହେଲା ତାଙ୍କ ସଙ୍ଗେ ମୋର ଶେଷ ଦେଖା ।

"ମିଥ୍ୟା ସେହି ଜନ, ଚିରଚିହ୍ନ ଯା'ର ନ ରହେ କାଳବକ୍ଷେ,
ମନୁଷ୍ୟ ଯାହାର କାଳ ଭେଦ ନ ଦିଏ କରନ୍ତି ସକଳ ମାନବ ଚକ୍ଷେ ।"

—ଲକ୍ଷ୍ମୀନାରାୟଣ

# ବନ୍ଧୁ-ସ୍ମୃତି

## ଶ୍ରୀ ରାଧାନାଥ ରଥ

ହିନ୍ଦ୍‌ସେବକ ସମାଜର ସଭ୍ୟ ଏବଂ ଓଡ଼ିଶାର ଜଣେ କୃତିସନ୍ତାନ, କର୍ମୀ, ଭାବୁକ, ଲେଖକ, ବ୍ୟବସ୍ଥାପକ, ସାହିତ୍ୟିକ, ଶିକ୍ଷାବିତ୍ ବିଶେଷରେ ସମାଜସେବକ ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ସାହୁଙ୍କ ସ୍ମୃତିରକ୍ଷା ପାଇଁ ସ୍ୱର୍ଗୀୟ ଦେଶପ୍ରାଣ ଗୋଖଲେଙ୍କ ପ୍ରତିଷ୍ଠିତ ହିନ୍ଦ୍‌ସେବକ ସମାଜର ବର୍ତ୍ତମାନ ସଭାପତି ତ୍ୟାଗବୀର ପୂଜ୍ୟ ଡକ୍ଟର (ପଣ୍ଡିତ) ହୃଦୟନାଥ କୁଞ୍ଜରୁ କଟକରେ ଥିବା ହିନ୍ଦ୍‌ସେବକ ସମାଜ ପ୍ରାଙ୍ଗଣରେ ତାଙ୍କର ପ୍ରତିମୂର୍ତ୍ତି ଅପ୍ରେଲ୍ ୧୨ ତାରିଖରେ ଉଦ୍‌ଘାଟନ କରୁଛନ୍ତି । ଏହା ହିନ୍ଦ୍‌ସେବକସମାଜ ତଥା ଓଡ଼ିଶା ପକ୍ଷରେ ଗୌରବର କଥା । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁଙ୍କ ଭଳି ଅନନ୍ୟ ଦେଶସେବକ ଓଡ଼ିଶାରେ କ୍ୱଚିତ ଦେଖାଯାନ୍ତି । ବୟୋଜ୍ୟେଷ୍ଠ ବନ୍ଧୁ ହିସାବରେ ମୋର ତାଙ୍କ ପ୍ରତି ଗଭୀର ଭକ୍ତି ଓ ଶ୍ରଦ୍ଧା ଥିଲା । ଲକ୍ଷ୍ମୀନାରାୟଣଙ୍କ ଭଳି ବିପ୍ଳବୀ ଅଥଚ ସରଳମନା, ସ୍ନେହୀ, ଉଦାର ଭାବାପନ୍ନ ବନ୍ଧୁ ଓ ଦରିଦ୍ରନାରାୟଣ ସେବକ ମିଳିବା ଦୁର୍ଲଭ ।

୧୮୯୦ରେ ବାଲେଶ୍ୱର ସହରରେ ସେ ଜନ୍ମଗ୍ରହଣ କରିଥିଲେ । ବାଲେଶ୍ୱର ଓ କଟକରେ ପାଠ ପଢ଼ିଲା ପରେ ଶିବପୁର ଇଞ୍ଜିନିୟରିଂ ସ୍କୁଲରେ ପଢ଼ିଲାବେଳେ ଦାରିଦ୍ର୍ୟ ତାଡ଼ନାରେ କଟକରେ ଆସି ସେତେବେଳର ମିଶନ ସ୍କୁଲରେ ଶିକ୍ଷକ ହେଲେ । ଏହା ୧୯୧୩-୧୪ ମସିହାର କଥା । ମୁଁ ସେତେବେଳେ କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲ ଛାତ୍ର । ଲକ୍ଷ୍ମୀନାରାୟଣ ବାବୁ ସେତେବେଳେ ଶିକ୍ଷକ ହୋଇ ଛାତ୍ରମାନଙ୍କ ସାଙ୍ଗରେ ଏତେ ମିଶୁଥାନ୍ତି ଏବଂ ଛାତ୍ରଙ୍କ ଦୁଃଖରେ ଏପରି ଦୁଃଖୀ ହେଉଥାନ୍ତି ଯେ ଛାତ୍ରମାନେ ତାଙ୍କୁ ଜଣେ ଶିକ୍ଷକ ନୁହେଁ, ଜଣେ ବୟୋଜ୍ୟେଷ୍ଠ ସାଥୀ ବୋଲି ବିଚାରୁଥାନ୍ତି । ଶିକ୍ଷକ ଥାଇ ସୁଦ୍ଧା ସେ ପିଲାମାନଙ୍କ ସାଙ୍ଗରେ ବସି ବହି ପଢନ୍ତି ଏବଂ କବିତା ଓ ପ୍ରବନ୍ଧ ବିଷୟରେ ଚର୍ଚ୍ଚା କରନ୍ତି । ସମାଜ ସଂସ୍କାର କ୍ଷେତ୍ରରେ ସେ ଜଣେ ଅଗ୍ରଣୀ ବିପ୍ଳବୀ ଥିଲେ । ଜାତିଭେଦ ପ୍ରଥା ଉଠାଇବା ପାଇଁ ତାଙ୍କର ପ୍ରବଳ ଉଦ୍ୟମ ଥିଲା । ଛାତ୍ରାବସ୍ଥାରେ ସୁଦ୍ଧା ସେ ଜାତିଆଣ କଟକଣା ବିରୋଧରେ ବିଦ୍ରୋହ କରୁଥିଲେ । ସେ କେବଳ ଚିନ୍ତା ଓ କଥାରେ ନୁହେଁ, କାର୍ଯ୍ୟରେ ଅସ୍ପୃଶ୍ୟତା ନିବାରଣ କରିଥିଲେ । ଶିକ୍ଷକ ଥିଲାବେଳେ ସମାଜ ସଂସ୍କାର ବିଷୟରେ ସେ ଖଣ୍ଡିଏ ଛୋଟିଆ ପୁସ୍ତକ ଲେଖି ସେଥିରେ ଲେଖକ "ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ—ଜାତିରେ ପାଣ" ବୋଲି ଲେଖିଥିଲେ । ଶିକ୍ଷକ ହିସାବରେ ସେ ଯାହା ଦରମା ପାଉଥିଲେ ସେଥିରୁ ଅନେକ ପିଲାମାନଙ୍କୁ ଜଳଖିଆ ଖାଇବା ଓ ବସ୍ତ୍ରପତ୍ର ପାଇଁ ବାଣ୍ଟି ଦେଉଥିଲେ ।

ଶିକ୍ଷକ ଥିବାବେଳେ ସେ ସ୍ୱର୍ଗୀୟ ମନସ୍ୱୀ ତ୍ୟାଗବୀର, ସମାଜସେବକ ଭାରତୀୟ ନେତା ଗୋପାଳକୃଷ୍ଣ ଗୋଖଲେଙ୍କ ବ୍ୟକ୍ତିତ୍ୱର ମହିମାରେ ଖୁବ୍ ପ୍ରଭାବିତ ହେଲେ । ହିନ୍ଦ୍‌ସେବକ ସମାଜ (ସେତେବେଳର ଭାରତ ସେବକ ସମିତି ବୋଲି ପରିଚିତ)ରେ ଯୋଗ ଦେଲେ । କିଛି କାଳ ପୁନାରେ ରହି ଆସିଲା ପରେ ଓଡ଼ିଶା ଓ ଓଡ଼ିଶା ଗଡ଼ଜାତ ଏବଂ ବିଚ୍ଛିନ୍ନ ଓଡ଼ିଆ ଅଞ୍ଚଳରେ ଏକ ପରିବ୍ରାଜକ ସମାଜସେବୀରୂପେ ଯୋଗ ଦେଇ ସେବାକାର୍ଯ୍ୟ ଆରମ୍ଭ କରିଥିଲେ । ଛାତ୍ରମାନଙ୍କ ଭିତରେ ସ୍ୱଦେଶପ୍ରୀତିର ପ୍ରେରଣା ଜାଗ୍ରତ କରିବା ତାଙ୍କ କାର୍ଯ୍ୟକ୍ରମର ପ୍ରଧାନ ଲକ୍ଷ୍ୟ ଥିଲା । ମୁଁ ଛାତ୍ରାବସ୍ଥାରେ ତାଙ୍କ ସଙ୍ଗେ କେତେ ଜାଗା ବୁଲିବାର ସୁଯୋଗ ପାଇଥିଲି । ଥରେ ଚଉଦ୍ୱାରର କ୍ଷୁଦ୍ର ଗୁଳ କୁଡ଼ିଆଘରସମ୍ବଳିତ ଗାଆଁକୁ ଲକ୍ଷ୍ମୀନାରାୟଣ ବାବୁ ଆଉ ଦୁଇଜଣ ବନ୍ଧୁଙ୍କ ସହିତ ଯାଇଥିଲୁ । ମୁଢ଼ି ଓ ବରା, ଗୁଲୁଗୁଲା ଗୋଟିଏ ଦୋକାନରୁ କିଣି ଏକାଠି ଖାଇ ଚଉଦ୍ୱାର ଓ ପାଖଆଖ ଜଙ୍ଗଲ ଅଞ୍ଚଳ ବୁଲିଥିଲୁ । ସନ୍ଧ୍ୟା-ବେଳକୁ ନଦୀ ପାରି ହୋଇ କଟକ ଆସିଲୁ । ସେତେବେଳେ ସେ ଚଉଦ୍ୱାରରେ ଆଶ୍ରମ ପ୍ରତିଷ୍ଠା କରିବାର କଳ୍ପନା କରିଥିଲେ । ପରେ ସେହିଠାରେ କୁଷ୍ଠାଶ୍ରମ ଓ ସେବାଶ୍ରମ ପ୍ରତିଷ୍ଠା କରିଥିଲେ । ଏହା ତାଙ୍କର ମୁଖ୍ୟ କର୍ମକେନ୍ଦ୍ର ହୋଇଥିଲା । ଓଡ଼ିଶାରେ ଏତେ ସାମାଜିକ କର୍ମୀ ଅଛନ୍ତି, ତାଙ୍କ ଭଳି ପାଦରେ ବୁଲି ବୁଲି ଓଡ଼ିଶାର ଗ୍ରାମଗହଳ ସହିତ ପରିଚିତ ହେବା ଲୋକ କମ ଅଛନ୍ତି । ତାଙ୍କର ଅସାଧାରଣ ଜ୍ଞାନପିପାସା ଥିଲା । ବିଭିନ୍ନ ଭାଷା ଶିଖିବାରେ ଓ ବିଭିନ୍ନ ଭାଷାରେ ପୁସ୍ତକ ଏବଂ କବିତା ଲେଖିବାରେ ତାଙ୍କର ଅଧ୍ୟବସାୟ ଦେଖି ତଟସ୍ଥ ହୋଇଯିବାକୁ ହୁଏ । ଓଡ଼ିଆରେ ସେ ବହୁ କ୍ଷୁଦ୍ର କ୍ଷୁଦ୍ର ପୁସ୍ତକ ଲେଖିଛନ୍ତି । ବୁଦ୍ଧଦେବଙ୍କ ପ୍ରଧାନ ଶିଷ୍ୟ ଆନନ୍ଦଙ୍କ ଜୀବନଠାରୁ ଆରମ୍ଭ କରି ଗୁରୁଗୋବିନ୍ଦ ସିଂହ, 'ଜୟନ୍ତୀ', ମହିମାଧର୍ମର ସଂକ୍ଷିପ୍ତସାର କଥା, ବହୁରୂପ ପ୍ରଭୃତି ଓଡ଼ିଆରେ ଅନେକଗୁଡ଼ିଏ ପୁସ୍ତକ

ପ୍ରକାଶ କରିଥିଲେ । 'ତାକୁ ତାଙ୍କୁ ତୋତେ ମୋତେ' 'ଦେବକନ୍ୟା', 'କବିତାମଞ୍ଜରୀ', 'କ୍ଷଣିକା', '୧୯୫୮ ଓ ୬୦ର' କବିତା ନାମକ କେତେ ଖଣ୍ଡ ପୁସ୍ତକରେ ଅପୂର୍ବ ଭାବପ୍ରବଣ ଓ କେତେକ କ୍ଷେତ୍ରରେ ଅର୍ଥହୀନ କବିତା ପୁସ୍ତକ ସେ ପ୍ରକାଶ କରିଥିଲେ । ଏଥିରୁ ସେ କିପରି ସ୍ୱାଧୀନଚେତା କବି ଥିଲେ ତାର ପରିଚୟ ମିଳେ । ବଙ୍ଗଳାରେ ହୃଦୟ ସ୍ପର୍ଷ, ଅରବିନ୍ଦ ନାମକ କବିତା ପୁସ୍ତକ ପ୍ରକାଶ କରିଥିଲେ । ଇଂରାଜୀରେ ମଧ୍ୟ "Konarak" 'In pain and Sadness', 'Sons of the Hills', 'Orissa' 'Leprosy' 'Human Sacrifice' ପ୍ରଭୃତି ପୁସ୍ତକ ଲେଖିଥିଲେ । ଓଡ଼ିଆରେ 'ସହକାର' ଓ 'ବୈତରଣୀ' ମାସିକ ପତ୍ରିକାର ସେ ପ୍ରତିଷ୍ଠାତା ଓ ପ୍ରକାଶକ ଥିଲେ । ସେ ଓଡ଼ିଶା ବିଧାନସଭା, ଶାସନବିଧାୟକ ସଭା ଓ ଲୋକସଭାର ସଭ୍ୟ ଥାଇ ବହୁ ସମସ୍ୟାରେ ତାଙ୍କର ସ୍ୱାଧୀନ ମତ ପ୍ରକାଶ କରୁଥିଲେ ।

ସେ ସାହିତ୍ୟ ଏକାଡେମୀର ସଭାପତି ମଧ୍ୟ ଥିଲେ । ଶେଷ ଜୀବନ ପର୍ଯ୍ୟନ୍ତ ସେ ସାହିତ୍ୟ କ୍ଷେତ୍ରରେ ଜଣେ ଲେଖକ ଓ ଭାବୁକ ଭାବରେ ତାଙ୍କର ଅଶେଷ ଦାନ ଦେଇ ଯାଇଛନ୍ତି । ସେ ନିଜକୁ ଗୋଟିଏ ଅନୁଷ୍ଠାନରେ ପରିଣତ କରିଥିଲେ । 'ସମାଜ' ସମ୍ପାଦକ ଭାବରେ ସେ ମୋ ନିକଟକୁ ପଠାଇଥିବା ତାଙ୍କର ଏକ ଲେଖା ତାଙ୍କ ମୃତ୍ୟୁର ଦିନକ ପୂର୍ବରୁ ମୁଁ ପାଇଥିଲି । ତାଙ୍କ ସ୍ମୃତି କଦାପି ଭୁଲି ହେବ ନାହିଁ । ସେ ଧରାପୃଷ୍ଠରେ ନାହାନ୍ତି, କିନ୍ତୁ ଭାବରାଜ୍ୟରେ ସେ ଉତ୍କଳବାସୀଙ୍କର ଚିର ସାଥୀ ଓ ଚିର ପୂଜ୍ୟ ।

ଅନ୍ଧାର ଗୃହଅଢ଼େ, ଚନ୍ଦ୍ରଭିର ଆଲୁଅ ଜାଳ
ଘନ ତମିର ଚିରି
ଏକାକୀ ପଥ ଯାଚି ।

—ଲକ୍ଷ୍ମୀନାରାୟଣ

# ସ୍ମୃତି-ଅର୍ଘ୍ୟ

## ଶ୍ରୀ ଉପେନ୍ଦ୍ର ତ୍ରିପାଠୀ

୧୯୫୭ ମସିହାର ଡିସେମ୍ବର ଶେଷ ସପ୍ତାହ । ଏବର୍ଷ ଶୀତର ପ୍ରକୋପ ଟିକିଏ କମ୍ ଥାଏ । ବିଶେଷତଃ ଉତ୍ତର ଭାରତରେ । ଅନ୍ୟବର୍ଷମାନଙ୍କରେ ସାଧାରଣତଃ ଏହି ସମୟରେ ଉତ୍ତର ଦିଗରୁ ଶୀତଳଦମ୍କା ପବନ ପ୍ରବାହିତ ହୋଇ ଏ ଅଞ୍ଚଳର କର୍ମ-ଚଞ୍ଚଳ ସ୍ଥାନଗୁଡ଼ିକୁ ନୀରବ, ନିସ୍ପନ୍ଦ କରି ଦେଇଥାଏ । ଏ ବର୍ଷ କିନ୍ତୁ ସେପରି ଘଟି ନ ଥିଲା । ଶ୍ରୀ ଗୌରୀ-କୁମାର ବ୍ରହ୍ମା, ଶ୍ରୀ ଜୟକୃଷ୍ଣ ମିଶ୍ର, ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର ଓ ମୁଁ—ଚାରିଜଣିଆ ଗୋଟିଏ କ୍ଷୁଦ୍ର ପ୍ରତିନିଧି ଦଳ ଦିଲ୍ଲୀରେ ଅନୁଷ୍ଠିତ 'ନିଖିଳ ଏସିଆ ଲେଖକ ସମ୍ମିଳନୀ'ରେ ଯୋଗ-ଦେବାକୁ ଓଡ଼ିଶାରୁ ଯାଇଥାଉଁ । ୨୩ ତାରିଖରେ ଏହା ଉଦ୍-ଘାଟିତ ହେଲା—ମାତ୍ର ଆମେ ୨୪ ତାରିଖ ପୂର୍ବାହ୍ଣରେ ସେଠାରେ ପହଞ୍ଚିଲୁ । ସମ୍ମିଳନୀରେ ପାଦଦେଲାକ୍ଷଣି ଅପ୍ରତ୍ୟାଶିତଭାବରେ ପ୍ରଥମେ ଯେଉଁ ଦୀର୍ଘକାୟ ଓଡ଼ିଆ ଜଣକ ସେଠାରେ ଭେଟିଲୁ —ସେ ହେଉଛନ୍ତି ଆମର ଆଜିର ସେହି ସ୍ୱର୍ଗୀୟ ବରେଣ୍ୟ ସାହିତ୍ୟିକ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ।

ବାର୍ଦ୍ଧକ୍ୟର ଆକ୍ରମଣ ସେତେବେଳେ ମଧ୍ୟ ତାହାଙ୍କୁ ଗ୍ରାସ କରିଥାଏ । ଭଗ୍ନଦେହରେ ବାଡ଼ିଖଣ୍ଡିଏ ଧରି ସେ ସେଠାରେ ଆମ୍ଭମାନଙ୍କ ପ୍ରତୀକ୍ଷାରେ ରହିଥାନ୍ତି । ଆମକୁ ଦେଖିଦେଲାକ୍ଷଣି ଆନନ୍ଦରେ ତାଙ୍କର ମୁଖ କୁଞ୍ଚୁମୋଟ ହୋଇଗଲା ।

ମୋର ମନେହୁଏ ମୋତେ ହିଁ ତାଙ୍କର ପ୍ରଥମ ପ୍ରଶ୍ନ-ହେଲା, 'ଉପେନ୍ଦ୍ର, ତୁମେ ଆସିଛ ?' ତାହାପରେ ଗୌରୀବାବୁଙ୍କୁ ଲକ୍ଷ୍ୟକରି କହିଲେ, 'ଗୌରୀ, ଆଜିର ୨ୟ ବୈଠକରେ ଭାରତୀୟ ସ୍ତରରେ ପ୍ରତ୍ୟେକ ପ୍ରାଦେଶିକ ଭାଷାର ଇତିବୃତ୍ତ ଆଲୋଚିତ ହେବ । ତା'ପାଇଁ ପ୍ରସ୍ତୁତ ହୋଇ ଆସିଛ ତ ?' ଗୌରୀବାବୁ ଉତ୍ତରଦେଲେ 'ନା, ସେ ସମ୍ବନ୍ଧରେ ଆମେ କୌଣସି ଚିଠାକରି ନାହୁଁ ।' ସଙ୍ଗେ ସଙ୍ଗେ ସାହୁଜୀ ତାଙ୍କର ଖଣ୍ଡିଏ ବନ୍ଦେଇଖାତାରୁ ୩।୪ ଖଣ୍ଡ କାଗଜ ଚିରିନେଇ ଗୌରୀବାବୁଙ୍କ ହାତକୁ ବଢ଼ାଇଦେଲେ ଓ କହିଲେ 'ଆଉ ସମୟ ନାହିଁ, ଯାହା ଆସୁଚି ଶୀଘ୍ର ଗୋଟାଏ ଲେଖିନିଅ; ନଚେତ୍ ଆମକୁ ଆଜି ବଡ଼ ଅପଦସ୍ତ ହେବାକୁ ପଡ଼ିବ ।' ପତ୍ରକୁ ସତ ଲେଖା ସରିବାର ଅଳ୍ପ ସମୟ ପରେ ସେଦିନର ୨ୟ ବୈଠକରେ ଓଡ଼ିଶା ପକ୍ଷରୁ ଭାଷା ଆଲୋଚନା ଚକ୍ରରେ ଯୋଗଦେବାକୁ ତାଙ୍କର ଅସୀମ ସେହି ସାହୁଜୀଙ୍କୁ । ଆମ୍ଭେମାନେ ମନ୍ତ୍ରମୁଗ୍ଧ ହୋଇଗଲୁ । ସେତେବେଳେ ସାହୁଜୀଙ୍କର ସେ ସମୟୋପଯୋଗୀ ଅଭ୍ରାନ୍ତ ଦୂରଦର୍ଶିତା କାର୍ଯ୍ୟରେ ପରିଣତ କରିଯାଇ ନ ଥିଲେ ଆମ୍ଭମାନଙ୍କୁ ଯେ କିଭଳି ଏକ ଜାତୀୟ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା, ତାହା ଭାବିଲେ ଆଜି ମଧ୍ୟ ମନରେ ଆତଙ୍କ ଆସେ ।

ବିଜ୍ଞାନ ଭବନର ୨ୟ ମହଲରେ ଏ ଆଲୋଚନା ଚକ୍ର ଚାଲିଥାଏ । ତେଣୁ ମୋ କାନ୍ଧଉପରେ ହାତ ପକାଇ ମୋତେ ତାଙ୍କର ଚିରସହଚର ଅଳମାଙ୍କାର ବ୍ୟାଗଟି ଧରାଇଦେଇ ବାଡ଼ିଟେକି କିପରି ସେ ଅନେକ ସମୟରେ ଯିବାଆସିବା କରନ୍ତି ଏବଂ ଏସିଆ ମହାଦେଶର ତଥା ଭାରତର ବିଭିନ୍ନ ପ୍ରାଦେଶିକ ସରକାରମାନେ ସେମାନଙ୍କ ପ୍ରତିନିଧିମାନଙ୍କ ପାଇଁ ଅକାତରରେ ଅଜସ୍ର ଅର୍ଥ ବ୍ୟୟ କରୁଥିବା ସ୍ଥଳେ ଓଡ଼ିଶା ସରକାର କାହିଁକି ଯେ ଏପରି ନିର୍ଲିପ୍ତଭାବ ଧରିଛନ୍ତି କହି ମର୍ମାହତ ହେଉଥାନ୍ତି ।

ପରଦିନ ସକାଳ ବୈଠକର ଆଲୋଚନାରେ ଭାଗ-ନେବା ପାଇଁ ସେହିପରି ଓଡ଼ିଆ ପ୍ରତିନିଧିବୃନ୍ଦଙ୍କୁ ସାମାନ୍ୟ ସ୍ଲିପ୍ ଖଣ୍ଡିଏ ଲେଖାଇ ଦେବାକୁ କେତେଖଣ୍ଡ ଫୁଲ୍‌ସ୍କାପ୍ କାଗଜ ଆବଶ୍ୟକ ପଡ଼ିଲା; ମାତ୍ର କାହାପାଖରେ ଅଛି ଯେ କିଏ ଦେବ ? ତେଣୁ ହସ ହସ ବଦନରେ ସମସ୍ତେ ସେହି ଦାନବୀର ସାହୁଜୀଙ୍କ ଆଡ଼କୁ ସତୃଷ୍ଣନୟନରେ ଚାହିଁ ରହିଲେ । ସେ ତତ୍‌କ୍ଷଣାତ୍ ପୂର୍ବପରି ଖାତାଚିରି ସମସ୍ତଙ୍କୁ କାଗଜ ଯୋଗାଇଦେଲେ ଏବଂ ମୃଦୁ ହସି କହିଲେ 'ଇଏ ବି ଆମ ଓଡ଼ିଆ ଜାତିର ଦୈନ୍ୟର ଏକ ପ୍ରତୀକ ।' ଏହିପରି ସାହୁଜୀଙ୍କର ଶତ ଶତ ଭାବପୂର୍ଣ୍ଣ ରସିକତା ଓଡ଼ିଶାରେ ସର୍ବତ୍ର ବିଛୁରିତ ହୋଇ ରହିଛି ।

ମହାତ୍ମାମାନଙ୍କର ଦୈନନ୍ଦିନ ଜୀବନ ସାଧାରଣତଃ ଘଟଣା ବହୁଳ । ପ୍ରବହମାନ ମହାନଦୀରୁ କେତେ ଯେ ଶାଖାପ୍ରଶାଖା ବାହାରି କେଉଁଆଡ଼େ ବହି ଚାଲିଥାଏ ତାହାର ଇୟତ୍ତା ନ ଥାଏ । ସର୍ବତ୍ର ପ୍ରାଚୁର୍ଯ୍ୟର ସମାବେଶ । ଏହି ପ୍ରାଚୁର୍ଯ୍ୟରେ ଲୋକ ଆତ୍ମବିସ୍ମୃତ ହୋଇପଡ଼େ । କୌଣସି ଗୋଟିକୁ ଦୃଢ଼ରୂପେ ଧରିରଖିବାକୁ ସେତେବେଳେ ସେ ଆବଶ୍ୟକ ମନେ କରେନାହିଁ । ମାତ୍ର ମୃତ୍ୟୁ ଯେତେବେଳେ ଅକସ୍ମାତ୍ ସେହିମହାନଦୀକୁ ଶୋଷିନିଏ, ଲୋକ ଅଧୀର ହୋଇପଡ଼େ । ସେତେବେଳେ ସେ ମର୍ମେ

ମର୍ମେ ଅନୁଭବ କରେ ଏକ ଗଭୀର ଅତୃପ୍ତି । ଦେଖେ—ସ୍ରୋତର ଗତ ଏକାବେଳକେ ରୁଦ୍ଧ । ଚତୁର୍ଦ୍ଦିଗ ଅନ୍ଧକାର୍-ଛନ୍ନ । ଏତକିବେଳେ ଗୋଟି ଗୋଟି ହୋଇ ମନରେ ଫୁଟି-ଉଠେ ଅସଂଖ୍ୟ ସ୍ମୃତି-ସଙ୍କେତ ।

ଆଜି ମହାପ୍ରାଣ ସାହୁଜୀଙ୍କ ହରାଇ ଆମ୍ଭମାନଙ୍କର ଠିକ୍ ସେହି ଦଶା । ସେ ସମଗ୍ର ଓଡ଼ିଶାରେ ଏଭଳି ଏକ ସ୍ମୃତି-ଚିହ୍ନ ଗଢ଼ିଦେଇ ଯାଇଛନ୍ତି; ଯାହାକି ବର୍ଷ ବର୍ଷ ଧରି ଅନୁଧ୍ୟାନ କଲେ ମଧ୍ୟ ସମ୍ଭବ ନାହିଁ । ସୌଭାଗ୍ୟବଶତଃ ମୋତେ ବହୁବାର ତାହାଙ୍କ ସଂସ୍ପର୍ଶରେ ଆସିବାକୁ ପଡ଼ିଛି । ତେଣୁ ସେଗୁଡ଼ିକ ମୋର ସ୍ମୃତି – ସମ୍ବଳ ହୋଇ ରହିବା ସ୍ୱାଭାବିକ ।

ସେ ବାଟରେ ଘାଟରେ ଯେଉଁଠି ଯେତେବେଳେ ମୋତେ ଦେଖି ପକାନ୍ତି ତାଙ୍କ ଖାତାଟି ମୋଆଡ଼କୁ ବଢ଼ାଇ ଦିଅନ୍ତି ଗୋଟାଏ କିଛି କବିତା ମନକୁଗଢ଼ି ସେଥିରେ ଲେଖିଦେବାକୁ । ଏଥିରେ ତାଙ୍କର ଅପାର ଆନନ୍ଦ । ସେତ ଆଉ ଆଜି ନାହାନ୍ତି; ଖାତା ବଢ଼ାଇଦେବ କିଏ ?

ତେଣୁ ତାଙ୍କର ଆଜି ଏ ପବିତ୍ର ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ତାହାଙ୍କ ଉଦ୍ଦେଶ୍ୟରେ ସ୍ମୃତି-ଅର୍ଘ୍ୟରୂପେ ପଦେ ଅଧେ କବିତା ବାଢ଼ିଦେଲା ଅସଙ୍ଗତ ହେବ ନାହିଁ ।

ନିର୍ଝର ତବ ଯାଇଛି ହଜି ହେ
ଶୁଷ୍କ ମରୁର ଧାରେ
ଛୁଟିବ କି ଆଉ କବିତା-ଉତ୍ସ
ମାଟିର କଳମ ଗାରେ ?
ଅନ୍ଧ ବଧିର ଛନ୍ଦ-ଶିକୁଳି
ଦେଇଥିଲ ଦିନେ ଖଞ୍ଜି
କିଛି ନ ବିଚାରି ଅଥଳ ବାଥିରେ
ସେ ଧାରା ଛୁଟିଛି ଆଜି ।
ସମ୍ମୁଖେ ତବ ଯେତେ ଯା' ଆସିଛୁ
ଆଦରେ ଦେଇଛ ବୋଲ
ଚିରଦିନ ତୁମେ ପ୍ରିୟ ଭୋଳାନାଥ,
ଅଳପ କଥାରେ ଭୋଳ ।
କଳନାରେ ଆଜି ଅକଳନ ତୁମେ
ଗଭୀର ସାଗର ସମ
ଶୁଭ୍ର ଶୀତଳ ଆଲୋକରେ ରହି
ନେଇ ଏ ଅର୍ଘ୍ୟ ମମ ।

---

ଯା ଲଭି ଯହିଁ ନ ମିଳେ ପରମ ପ୍ରୀତି ସ୍ନେହ ଏ······
ଯାଇଛି ଯାହା ଯାଉ ତାହା
ତା' ଆଶାରେ ଆଉ ରହିବ କାହିଁକି ?
ଜୀବନ ମୋର ସରସ କରିବ—
ଅନ୍ୟନ୍ତ ସେହିଁ ସଚ୍ଚିଦାନନ୍ଦ
ଘନ ରସକୁ ଲଭି ।

—ଲକ୍ଷ୍ମୀନାରାୟଣ

# ସାହୁଜୀଙ୍କ ସାନ୍ନିଧ୍ୟ

## ଶ୍ରୀ ଶ୍ୟାମସୁନ୍ଦର ମିଶ୍ର

ପୂଜ୍ୟ ସାହୁଜୀଙ୍କ ସହିତ ମୋର ୨୮ ବର୍ଷ ବ୍ୟାପୀ ଦୀର୍ଘ ପରିଚୟ ମଧ୍ୟରେ ମୁଁ ଏତିକି ନିଶ୍ଚିତ ଭାବରେ ଜାଣିଥିଲି ଯେ ସାହୁଜୀ ଥିଲେ ଜନତାର ଲୋକ । ନିଜେ ବେଶୀ ପଢ଼ିଛନ୍ତି ବା ବହୁ ଦେଶ ବୁଲିଛନ୍ତି ବୋଲି ସେ ନିଜକୁ ତାଙ୍କ ଦେଶର ଅଗଣିତ ଭାଇ ଭଉଣୀଙ୍କଠାରୁ ଅଲଗା କରି ଦେଖୁ ନ ଥିଲେ । ଶିକ୍ଷିତ ଲୋକଙ୍କ ମେଳରେ ତାଙ୍କ ମନ ଯେପରି ଉତ୍ଫୁଲ୍ଲ ରହୁଥିଲା, ଅତି ଅଶିକ୍ଷିତ ଗରିବଗୁରୁବାଙ୍କ ମେଳରେ ମଧ୍ୟ ସେ ସେପରି ଉତ୍ଫୁଲ୍ଲ ଭାବରେ କାମ କରୁଥିଲେ । ସେ ଚୌଦ୍ୱାରରେ ଗ୍ରାମ-ସଂଗଠନ କେନ୍ଦ୍ରଟିଏ ଖୋଲି ରହୁଥିଲା-ବେଳେ ତାଙ୍କୁ ଜଣେ ବାବୁଭାୟା ଲୋକ ବୋଲି ତାଙ୍କ ଆଖପାଖ ଲୋକେ କେବେହେଲେ ଭାବୁ ନ ଥିଲେ । ସେମାନଙ୍କର ଅତି ଆପଣାର ଲୋକଭଳି ସାହୁଜୀ ସେମାନଙ୍କ ସହିତ କାରବାର କରୁଥିଲେ । ଏହାର ଫଳରେ ତାଙ୍କ ଜୀବିତାବସ୍ଥାରେ ସେ ଚୌଦ୍ୱାର ଆଖପାଖ ଅଞ୍ଚଳର ବହୁ ଉନ୍ନତି କରି ପାରିଥିଲେ । ସ୍ୱର୍ଗୀୟ ଭୁବନାନନ୍ଦ ଦାସ ଦିନେ ଲେଖକକୁ କହିଥିଲେ ଯେ ଓଡ଼ିଶାରେ ଅତି ଉଚ୍ଚଶିକ୍ଷା ଲାଭକରି ଯେଉଁ ମୁଷ୍ଟିମେୟ ଲୋକେ ଅତି ସରଳ ଜୀବନଯାପନ କରିବା ପାଇଁ ସମର୍ଥ ହୋଇଥିଲେ, ସାହୁଜୀ ଥିଲେ ସେମାନଙ୍କ ଭିତରୁ ଅନ୍ୟତମ । ତାଙ୍କ ମନରେ ତଥାକଥିତ ଶିକ୍ଷିତସୁଲଭ ବଡ଼ିମା ବା ଅଭିମାନ କେବେହେଲେ ସ୍ଥାନ ପାଇ ନ ଥିଲା । ଗୋଟିଏ ସମୟର କଥା—୧୯୪୨-୪୩ ମସିହା—ବଙ୍ଗ ସହିତ ଓଡ଼ିଶାର ବହୁ ଜାଗାରେ ବିଶେଷତଃ ବାଲେଶ୍ୱର ତଥା ଗଞ୍ଜାମରେ ପ୍ରବଳ ବାତ୍ୟା ଏବଂ ଖାଦ୍ୟାଭାବ । ଠକ୍କରବାପାଙ୍କ ନେତୃତ୍ୱରେ ଗୋଟିଏ ରିଲିଫ କମିଟି ଗଢ଼ା ଯାଇଥାଏ, ଗରିବ ଲୋକଙ୍କୁ ସାହାଯ୍ୟ ଦେବା ପାଇଁ । ଏହି ରିଲିଫ କମିଟି ଲାଗି ଚାନ୍ଦା ଆଦାୟ କରିବା ପାଇଁ ପୂଜ୍ୟ ଲକ୍ଷ୍ମୀନାରାୟଣ ବାବୁ, ବର୍ତ୍ତମାନ ପାଟନା ହାଇକୋର୍ଟର ଜଜ୍ ଶ୍ରୀଯୁକ୍ତ ହରିହର ମହାପାତ୍ର ଓ ମୁଁ ତିନିହେଁ ଯାଇଥାଉ ବମ୍ବେ । ସେଠାରେ ପ୍ରତିଦିନ ଆମକୁ ବହୁ ବିଶିଷ୍ଟ ଲୋକଙ୍କ ସହିତ ସାକ୍ଷାତ କରିବା ପାଇଁ ହୁଏ । ହରିହର ବାବୁ ଓ ମୁଁ ଯେତେଦୂର ସମ୍ଭବ ଭଲ ପୋଷାକ ପିନ୍ଧି ବାହାରୁ ଚାନ୍ଦା ଆଦାୟ କରିବା ପାଇଁ; କିନ୍ତୁ ଲକ୍ଷ୍ମୀନାରାୟଣ ବାବୁଙ୍କ ଲୁଗାପଟାର କିଛି ଠିକଣା ନ ଥାଏ । ଦିନ ଅନ୍ୟ କୌଣସି ପୋଷାକ ନ ଥିବା ହେତୁ ବୋଧହୁଏ ସେ ଦକ୍ଷିଣୀମାନଙ୍କ ଭଳି ଧୋତି ଫାଲ୍ଟା ପିନ୍ଧି ବାହାରିଲେ । ମୁଁ ତାହାର ପ୍ରତିବାଦ କଲି । କହିଲି, ଭଲ ଧୋତିଖଣ୍ଡେ ପିନ୍ଧନ୍ତୁ । ସେ ଉତ୍ତରରେ ମୋତେ କହିଲେ, "ମତେ ସିନା ତୁମେ ଭଲ ଧୋତିଖଣ୍ଡେ ପିନ୍ଧିବା ପାଇଁ ପରାମର୍ଶ ଦେଲ, ମହାତ୍ମାଗାନ୍ଧିଙ୍କ ପୋଷାକର କିଏ ସମାଲୋଚନା କରୁଛି ? ଏଥିରୁ ଜଣାଯାଉଛି ପୋଷାକଟା ମଣିଷ ପକ୍ଷରେ ବଡ଼ କଥା ନୁହେଁ ।" ଲକ୍ଷ୍ମୀନାରାୟଣ ବାବୁ ଥରେ ଯାହା ସ୍ଥିର କରୁଥିଲେ, ସେଥିରୁ ତାଙ୍କୁ ଟଳାଇବା କାଠିକର ପାଠ ଥିଲା । ସେ ନିଜେ ମତେ କହିବା କଥା । ଥରେ ଠିକ୍ ହେଲା ଯେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ଉତ୍କଳ ସମ୍ମିଳନୀ ପକ୍ଷରୁ ଗୋଟିଏ ଡେପୁଟେସନ୍ ଲର୍ଡ଼ ୱେଲିଂଟନ୍‌ଙ୍କ ସହିତ ଦେଖା କରିବ । ସେଥିରେ ପାରଳାଖେମୁଣ୍ଡିର ବର୍ତ୍ତମାନ ମହାରାଜା ନେତୃତ୍ୱ କରିବେ ଏବଂ ସର୍ବଶ୍ରୀ ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ, ଲକ୍ଷ୍ମୀନାରାୟଣ ସାହୁ ପ୍ରଭୃତି ଉକ୍ତ ଡେପୁଟେସନରେ ସଭ୍ୟ ରହିବେ । ସେତେବେଳେ ବ୍ରିଟିଶ ଅମଳ—ଗୋରା ହାକିମଙ୍କ ସହିତ ଦେଖା କରିବା ଅର୍ଥ କୋଟ୍, ପେଣ୍ଟ୍, ଟାଇ ପ୍ରଭୃତି ପିନ୍ଧିବା । ଉତ୍କଳ ସମ୍ମିଳନୀ ପକ୍ଷରୁ ଯେଉଁ ଡେପୁଟେସନ ଯିବାର ବ୍ୟବସ୍ଥା ହୋଇଥିଲା, ତାହାର ପ୍ରତ୍ୟେକ ସଭ୍ୟ କୋଟ୍, ପେଣ୍ଟ୍, ଟାଇ ପିନ୍ଧିବାରେ ଅଭ୍ୟସ୍ତ ଥିଲେ, କେବଳ ଲକ୍ଷ୍ମୀନାରାୟଣ ବାବୁଙ୍କ ଛଡ଼ା । ପାରଳାଖେମୁଣ୍ଡି ମହାରାଜା ଧରି ବସିଲେ ଯେ ଲକ୍ଷ୍ମୀନାରାୟଣ ବାବୁଙ୍କୁ ଅନ୍ୟମାନଙ୍କ ଭଳି କୋଟ୍, ପେଣ୍ଟ୍ ପିନ୍ଧିବା ପାଇଁ ହେବ; କିନ୍ତୁ ଲକ୍ଷ୍ମୀନାରାୟଣ ବାବୁ କହିଲେ ସେ ଡେପୁଟେସନରେ ନ ଯିବେ ପଛେ କୋଟ୍, ପେଣ୍ଟ୍ ପିନ୍ଧିବେ ନାହିଁ । ଶେଷରେ ଲକ୍ଷ୍ମୀନାରାୟଣ ବାବୁଙ୍କ ବାଲ୍ୟବନ୍ଧୁ ସ୍ୱର୍ଗୀୟ ଭୁବନାନନ୍ଦ ଦାସଙ୍କ ମଧ୍ୟସ୍ଥତାରେ ଏହି ବିବାଦର ଏକ ସମାଧାନ ହେଲା, ଲକ୍ଷ୍ମୀନାରାୟଣ ବାବୁ ନେକଚପା ଲମ୍ବା କୋଟଟିଏ ପିନ୍ଧି ଡେପୁଟେସନରେ ଯୋଗ ଦେଲେ । ତାଙ୍କ ଘରେ ଏହି ଡେପୁଟେସନର ଗୋଟିଏ ଫଟୋ ଅଦ୍ୟାପି ରହିଛି ।

ଜୀବନରେ ସରଳତା ତଥା ସରସତା ଏବଂ କର୍ମରେ ନିର୍ଭୀକତା, ଥିଲା ଲକ୍ଷ୍ମୀନାରାୟଣ ବାବୁଙ୍କର ବିଶିଷ୍ଟ ଗୁଣ । ସେ ଜୀବନକୁ ଯେପରି ଉପଭୋଗ କରି ଶିଖିଥିଲେ, ଅତି ଆରାମରେ ଦିନ କଟାଉଥିବା ଖୁବ୍ କମ ଲୋକ ସେହିଭଳି

ଆନନ୍ଦ ଉପଭୋଗ କରୁଥିବେ । ଦିନ ଦିନ ଧରି ଲକ୍ଷ୍ମୀନାରାୟଣ ବାବୁ ଥିଏଟର ଦେଖିଛନ୍ତି—ସଙ୍ଗୀତଜ୍ଞଙ୍କ ଗନ୍ଧର୍ବରେ ସମସ୍ତ କଟାଇଛନ୍ତି । ବୃଦ୍ଧାବସ୍ଥାରେ ଗୋଟିଏ ସେତାର କିଣି ବଜାଇବା ପାଇଁ ଶିଖିଛନ୍ତି । ଏସବୁ ଥିଲା ତାଙ୍କର ଜୀବନ ଉପଭୋଗର ସାମଗ୍ରୀ । ସେ କର୍ମଠ ଥିଲେ । ଅଭାବ, ଅନାଟନବେଳେ ବଡ଼ା ସୁନ୍ଦର ଧରି ଓଡ଼ିଶାର ଏକ ପ୍ରାନ୍ତରୁ ଅପରପ୍ରାନ୍ତ ଯାଏ ବୁଲି ଆସୁଥିଲେ । ଏହା ବୋଲି ତାଙ୍କର ଜୀବନ ଶୁଷ୍କ କିମ୍ବା ନୀରସ ନ ଥିଲା । ଯେ ବହୁ ଧରଣର ଲୋକଙ୍କ ସହିତ ଏତେ ପ୍ରୀତିପ୍ରାଣରେ ମିଶି ପାରୁଥିଲେ ସେ ସେହି ଅବସ୍ଥାରେ ତାଙ୍କୁ ଯେ ଦେଖିଛି ସେ ନିଶ୍ଚୟ ମନେକରିବ ଯେ ଲକ୍ଷ୍ମୀନାରାୟଣ ବାବୁ ଛଣକୋପୀ ଥିଲେ ହେଁ ଏକରକମ ଅଜାତଶତ୍ରୁ ଥିଲେ । ତାଙ୍କ ଜୀବନର ବ୍ରତ ଥିଲା "ବସୁଧୈବ କୁଟୁମ୍ବକମ୍" । ସାରା ଦୁନିଆକୁ ସେ ନିଜର ପରିବାର ବୋଲି ମନେ କରୁଥିଲେ । ଲକ୍ଷ୍ମୀନାରାୟଣ ବାବୁ ଯାହା ଠିକ୍ ବୋଲି ମନେ କରୁଥିଲେ, ଶତ ବାଧାବିଘ୍ନର ସମ୍ମୁଖୀନ ହେଲେ ମଧ୍ୟ ତାହା ସେ ପରିତ୍ୟାଗ କରୁ ନ ଥିଲେ । ତାଙ୍କୁ ଭୟଭୀତ କରାଇ କୌଣସି କାମ ହାସଲ କରି ହେବ, ତାଙ୍କ ସମ୍ପର୍କରେ ଏହା ଭାବିବା କଳ୍ପନାବିଳାସ ଛଡ଼ା ଆଉ କିଛି ନ ଥିଲା । ଉଦାହରଣ ସ୍ୱରୂପ ଓଡ଼ିଶା ବ୍ୟବସ୍ଥା ସଭାରେ ଭୂଡୁମା ଆନ୍ଦୋଳନର ସମର୍ଥନ କରି ଲକ୍ଷ୍ମୀନାରାୟଣ ବାବୁ ତତ୍କାଳୀନ ଶାସକଗୋଷ୍ଠୀର ବିରାଗଭାଜନ ହୋଇଥିଲେ । ଏହା ଫଳରେ ତାଙ୍କର ବହୁ ପୂର୍ବ ସଙ୍ଗୀ ଓ ଅନ୍ତରଙ୍ଗ ବନ୍ଧୁ ତାଙ୍କ ସହିତ କଥାଭାଷା ମଧ୍ୟ ବନ୍ଦ କରିଦେଲେ; କିନ୍ତୁ ଆମର ପ୍ରାଚୀନ ନୀତି ଗ୍ରନ୍ଥରେ ଯାହା ଲେଖାଅଛି "ମନ୍ତ୍ରଂ ବା ସାଧୟେତ୍, ଶରୀରଂ ବା ପାତୟେତ୍", । ଲକ୍ଷ୍ମୀନାରାୟଣ ବାବୁ କିନ୍ତୁ ନିଜ ସଂକଳ୍ପରୁ ଟଳେହେଲେ ଟଳିଲେ ନାହିଁ । ହୀରାକୁଦ ବନ୍ଧ ନିର୍ମାଣ ସଂପର୍କରେ ମଧ୍ୟ ତାଙ୍କର ମତ ଶାସକଗୋଷ୍ଠୀଙ୍କ ମତର ଅନୁକୂଳ ହେଲା ନାହିଁ । କେବଳ ଓଡ଼ିଶା ବିଧାନସଭାରେ ନୁହେଁ, ଶାସନବିଧାୟକ ସଭାରେ ମଧ୍ୟ ସାହସୀ ଭାରତର ଅବିସମ୍ବାଦୀ ନେତା ପଣ୍ଡିତ ଜବାହରଲାଲଙ୍କ ବିରୁଦ୍ଧରେ ନିଜ ମତ ପ୍ରକାଶ କରିବାକୁ କୁଣ୍ଠାବୋଧ କରୁ ନ ଥିଲେ । ସେ ଏହା କରି ପାରୁଥିଲେ, କାରଣ ତାଙ୍କର ଅଭାବ ଖୁବ୍ କମ୍ ଥିଲା । "ଯଦୃଚ୍ଛା ଲାଭ ସନ୍ତୁଷ୍ଟ", ଯେଉଁ ଲୋକର ଅଭାବ କମ୍, ସେ କେବେହେଲେ ପରମୁଖାପେକ୍ଷୀ ହୋଇ ରହିବା ପସନ୍ଦ କରେ ନାହିଁ । ସାହସୀ ମତ ବାରମ୍ବାର କହିଛନ୍ତି ସେ ହିନ୍ଦୁ ସେବକ ସଂଘଭଳି ଏକ ଅନୁଷ୍ଠାନରେ ଯୋଗ ଦେଇଥିବା ହେତୁ ଦୀର୍ଘଜୀବୀ ହୋଇ ପାରିଲେ, ନଚେତ୍ ତାଙ୍କର ପ୍ରକୃତି ଯାହା, ସେ ନିଶ୍ଚୟ ସନ୍ତ୍ରାସବାଦୀ ଆନ୍ଦୋଳନରେ ଯୋଗ ଦେଇଥାଆନ୍ତେ, ଫଳରେ ତାଙ୍କର ଅକାଳମୃତ୍ୟୁ ହୋଇଥାଆନ୍ତା ।

———

# କର୍ମବୀର ଲକ୍ଷ୍ମୀନାରାୟଣ

## ଶ୍ରୀ ବ୍ରଜବନ୍ଧୁ ଦାସ

ଲକ୍ଷ୍ମୀନାରାୟଣଙ୍କ ସମ୍ବନ୍ଧରେ କିଛି ଲେଖା ଦେବାକୁ ଅନୁରୋଧ ଆସିଲା । କିନ୍ତୁ କଣ ଲେଖିବି ବୋଲି ଭାବି ଭାବି ଅନେକ ସମୟ ବିତିଗଲା । ଲକ୍ଷ୍ମୀନାରାୟଣଙ୍କର ଗୋଟାଏ କଥା ମନେପଡ଼ିଲା । ସେ କହୁଥିଲେ "ଯେତେବେଳେ ଯେଉଁ ଭଲ ଭାବନା ଆସିବ, ତାକୁ ସାଙ୍ଗେ ସାଙ୍ଗେ ଲେଖି ପକାଇବ । ଛପା ହେଉ ବା ନ ହେଉ ସେ ଭାବନା ଗୁଡ଼ିକ କେବେ ନଷ୍ଟ ହେବ ନାହିଁ, ତାର ନିଶ୍ଚୟ ପ୍ରତିଫଳନ ହେବ ।" ତେଣୁ ସେହି କଥା ମନେପକାଇ ମୁଁ ଏ ଲେଖା ଲେଖୁଅଛି । ଯେତେବେଳେ ସେ 'ଷ୍ଟାର ଅଫ ଉତ୍କଳ' ଇଂରାଜୀ ସାପ୍ତାହିକ ଓ ଓଡ଼ିଆ ମାସିକ ପତ୍ରିକା 'ସହକାର'ର ସମ୍ପାଦକ ଥିଲେ । ମୁଁ କଲିକତାରେ ପଢ଼ୁଥିବାବେଳେ ସେ ଥରେ ମେସ୍‌କୁ ଯାଇ ମୋତେ କହିଲେ, "କିଛି ଲେଖା ଦିଅ, ତୁମେ ଯାହା ଦେବ ତାହାକୁ ମୁଁ ଛାପିଦେବି ଓ ତୁମ୍ଭେ ଲେଖାର ଛପା ଦେଖିଲେ ତୁମ୍ଭ ମନ ଖୁସି ହେବ ଏବଂ ଆହୁରି ଲେଖା ଲେଖିବାକୁ ପ୍ରେରଣା ପାଇବ ।" ତାଙ୍କର ପ୍ରେରଣାରେ ମୁଁ ଲେଖାଲେଖିର ଅଭ୍ୟାସ କଲି । ମୁଁ କେବଳ ନୁହେ ଓଡ଼ିଶାର ଶତାଧିକ ବ୍ୟକ୍ତିଙ୍କୁ ସେ ଲେଖକ କରାଇଛନ୍ତି । ସମସ୍ତଙ୍କ ଲେଖାର ସାହିତ୍ୟିକ ମୌଳିକତା ଅଛି କି ନାହିଁ, ସେ କଥା ଭବିଷ୍ୟତ ବିଚାର କରିବ । ଲକ୍ଷ୍ମୀନାରାୟଣ ଯେତେବେଳେ ଯାହା ପାଉଥିଲେ, ତାହା ଲେଖି ପକାଉଥିଲେ । ତଦ୍ଦ୍ୱାରା ସେ ଓଡ଼ିଆ ସାହିତ୍ୟର ଆକାର ବଢ଼ାଇ ଯାଇଅଛନ୍ତି । ସେ ଶତାଧିକ ପୁସ୍ତକ ରଚନା କରି ଯାଇଅଛନ୍ତି ଓ ନାନା ବିଷୟ ନାନା ଦିଗରୁ ଅବତାରଣା କରିଅଛନ୍ତି । ଗଦ୍ୟ, ପଦ୍ୟ, ଇତିହାସ, ଉପନ୍ୟାସ, ନାଟକ, ଗଳ୍ପ, ତର୍ଜମା, ଭୂଗୋଳ, ଆତ୍ମଜୀବନୀ, ଟୀକାଟିପ୍ପଣୀ, ରାଜନୀତି, ଅର୍ଥନୀତି, ଆଦିବାସୀ ସାହିତ୍ୟ, କେତେ ଯେ କଣ ତାର ଇୟତ୍ତା ନାହିଁ ।

ଆଜିକାଲି କୌଣସି ଜଣେ ବ୍ୟକ୍ତିଙ୍କର ମୃତ୍ୟୁ ହେଲେ ତାଙ୍କ ଶୋକ ସଭାରେ କୁହାଯାଉଅଛି ଯେ ସେ ଗୋଟିଏ ବ୍ୟକ୍ତି ନ ଥିଲେ କେବଳ ସେ ଗୋଟିଏ ଅନୁଷ୍ଠାନ ଥିଲେ ଓ ତାଙ୍କ ପରଲୋକ ଦ୍ୱାରା ସେ ସ୍ଥାନଟି ଶୂନ୍ୟ ରହିଗଲା । ମୁଁ ଲକ୍ଷ୍ମୀନାରାୟଣଙ୍କୁ ସେପରି ଭାବରେ ଚିତ୍ର କରୁନାହିଁ । ସେ ବିରାଟ ଥିଲେ ବୋଲି କହୁନାହିଁ । ସେ ଥିଲେ ଅସାଧାରଣ । ପ୍ରତି ମୁହୂର୍ତ୍ତରେ ସେ ଦେଶ, ସମାଜ ଓ ସାହିତ୍ୟ କଥା ଭାବୁଥିଲେ ଓ ଅଧ୍ୟବସାୟ ସହିତ ତାର ଶ୍ରୀବୃଦ୍ଧି ସାଧନ କରୁଥିଲେ । ଲକ୍ଷ୍ମୀନାରାୟଣ ଥରେ ତାଙ୍କ ଲେଖାଗୁଡ଼ିକ ଉତ୍କଳ ଗୌରବ ମଧୁସୂଦନଙ୍କୁ ଦେଖାଇଥିଲେ । ସେତେବେଳେ ତାଙ୍କର ଲେଖାର ପରିମାଣ ଏତେ ବେଶୀ ନ ଥିଲା । ତାହା ପ୍ରାୟ ୬୦ ବର୍ଷ ତଳର କଥା । ମଧୁସୂଦନ ତାଙ୍କୁ କହି ପକାଇଥିଲେ "ଆହେ ଲକ୍ଷ୍ମୀନାରାୟଣ ଓଡ଼ିଆ ସାହିତ୍ୟରେ ମୁଁ ପଞ୍ଚସଖା ଶବ୍ଦ ଓ ସେମାନଙ୍କ ନାମର ଉଲ୍ଲେଖ ଦେଖିଛି । ଏହି କଟକରେ ଓଡ଼ିଆ ସାହିତ୍ୟର ନବୀନ ପଞ୍ଚସଖା ବିଶ୍ୱନାଥ (କର) ବ୍ରଜସୁନ୍ଦର (ଦାସ) ଗୋପାଳ (ଚନ୍ଦ୍ର ପ୍ରହରାଜ) ଭିକାରୀ (ଚରଣ ପଟ୍ଟନାୟକ) ଶଶି (ଭୂଷଣ ରାୟ)ଙ୍କୁ ଦେଖିଛି । ସେମାନଙ୍କ ସମବେତ ଚେଷ୍ଟାରେ ଓଡ଼ିଆ ସାହିତ୍ୟ ନୂତନ ଗଢ଼ି କରୁଛି । କିନ୍ତୁ ତୁମ୍ଭେ ଏକାଧାରରେ ପଞ୍ଚସଖାର ଠୁଳସମଷ୍ଟି ହେବାକୁ ଯାଉଛ । ତୁମ୍ଭେ ଜଣେ ପାଞ୍ଚଜଣ ସାହିତ୍ୟିକଙ୍କ କାର୍ଯ୍ୟ କରୁଅଛ । ତୁମ୍ଭର ଅଧ୍ୟବସାୟ ଜୟଯୁକ୍ତ ହେଉ; ଏହା ମୋହର ଆଶୀର୍ବାଦ ।"

ଲକ୍ଷ୍ମୀନାରାୟଣ ପଇଞ୍ଚଶ ବର୍ଷ ବୟସରେ ଏମ. ଏ. ପାସ କରିଥିଲେ । ବାଟରେ ଘାଟରେ ଗଲାବେଳେ ସଦେଶିପଙ୍କ ଭଳି ନୀତିଶିକ୍ଷା ଦେଉଥିଲେ । ତାଙ୍କର ଅଗାଧ ବ୍ୟାବହାରିକ ଜ୍ଞାନ ଥିଲା । ସେ ମଧୁସୂଦନ ବା ବିଶ୍ୱନାଥ କରଙ୍କ ଭଳି ଓଜସ୍ୱିନୀ ବକ୍ତୃତା ଦେଇପାରୁ ନ ଥିଲେ । ତଥାପି ସେ କୋମଳ ଧୀର ଭାଷାରେ ସଭାସମିତିରେ ଯାହା କହୁଥିଲେ, ତାର ପ୍ରଭାବ ଶ୍ରୋତୃବର୍ଗଙ୍କ ଉପରେ ଦାଗ ହୋଇ ରହିଯାଉଥିଲା । ତାଙ୍କର ଏ ବହୁତୋମୁଖୀ ଜ୍ଞାନପିପାସା ଓ ଜ୍ଞାନଚର୍ଚ୍ଚା ଯୋଗେ ତାଙ୍କୁ ଏକ ଚଳନ୍ତା ବିଶ୍ୱବିଦ୍ୟାଳୟ ବୋଲି କେହି କେହି କହୁଥିଲେ । ସେ କହୁଥିଲେ, ପ୍ରତ୍ୟେକ ବ୍ୟକ୍ତିଠାରେ ଯେଉଁସବୁ ସଦ୍‌ଗୁଣ ଅଛି, ତାକୁ ବାହାର କରିବା ଉଚିତ । ସେ ଜନସାଧାରଣଙ୍କ ମଧ୍ୟରେ ପ୍ରତ୍ୟେକ ସ୍ତରର ବ୍ୟକ୍ତିଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କରେ ସହଜରେ ଆସି ପାରୁଥିଲେ । ତାଙ୍କର ଏହି ଅମାୟିକ ସମ୍ପର୍କ ହେତୁ କେହି ତାଙ୍କର ଶତ୍ରୁ ବା ନିନ୍ଦୁକ ହୋଇପାରୁ ନ ଥିଲେ । ଲକ୍ଷ୍ମୀନାରାୟଣ ଜଣେ ଓଡ଼ିଆ ଜାତୀୟତାବାଦୀ ଥାଇ ନିଖିଳ ଭାରତୀୟ ଅନୁଷ୍ଠାନ ଭାରତ ସେବକ ସମିତିର ସଭ୍ୟ ହୋଇ ଓଡ଼ିଶା ସମ୍ପୃକ୍ତିକୁ ମହାଭାରତୀୟ

ଜାତୀୟ ସଂସ୍କୃତିର ଅଙ୍ଗୀଭୂତ କରାଇଥିଲେ । ଅବଶ୍ୟ ଭାରତୀୟ ଜାତୀୟ ମହାସଭା କଂଗ୍ରେସର ପ୍ରଥମାବସ୍ଥାରେ ଉତ୍କଳଗୌରବ ମଧୁସୂଦନ ଓ ଗୌରୀଶଙ୍କର ପ୍ରଭୃତି କଟକର ଉତ୍କଳ ଆସୋସିଏସନ ତରଫରୁ ପ୍ରତିନିଧି ଭାବରେ ଯାଇ ସେକାଳର କଂଗ୍ରେସରେ ଯୋଗଦାନ କରି ଓଡ଼ିଶାକୁ ଭାରତୀୟ ଜାତୀୟ ସଂହତି କ୍ଷେତ୍ରକୁ ଟାଣି ନେଇଥିଲେ; କିନ୍ତୁ ଲକ୍ଷ୍ମୀନାରାୟଣ ଭାରତ ସେବକ ସମିତିର ସଭ୍ୟ ହେବା ଫଳରେ ଓଡ଼ିଶା ସକ୍ରିୟ ଭାବରେ ଭାରତୀୟ ସଂହତିର ବିକାଶ କ୍ଷେତ୍ରରେ ଅଂଶ ଗ୍ରହଣ କଲା । ପୁଣି ଦୁର୍ଭିକ୍ଷବେଳେ ଠକ୍କର ବାପା ଓଡ଼ିଶାର ଦୈନ୍ୟଦୁର୍ଦ୍ଦଶା ଅପନୋଦନ ପାଇଁ ଯେଉଁ ହସ୍ତକ୍ଷେପ କରି ମହାତ୍ମାଗାନ୍ଧିଙ୍କ ଦୃଷ୍ଟି ଓଡ଼ିଶାକୁ ଆକର୍ଷଣ କରିଥିଲେ, ସେଥିରେ ଲକ୍ଷ୍ମୀନାରାୟଣଙ୍କ ଭାଗ କିଛି କମ ନୁହେଁ । ସେ ଏକ ସର୍ବଭାରତୀୟ ଅନୁଷ୍ଠାନର ସଭ୍ୟ ଥାଇ ଓଡ଼ିଶାକୁ ତାଙ୍କ କାର୍ଯ୍ୟକ୍ଷେତ୍ର କରିଥିଲେ । ସେ ଜଣେ ବଡ଼ ଆଶାବାଦୀ ଥିଲେ । କୌଣସି ଖରାପ ଘଟଣା ଘଟିଲେ ସେ ନିରାଶ ହେଉନ ଥିଲେ । ନଈବଢ଼ି ହେଲା, ଦୁର୍ଭିକ୍ଷ ପଡ଼ିଲା, ହଇଜା, କୁଷ୍ଠରୋଗ ବ୍ୟାପିଲା, ଏ ସବୁ ଦେଖି କହୁଥିଲେ "ପ୍ରକୃତି ତାର କାର୍ଯ୍ୟ କରିଯାଉଛି ଆମେ ଆମ କାମ କରିଯିବା । ଆମକୁ ଯାହା ଭଲ ଦେଖାଯାଉଛି ତାହା କରିବା, ନିଶ୍ଚେଷ୍ଟ ବା ନିରଳସ ହୋଇ ରହିବା ନାହିଁ । ଯେଉଁ ବ୍ୟକ୍ତି ତାର ସଂକୀର୍ଣ୍ଣ ନିଭୃତ କ୍ଷେତ୍ରରେ ଯେଉଁ ଭଲ କାମ କରିଯାଉଛି ତାକୁ ବାଛି ନେବା ।' ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ଗଠନ, ଦେଶ ମିଶ୍ରଣ କାର୍ଯ୍ୟରେ ସେ ସକ୍ରିୟ ଭାଗ ଗ୍ରହଣ କରିଥିଲେ ଓ ଉତ୍କଳ ସମ୍ମିଳନୀର ଏକ-ମୁଖ୍ୟ କର୍ମୀ ଥିଲେ । ଲକ୍ଷ୍ମୀନାରାୟଣ ଜଣେ ଉଦାରପନ୍ଥୀ ରାଜନୈତିକ ଥିଲେ । ସେ ସଂଘର୍ଷପ୍ରିୟ ନ ଥିଲେ । ଗଠନମୂଳକ କାର୍ଯ୍ୟରେ ସେ ସର୍ବଦା ଅଭିନିବିଷ୍ଟ ହୋଇ ରହୁଥିଲେ । ସବୁ ଘଟଣା ଓ ଜିନିଷର ଭଲ ଦିଗ ପ୍ରତି ସେ ଦୃଷ୍ଟି ଦେଉଥିଲେ । ତାଙ୍କର ଜୀବନ ନିସ୍ୱାର୍ଥପର ଓ କର୍ମମୟ ଥିଲା । ଓଡ଼ିଶାର ବିଭିନ୍ନ ସ୍ଥାନରେ ସେ ନାନା ଗଠନମୂଳକ ଓ ସାଂସ୍କୃତିକ ଅନୁଷ୍ଠାନ ଗଢ଼ି ଯାଇଛନ୍ତି । ଲକ୍ଷ୍ମୀନାରାୟଣଙ୍କ ଜୀବନକୁ ନାନା ଦିଗରୁ ନାନା ବ୍ୟକ୍ତି ଚିତ୍ରଣ କରିବେ ଓ କରୁଛନ୍ତି ମଧ୍ୟ । ମତେ ସବୁଠାରୁ ଭଲ ଲାଗେ ତାଙ୍କର ଓଡ଼ିଶାପ୍ରୀତି । ସେ ଓଡ଼ିଶାର ଗୌରବମୟ ପ୍ରାଚୀନ ଇତିହାସକୁ ଶ୍ଳୋକାକାରରେ ଲେଖି ଖଣ୍ଡିଏ ବହି ଛପାଇଛନ୍ତି । ସେ ବହିଖଣ୍ଡିକ ତାଙ୍କ ସଙ୍ଗେ ତାଙ୍କ ଘରେ ପଢ଼ିବାବେଳେ ସେ କହି ପକାଇଲେ ଯେ ମଧୁବାବୁଙ୍କ ଠାରୁ ସେ ପ୍ରେରଣା ପାଇ ଏ ପୁସ୍ତକ ଲେଖିଛନ୍ତି ଓ ମଧୁବାବୁଙ୍କ ସେ ସମ୍ପର୍କୀୟ ରଚନା ଉଦ୍ଧାର କରିଥିଲେ ।

"ଜାତି ଇତିହାସ ଜାତିର ନିର୍ଝର
ତହିଁ ବହେ ସଦା ଜାତି ପ୍ରାଣଧାର
ସେ ଧାରରୁ ନୀର ପିଇଛି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।
କଳକଳ ନାଦେ ଛୁଟିଛି ସେ ଧାର
ଅତୀତ କୀରତି ଗାଇ ନିରନ୍ତର
ଭାବି କୀରତିର ଉଦୟେ ନାଚୁଛି
ଯେସନ୍ତେ ଚନ୍ଦ୍ର ଦେଖି ନାଚେ ରତ୍ନାକର ।"

ତାଙ୍କର ମୃତ୍ୟୁର କିଛିଦିନ ପୂର୍ବରୁ ମୁଁ ତାଙ୍କୁ ଦେଖା କରିଥିଲି । ବାରଙ୍ଗ ନିକଟସ୍ଥ ନନ୍ଦନକାନନ ବିଷୟରେ ଚର୍ଚ୍ଚା ହୋଇଥିଲା । ସେ ଓ ମୁଁ ସାଙ୍ଗ ହୋଇ ଦିନେ ଦେଖିଯିବା କଥା ସ୍ଥିର ହୋଇଥିଲା । ଦୁର୍ଭାଗ୍ୟବଶତଃ ତାହା ହୋଇ-ପାରିଲା ନାହିଁ । ସେ କହୁ କହୁ କହି ପକାଇଲେ 'ନନ୍ଦନକାନନର ଚତୁଷ୍ପାର୍ଶ୍ୱବର୍ତ୍ତୀ ସାରଙ୍ଗଗଡ଼, ଯୁଝଗଡ଼ ଓ ଗ୍ରେଡ଼ଙ୍ଗଗଡ଼ ଓଡ଼ିଶାର ପତନ ଅଭ୍ୟୁଦୟ ସବୁ ଦେଖିଛି । ସମସ୍ତ ରାଜନୈତିକ ଘଟଣା ଏହିଠାରେ ଘଟିଛି । ଏହିସବୁ ଐତିହାସିକ ତଥ୍ୟ ଲେଖି ପ୍ରକାଶ ।" ଏହି ସ୍ମୃତି ଭୁଲି ହେବନାହିଁ । କେତେ ରଥୀ କେତେ ତ୍ୟାଗୀ ଏ ଦେଶରେ ଜନ୍ମ ହୋଇଛନ୍ତି; କିନ୍ତୁ ଲକ୍ଷ୍ମୀନାରାୟଣଙ୍କ ଭଳି ଜଣେ ଭଲ ମଣିଷ ଅସାଧାରଣ ।

— — —

# ପାଗଳ ଲକ୍ଷ୍ମୀନାରାୟଣ

## ଶ୍ରୀ ଗୋବିନ୍ଦଚନ୍ଦ୍ର ମିଶ୍ର

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଆଉ ଇହଜଗତରେ ନାହାନ୍ତି; ଏହା ସତ୍ୟ । ତଥାପି ଏହା ସ୍ୱୀକାର କରିବାକୁ ମନ କହୁ ନାହିଁ । ମୃତବ୍ୟକ୍ତିଙ୍କର ନାମ ଲୁଚିଯାଏ; କିନ୍ତୁ ଲକ୍ଷ୍ମୀନାରାୟଣ ବାବୁଙ୍କର ନାମ ଲୁଚିଯାଇ ନାହିଁ । ତାହାଙ୍କ ଚିତ୍ର ସବୁବେଳେ ମନରେ ଅଛି ଏବଂ ତାହାଙ୍କର ଗୁଣାବଳୀକୁ ଆମ୍ଭେମାନେ ସ୍ମରଣ କରୁଛେ । କେବଳ ସେତିକି ନୁହେଁ ସଭା ସମିତିରେ ଲକ୍ଷ୍ମୀନାରାୟଣ ବାବୁଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ଦେଶର ଭାବୀ କର୍ଣ୍ଣଧାରମାନଙ୍କୁ ଆହ୍ୱାନ କରାଯାଇଅଛି; ସୁତରାଂ ଆମ୍ଭମାନଙ୍କ ଦୃଷ୍ଟିପଥରୁ ସେ ଅପସରି ଯାଇଥିଲେ ମଧ୍ୟ ବର୍ତ୍ତମାନ ଆମ୍ଭମାନଙ୍କ ମନ ଓ ହୃଦୟରେ ଆସି ରହିଛନ୍ତି । ସୁତରାଂ ସେ ମରିନାହାନ୍ତି, ଜୀବିତ ଅଛନ୍ତି । ଯେତେଦିନ ପର୍ଯ୍ୟନ୍ତ ଆମ୍ଭେମାନେ ତାଙ୍କର ଗୁଣାବଳୀ ସ୍ମରଣ କରୁଥିବା, ସେତେଦିନ ପର୍ଯ୍ୟନ୍ତ ସେ ଜୀବିତ ରହିଛନ୍ତି ବୋଲି ମନେ ରଖିବାକୁ ହେବ । ଦେଶ ଓ ଜାତିର ସେବାରେ ଯେଉଁମାନେ ଜୀବନବ୍ୟାପୀ ସାଧନା କରିଛନ୍ତି, ଦେଶସେବା କାର୍ଯ୍ୟରେ କୌଣସି ପ୍ରକାର ଧନ, ମାନ କିମ୍ବା ପଦାଧିକାର ପାଇବାକୁ ଇଚ୍ଛା ନ କରି ସର୍ବଦା ଜନସେବା କରିଆସିଛନ୍ତି ସେମାନେ ଅମରତ୍ୱ ପ୍ରାପ୍ତ ହୁଅନ୍ତି । ତାହାଙ୍କର ମୃତ୍ୟୁ ଘଟିଲେ ମଧ୍ୟ ଦେଶବାସୀଙ୍କ ନିକଟରେ ସେ ଅମର । ତାହାଙ୍କ ଚିନ୍ତା ଓ କର୍ମ ଜାତି ଓ ଦେଶକୁ ଏକ ନୂତନ ଆଲୋକ ପ୍ରଦର୍ଶନ କରାଏ । ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ସାହୁଙ୍କ ପରି ନିର୍ଭୀକ ନିଷ୍କପଟ, ନିର୍ଲୋଭ, ସ୍ନେହପୂର୍ଣ୍ଣ, ଉଦାରହୃଦୟ ବ୍ୟକ୍ତି କ୍ୱଚିତ ଦେଖିବାକୁ ମିଳିବେ । ତାହାଙ୍କୁ ଅହଂକାର କିମ୍ବା ଅଭିମାନ ସ୍ପର୍ଶ କରି ନ ଥିଲା । ମୁହୂର୍ତ୍ତକ ପାଇଁ ସଂକୀର୍ଣ୍ଣ ସ୍ୱାର୍ଥସାଧନାର ଲିପ୍ସା ତାହାଙ୍କ ମନରେ ଜାଗ୍ରତ ହୋଇନାହିଁ । ତାଙ୍କର କାର୍ଯ୍ୟ ଓ ଚିନ୍ତା ଅତି ମହତ୍ ଓ ଉଦାର । ପ୍ରିୟାପ୍ରୀତି ଭାବନା ଥିବାର କେହି କହିପାରିବ ନାହିଁ । ସେ ଜଣେ ସର୍ବଜନ ପ୍ରିୟ ବ୍ୟକ୍ତି ଥିଲେ ।

ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ବାବୁଙ୍କଠାରୁ ବୟସରେ ମୁଁ ବଡ଼ । କିନ୍ତୁ ସେ ମୋର ଶିକ୍ଷକ ଥିଲେ । କଟକ ମିଶନସ୍କୁଲର ଶିକ୍ଷକ ରୂପରେ ସେ ପ୍ରବେଶ କଲେ ୧୯୧୭ମସିହାରେ ଆଇ. ଏ. ପାଶ କରି । ମୁଁ ସେତେବେଳକୁ ନବମ ଶ୍ରେଣୀରେ ପାଠ ପଢୁଥାଏ । ପ୍ରଥମେ ଛାତ୍ର ଶିକ୍ଷକ ହିସାବରେ ତାହାଙ୍କ ସହିତ ମୋର ପରିଚୟ ହେଲା । ସ୍କୁଲରେ ସେ ମୋର ଶିକ୍ଷକ ଓ ରାଜନୀତି ଏବଂ ଧର୍ମଚର୍ଚ୍ଚାରେ ସହାଧ୍ୟାୟୀ ଓ କର୍ମକ୍ଷେତ୍ରରେ ବହୁକାର୍ଯ୍ୟରେ ସେ ଥିଲେ ସହକର୍ମୀ । ୧୯୧୭ରୁ ୧୯୪୫ମସିହା ପର୍ଯ୍ୟନ୍ତ ତାହାଙ୍କ ସହିତ ମୋର ଯେଉଁ ସମ୍ବନ୍ଧ ଗଢ଼ି ଉଠିଥିଲା, ତାହା ଏତେ ଶୀଘ୍ର ପାସୋରିଯିବା ସହଜ ନୁହେଁ । ୧୯୧୦ମସିହାରେ ଭାରତକୁ ସ୍ୱାଧୀନ କରିବାର ଏକ ଭାବନା ସ୍ୱତଃ ମୋର ହୃଦୟରେ ଜାଗି ଉଠିଥିଲା । ସେହି ଭାବନାକୁ ଦୃଢ଼ କରିବାକୁ ମୁଁ ମୋର କେତେଜଣ ସହପାଠୀଙ୍କୁ ଧରି ଗୋଟିଏ ଦଳ ବାନ୍ଧିଥିଲି । ଆମ୍ଭ ଦଳର ଗୁପ୍ତ ବୈଠକ ସପ୍ତାହରେ ଦୁଇଥର ବସୁଥିଲା । ଦେଶସେବାରେ ଜୀବନ ଉତ୍ସର୍ଗ କରିବା ପାଇଁ ସଂକଳ୍ପ ଗ୍ରହଣ କରି ନିଜ ନିଜ ଜୀବନକୁ ଗଢ଼ିବା ଉଦ୍ଦେଶ୍ୟରେ ପାନ, ବିଡ଼ି, ଦାନ୍ତଘଷା ଗୁଣ୍ଡାଖୁ ଇତ୍ୟାଦିର ବ୍ୟବହାର ପରିତ୍ୟାଗ କରିଥିଲୁ । ତେଲ ଲଗାଉ ନ ଥିଲୁ ଏବଂ ନିରାମିଷ ଭୋଜନ କରି ଜୀବନ ଗଠନ କରିବାକୁ ପଣ କରିଥିଲୁ । ଲକ୍ଷ୍ମୀନାରାୟଣ ବାବୁ ଆମ୍ଭ ସହିତ ଯୋଗଦେଇ ଆମ୍ଭ ଦଳର ଗୁପ୍ତ ବୈଠକରେ ଯୋଗ ଦେଇଥିଲେ ଏବଂ ଆମ୍ଭମାନଙ୍କପରି ସବୁ ନିୟମ ମଧ୍ୟ ପାଳନ କଲେ । ଆମ୍ଭମାନଙ୍କ ସହିତ ବୈଠକରେ ଏକାଠି ବସି କୌଣସି ବିଷୟ ଆଲୋଚନା କଲାବେଳେ ଶିକ୍ଷକ ବୋଲି ତାଙ୍କର ଅହଂକାର ନ ଥିଲା । ସେ ଯେପରି ସରଳ ଅନ୍ତଃକରଣରେ ତାଙ୍କର ଛାତ୍ରମାନଙ୍କ ସହିତ ମିଶି ପାରୁଥିଲେ ଏବଂ ସେମାନଙ୍କର ଅନ୍ତର କଥା ଜାଣି ପାରୁଥିଲେ, ତାହା ଅନ୍ୟତ୍ର ବିରଳ । ତାହାଙ୍କ ସ୍ନେହମମତା-ପୂର୍ଣ୍ଣ ବ୍ୟବହାରଦ୍ୱାରା ସେ ବହୁ ଛାତ୍ରଙ୍କ ଜୀବନକୁ ପରମ ଜିତ କରିପାରିଛନ୍ତି । ସେତେବେଳକୁ ଦେଶରେ ରାଜନୀତିର ଚର୍ଚ୍ଚା ନ ଥିଲା । କଂଗ୍ରେସର ନାମ ଓଡ଼ିଶାରେ ଶୁଣାଯାଉ ନ ଥିଲା । ରକ୍ଷଣଶୀଳ ସମାଜର ସମାଲୋଚନା ଏବଂ ଧର୍ମର ଆଲୋଚନା ବେଳେ ବେଳେ ଚର୍ଚ୍ଚା ହୁଏ । ଲକ୍ଷ୍ମୀନାରାୟଣ ବାବୁ ସମାଜ-ସଂସ୍କାର କଥା କହି ରାଜା ରାମମୋହନ ରାୟଙ୍କ ଜୀବନୀ ଆଲୋଚନା କରନ୍ତି । ଆର୍ଯ୍ୟସମାଜର ପ୍ରତିଷ୍ଠାତା ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ କଥା ସେ ଆମ୍ଭମାନଙ୍କୁ ଶୁଣାନ୍ତି । ବିଭିନ୍ନ ଧର୍ମ ବିଷୟରେ ଆଲୋଚନା କରନ୍ତି । ଆମ୍ଭମାନଙ୍କୁ ସଙ୍ଗରେ ଧରି ବ୍ରାହ୍ମସମାଜରେ ଯୋଗ ଦିଅନ୍ତି । ଗୀର୍ଜାକୁ ଯାଇ ଖ୍ରୀଷ୍ଟିୟାନ-ମାନଙ୍କ ପ୍ରାର୍ଥନାରେ ଆମ୍ଭେମାନେ ଯୋଗଦେଉ । ରବିବାରଦିନେ

ଖଦ୍ଦରେ ଏବଂ ଚର୍ଖାଦ୍ୱାରେ ଚର୍ଖାରେ ଉନ୍ନତି କରି ବହୁ ସମସ୍ତ ପର୍ଯ୍ୟନ୍ତ ବୁଲୁ । ଉଦ୍ଦେଶ୍ୟ ଖଦ୍ଦ, ଚର୍ଖା ସହ ଶରୀରକୁ ଦୁଃଖ କଷ୍ଟ ଦେଇ କାର୍ଯ୍ୟ କରିବା ପାଇଁ ଶିକ୍ଷା କରିବା । ଏହିସବୁ ଭାବନା ଲକ୍ଷ୍ମୀନାରାୟଣବାବୁଙ୍କର । ତାଙ୍କୁ ଅନେକ ପାଗଳ ବୋଲି କହନ୍ତି । ପାଗଳ କହିବାର ଶୁଣି ସେ ଅନେକ ସମୟରେ କହନ୍ତି "ଗୋବିନ୍ଦ, ତୁମେ ମନେ ରଖ, ମଣିଷକୁ ପାଗଳ ହେବାକୁ ପଡ଼ିବ । ପାଗଳ ନ ବନିଲେ କୌଣସି ଆନନ୍ଦ ନାହିଁ କିମ୍ବା ମୂଲ୍ୟ ନାହିଁ । ଯେଉଁମାନେ ସମାଜ ତଥା ଦେଶରେ କିଛି କାର୍ଯ୍ୟ ସାଧନ କରିଯାଇ ଅଛନ୍ତି— ସେମାନେ ସମସ୍ତେ ପାଗଳ ହୋଇଥିଲେ । ସାଧାରଣ ଲୋକେ ଯେଉଁ ପଥରେ ଗତି କରି ବୁଲୁଛନ୍ତି, ସେହି ପଥ ଛାଡ଼ି ଅନ୍ୟବାଟ ଧରିଲେ ଲୋକେ ନିଶ୍ଚୟ ପାଗଳ କହିବେ । ସାଧାରଣ ଲୋକଙ୍କ କହିବା କଥାକୁ ଶୁଣିଲେ ଜୀବନରେ କିଛି କରିହେବ ନାହିଁ । ଏହିପରି ନାନା କଥା ଗଳ୍ପ ଆକାରରେ ସେ ଆମ୍ଭମାନଙ୍କୁ ଶୁଣାଉଥିଲେ । ଖଦ୍ଦ ଚର୍ଖାରେ ବୁଲିବାବେଳେ ଏହି ଗଳ୍ପ କହିବାକୁ ତାଙ୍କୁ ଯେପରି ସୁଖ ଲାଗେ, ଶୁଣିବାକୁ ମୋର ବିଶେଷ ଆଗ୍ରହ ଜନ୍ମେ । ଅନେକ ସମୟରେ ଏହି ଖଦ୍ଦ ଚର୍ଖାରେ ଆଜୀବନ ବସି ପ୍ରାର୍ଥନା କରିବାକୁ ଭଲ ଲାଗେ । ଜୀବନର ଆଦର୍ଶ କଣ, ଏହି ବିଷୟରେ ତାହାଙ୍କ ସହିତ ମୁଁ ଯୁକ୍ତି କରେ; କିନ୍ତୁ ସେ ଅନେକ କଥା କୁହନ୍ତି—କେତେ ଉଦାହରଣ ଦିଅନ୍ତି; କିନ୍ତୁ ଜୀବନର ଆଦର୍ଶ କଣ ହେବା ଉଚିତ, ସେ ବିଷୟରେ ମୋର ମନ ତୃପ୍ତ ହୁଏ ନାହିଁ । ଲକ୍ଷ୍ମୀନାରାୟଣ ବାବୁଙ୍କୁ ଦେଖି—ତାଙ୍କର କଥା ଶୁଣି ଆମେମାନେ ଭାବୁ—ଏ ଜଣେ ବିଶିଷ୍ଟ ବ୍ୟକ୍ତି । ଶିକ୍ଷକ ସ୍କୁଲର ଏହାଙ୍କୁ ଧରି ରଖି ପାରିବ ନାହିଁ । ଦିନେ ଲକ୍ଷ୍ମୀନାରାୟଣବାବୁ ଦେଶରେ ଜଣେ ଅତି ଜଣାଶୁଣା ବିଶିଷ୍ଟ ବ୍ୟକ୍ତିରୂପେ ଆତ୍ମପ୍ରକାଶ କରିବେ ।

୧୯୧୮ ମସିହା ଶେଷ । ମୋର କଟକରେ ଛାତ୍ରଜୀବନ ଇତିଶ୍ରୀ ହେଲା । ଦଶପଲ୍ଲାରେ କନ୍ଧମେଳରେ ମେଳିଆ ସର୍ଦ୍ଦାର ହିସାବରେ ମୁଁ ଧରା ହେଲି । ମୋର ବିଚାର ହୋଇଥିଲେ ଫାଶି କିମ୍ବା ଦ୍ୱୀପାନ୍ତର ଦଣ୍ଡ ମତେ ମିଳିଥାନ୍ତା; କିନ୍ତୁ ହଜାର ହଜାର ପ୍ରଜାଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ମୁଁ କର୍ତ୍ତୃପକ୍ଷଙ୍କ ବନ୍ଧନରୁ ଖସିଆସି କଲିକତା ପଳାଇଲି । ସେଠାରେ ବହୁଚେଷ୍ଟା କରି ଦଶପଲ୍ଲାର ପ୍ରଜାବର୍ଗଙ୍କୁ ଉଦ୍ଧାର କରିବାର କୌଣସି ଆଶା ନ ରହିବାରୁ ବିପ୍ଳବୀ ଦଳରେ ଯୋଗଦେଇ ହିଂସାନୁମୋଦିତ ପଥ ଅନୁସରଣ କରି ଦେଶକୁ ସ୍ୱାଧୀନ କରିବାକୁ ସଙ୍କଳ୍ପ ଗ୍ରହଣ କଲି । ୧୯୧୬-୧୯୧୭ ମସିହା ଦୁଇବର୍ଷ କାର୍ଯ୍ୟ କଲା ପରେ ପୋଲିସର କୋପଦୃଷ୍ଟି ପଡ଼ିଲା । କଲିକତାରେ ରହି କାର୍ଯ୍ୟ କରିବା ସମ୍ଭବପର ନ ହେବାରୁ ପଳାତକ ଭାବରେ ଭାରତର ବିଭିନ୍ନ ପ୍ରଦେଶରେ ପରିଭ୍ରମଣ କରି କେଉଁଠାରେ ରହି କିଛି କାର୍ଯ୍ୟ କରିବା ନିରାପଦ ଜଣାଗଲା ନାହିଁ । ପ୍ରଥମ ବିଶ୍ୱସମର । ଭାରତ ରକ୍ଷା ଆଇନ ଦେଶରେ ଜାରି ହୋଇଛି । ମତେ ଆଶ୍ରା ଦେବ କିଏ ?

ଲକ୍ଷ୍ମୀନାରାୟଣ ବାବୁ ବର୍ତ୍ତମାନ ଭାରତସେବକ ସମିତି ସଭ୍ୟ । ସେ ଏଲାହାବାଦ ଶାଖାରେ ରହିଛନ୍ତି । ମୁଁ ଯାଇ ତାହାଙ୍କ ନିକଟରେ ପହଞ୍ଚିବାରୁ ସେ ମୋତେ ଆଶ୍ରୟ ଦେଇଥିଲେ । ମତେ ଆଶ୍ରୟ ଦେବା ଅର୍ଥ ବିପଦ ବରଣ କରିବା । ଲକ୍ଷ୍ମୀନାରାୟଣବାବୁ ବଡ଼ ନିର୍ଭୀକ । କିନ୍ତୁ ସେ କିପରି ନିର୍ଭୀକ ଏହି ଘଟଣା ତହିଁର ନିଖିତ ଆଭାସ ଦେବ ସତ୍ୟ; କିନ୍ତୁ ସେ କିପରି ନିର୍ଭୀକ ଓ ସ୍ପଷ୍ଟବାଦୀ ତାହା ଅନୁଭବୀ ମାତ୍ରକେ ଅନ୍ୟ କେହି କଳ୍ପନା କରିବା ଅସମ୍ଭବ । ସେ କହୁଥିଲେ ଚରିତ୍ରବାନ୍ ଲୋକର ଡରିବା ଉଚିତ ନୁହେଁ । ଡରିବା ହେଉଛି ମହାପାପ । ମନରେ ଭୟ ରଖିବ ଅସତ୍ୟ ଅନ୍ୟାୟ କାର୍ଯ୍ୟ ପାଇଁ; କିନ୍ତୁ ସେବାକାର୍ଯ୍ୟରେ ନିର୍ଭୀକ ହେଲେ ବିପଦକୁ ବରଣ କରିବାରେ ମନୁଷ୍ୟ ଚରିତ୍ରର ପରିଚୟ ଦିଏ । ଏହି କଥାକୁ ପାଳନ କରିବାକୁ ସେ ସଦାସର୍ବଦା ସଜାଗ ରହିବାକୁ ଚେଷ୍ଟା କରିଛନ୍ତି । ଏହି କାରଣରୁ ସେ ଅକ୍ଲେଶରେ ତାଙ୍କର ଜଣାଶୁଣା ବ୍ୟକ୍ତିଙ୍କଠାରୁ ସ୍ନେହ ଶ୍ରଦ୍ଧା ଲାଭ କରି ପାରିଛନ୍ତି । ଏହା ଥିଲା ତାଙ୍କ ଚରିତ୍ରର ଗୋଟିଏ ବିଶିଷ୍ଟ ଗୁଣ ।

ଏଲାହାବାଦରେ ମୋର ଜୀବନର କର୍ମ ଓ ଚିନ୍ତାରେ ଘୋର ପରିବର୍ତ୍ତନ ଘଟିଲା । ଦେଶର ସ୍ୱାଧୀନତା ପ୍ରାପ୍ତି କରିବାକୁ କାର୍ଯ୍ୟ କରିବା ପାଇଁ ହିଂସାନୁମୋଦିତ ପଥରେ ଅଗ୍ରସର ହେବା ଅସମ୍ଭବ ଜଣାଗଲା । ମୋର ମନ କଥା ଲକ୍ଷ୍ମୀନାରାୟଣ ବାବୁଙ୍କୁ କହିବାରୁ ମହାତ୍ମାଗାନ୍ଧିଙ୍କ ସାବରମତୀ ଆଶ୍ରମରେ ଯୋଗଦେବାକୁ ସେ ମତେ ପରାମର୍ଶ ଦେଲେ । କେବଳ ପରାମର୍ଶ ଦେଇ ନୀରବ ରହିବା ତାଙ୍କର ପ୍ରକୃତି ନୁହେଁ । ସେ ମତେ ଧରି ବମ୍ବେ ଗଲେ । ସେଠାରେ ଟିକଟ କିଣି ରେଳଗାଡ଼ିରେ ମତେ ବସାଇ ଦେଇ ଏଲାହାବାଦ ଫେରି ଆସିଥିଲେ । ତାଙ୍କର ଆର୍ଥିକ ଅବସ୍ଥା ଅତି ସଙ୍କଟଜନକ । ତଥାପି ମୋ ପାଇଁ ଖର୍ଚ୍ଚ କରିବାକୁ ତାଙ୍କ ମନରେ କେତେ ଆନନ୍ଦ । ଏପରି ଅମାୟିକ ସ୍ନେହସୌହାର୍ଦ୍ଦ୍ୟପୂର୍ଣ୍ଣ ହୃଦୟ ଥିବା ବ୍ୟକ୍ତି ବର୍ତ୍ତମାନ ଦେଖିବାକୁ ପାଇବା ବିରଳ । ପୁଣି ୧୯୨୦ ମସିହାରେ ପୁରୀଜିଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳରେ ତାହାଙ୍କ ସହିତ ମୋର ଭେଟ । ପୁରୀଜିଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବାକୁ ମହାତ୍ମାଗାନ୍ଧିଙ୍କ

ଦୃଷ୍ଟି ମୁଁ ଆକର୍ଷଣ କରି ପାରିଥିଲି । ଠକ୍କରବାପାଙ୍କୁ ଗାନ୍ଧିଜୀ ଓଡ଼ିଶାକୁ ପଠାଇଲେ । ଦୁର୍ଭିକ୍ଷ ଅଞ୍ଚଳରେ ସାହାଯ୍ୟ ବଣ୍ଟନ କରିବାକୁ ଠକ୍କରବାପା ଗାନ୍ଧିଜୀଙ୍କୁ କହି ମତେ ଡାକି ଆଣିଥିଲେ । ପୁଣି ଦୁର୍ଭିକ୍ଷର ପ୍ରପୀଡ଼ିତ ଅଞ୍ଚଳରେ ସେବାକାର୍ଯ୍ୟ ମିଳାମିଶି କରିଛୁ । ଲକ୍ଷ୍ମୀନାରାୟଣ ବାବୁ ଜଣେ ମୁକ୍ତ ପୁରୁଷ ବୋଲି ଧାରଣା ଜନ୍ମିବା ଅତି ସହଜ । ତାଙ୍କର ବେଶଭୂଷା ଏବଂ ଖାଦ୍ୟପାନ ପ୍ରତି ଭ୍ରୂକ୍ଷେପ ନ ଥାଏ । ଯାହା ମିଳିଲା, ତାହା ଖାଇ ଦିନ ରାତି ଖରାବର୍ଷାରେ ବୁଲି କାମ କରିବା ସେପରି ତାଙ୍କର ପ୍ରକୃତି । ରାତିରେ ନ ଖାଇ ନ ପିଇ ଯେ କୌଣସି ଜାଗାରେ ଶୋଇ ପଡ଼ିବେ । ନିଜର ସୁବିଧା ଅସୁବିଧା କାହାକୁ କିଛି କହିବେ ନାହିଁ । ଚିହ୍ନାଅଚିହ୍ନା ନ ବାରି ଯେ କେହି ଲୋକର ଘରକୁ ଯାଇ ମାଗି ଖାଇବେ । ତାଙ୍କୁ ମୁଁ ନାନା କ୍ଷେତ୍ରରେ ଏବଂ ନାନା ପ୍ରକାର ଅବସ୍ଥାରେ ଦେଖିଛି । ତାଙ୍କର ବେଶଭୂଷା ଦେଖିଲେ ବେଳେ ବେଳେ ତାଙ୍କୁ ଜଣେ ପାଗଳ ବୋଲି କୁହାଯାଇ ପାରିବ; କିନ୍ତୁ ଏହି ପାଗଳାମି ଭିତରେ ତାଙ୍କର ନିଷ୍କପଟ ସରଳ ହୃଦୟର ପ୍ରତିବିମ୍ବ ପ୍ରକଟିତ ହୋଇଥାଏ । ତାଙ୍କ ମନରେ ରାଜନୈତିକ ବାଦାନୁବାଦର ତିକ୍ତତା କଦାପି ଆହୁ ପ୍ରକାଶ କରିନାହିଁ । ସେ କାହାରି କଟୁ ସମାଲୋଚନା ନ କରି ତାଙ୍କର ନିଜର ବିଚାର ଅତି ନିର୍ଭୀକ ଭାବରେ ବ୍ୟକ୍ତ କରନ୍ତି । ତାଙ୍କୁ ଯେଉଁମାନେ ଅତି ନିର୍ମମ ଭାବରେ ସମାଲୋଚନା କରିଛନ୍ତି, ସେମାନଙ୍କ ପ୍ରତି ମଧ୍ୟ ତାଙ୍କର ବ୍ୟବହାର ସ୍ନେହ ଓ ଶ୍ରଦ୍ଧାପୂର୍ଣ୍ଣ । ସମସ୍ତଙ୍କୁ ସମଚକ୍ଷୁରେ ଦେଖି ପବିତ୍ର ସବୁ କାର୍ଯ୍ୟ କରିବାର ବ୍ୟକ୍ତି ଓଡ଼ିଶାରେ ବିରଳ । ତାଙ୍କର ଜୀବନ ଓଡ଼ିଶାର ଜାତୀୟ ଜୀବନରେ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର । ସେ କେତେ ସ୍କୁଲ୍ ଓ ଅନୁଷ୍ଠାନ ଗଢ଼ିଛନ୍ତି । ଗଢ଼ିବାକୁ ଅନ୍ୟମାନଙ୍କ ସହିତ ସହଯୋଗ କରିଛନ୍ତି, ତାହା ଜାଣି ହେବ ନାହିଁ । କାରଣ ନିଜର ନାମ ପ୍ରକାଶ କରିବାକୁ ସେ କେବେହେଲେ ଲାଳାୟିତ ହେଉ ନାହାନ୍ତି । ଚମ୍ପାପୁର ଗାନ୍ଧି ଶିକ୍ଷାଶ୍ରମ ଓ କଲକଲା କୃଷ୍ଣାଶ୍ରମ ଏହି ଦୁଇଟି ଅନୁଷ୍ଠାନ ଗଢ଼ିବାରେ ସେ ମୋର ସହଯୋଗୀ, ଉଭୟ ଅନୁଷ୍ଠାନରେ ସେ ସଭାପତି ଓ ମୁଁ ସଂପାଦକ, ଏପରି ଆନ୍ତରିକ ଭାବରେ ହୃଦୟର ସହିତ ଯେ କୌଣସି ପ୍ରକାର ଲୋକହିତକର କାର୍ଯ୍ୟରେ ସାହାଯ୍ୟ ସହଯୋଗ କରି ଉତ୍ସାହ ପ୍ରଦାନ କରିବା ବ୍ୟକ୍ତି ମୁଁ ଆଉ କାହାକୁ ମୋର ଦୀର୍ଘ କର୍ମମୟ ଜୀବନରେ ପାଇନାହିଁ । ଭାରତସେବକ ସମିତି ବର୍ତ୍ତମାନ ହିନ୍ଦ୍‌ସେବକ ସଂଘ ନାମରେ ବିଦିତ । ଅନୁଷ୍ଠାନର ଓଡ଼ିଶା ଶାଖାକୁ ସ୍ଥାୟୀ ରୂପ ଦେବାରେ ତାଙ୍କର ସାଧନା ନିଶ୍ଚୟ ଦେଶ ଓ ଜାତି ପକ୍ଷରେ ଗୌରବର କାହାଣୀ । ତାଙ୍କ କାର୍ଯ୍ୟ ଓ କଥାର ପଟାନ୍ତର ଓଡ଼ିଶାରେ ବିରଳ । ଓଡ଼ିଶାର ଛାତ୍ର ଓ ଯୁବକସମାଜ ଲକ୍ଷ୍ମୀନାରାୟଣ ସାହୁଙ୍କ ଭଳି ସାଧକ ପୁରୁଷଙ୍କ ଆଦର୍ଶକୁ ଅନୁସରଣ କରି ପାରିଲେ ଜୀବନକୁ ମହତ୍ କରି ଗଢ଼ିପାରିବେ । ଏହି ବିଶ୍ୱାସରେ ଏହି କ୍ଷୁଦ୍ର ସ୍ମରଣିକା ଲିଖିତ ।

ସବୁ ଜୀବନ ଦେଇଛ ପ୍ରଭୁ
ଜୀବନ ନେଇଛ ତୁମେଇ
ଦିଅ ନିଅ ତୁମରି ହାତରେ ।

—ଲକ୍ଷ୍ମୀନାରାୟଣ

# କର୍ମଯୋଗୀ ଲକ୍ଷ୍ମୀନାରାୟଣ

ପଠାଣି ପଟ୍ଟନାୟକ

ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କୁ ଭାରତବର୍ଷରେ ଅନେକେ ଜଣେ ବିଶିଷ୍ଟ ଲୋକସେବକ ବୋଲି ଜାଣନ୍ତି । ଓଡ଼ିଶାରେ ମଧ୍ୟ ଜଣେ ଦେଶସେବୀ ଭାବରେ ସେ ସୁପରିଚିତ । ସେ ହେଉଛନ୍ତି ସାରୁ ପରିବା । ସବୁଠାରେ ବୟସ ନିର୍ବିଶେଷରେ ପ୍ରତ୍ୟେକ ପ୍ରକାର ଅନୁଷ୍ଠାନରେ ସେ ମିଶିଯାଇ ପାରନ୍ତି ଏବଂ ସହଯୋଗ ମଧ୍ୟ କରନ୍ତି । ଏହାହିଁ ଥିଲା ତାଙ୍କ ଚରିତ୍ରର ସବୁଠାରୁ ଉଲ୍ଲେଖଯୋଗ୍ୟ, ଦୁର୍ବଳତମ ତଥା ସବଳତମ ଏବଂ ଉଜ୍ଜ୍ୱଳ ସ୍ୱାକ୍ଷର । ଏପରି ପରସ୍ପର ବିରୋଧୀ ଚରିତ୍ରର ସମ୍ପର୍କରେ ଯେ ଆସିବାର ସୌଭାଗ୍ୟ ଲାଭ କରିଛି, ସେ ତାଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟିଭଙ୍ଗୀରୁ ହିଁ ବିଚାର କରିଛି; ମାତ୍ର ଲକ୍ଷ୍ମୀନାରାୟଣ ମଣିଷ ଅତ୍ୟନ୍ତ ସୁବୋଧ ହୋଇ ମଧ୍ୟ ବ୍ୟକ୍ତିତ୍ୱର ପ୍ରକାଶରେ ଅତ୍ୟନ୍ତ ଅବୋଧ ଥିଲେ । କୌଣସି ଅନୁଷ୍ଠାନର ବାହୁଛାୟା ତଳେ ସେ ରହି ନ ଥିଲେ । ଅଥଚ ସବୁ ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବରେ ସେ ସଂପୃକ୍ତ ଥିଲେ । ବାସ୍ତବରେ ସେ ନିଜେ ଥିଲେ ଏକ ସ୍ୱତନ୍ତ୍ର ଅନୁଷ୍ଠାନ ।

ସେ ଥିଲେ ଆଜନ୍ମ ବିପ୍ଳବୀ । ଅତି ଅଳ୍ପ ବୟସରୁ ପରଂପରା ଏବଂ କୁସଂସ୍କାର ବିରୁଦ୍ଧରେ ସେ ବିଦ୍ରୋହ କରିବାକୁ ଶିଖିଥିଲେ । ଏ କ୍ଷେତ୍ରରେ ସେ ଥିଲେ ନିଜେ ନିଜର ଗୁରୁ ।

୧୮୯୦ ମସିହାରେ ସେ ବାଲେଶ୍ୱର ସହରରେ ଜନ୍ମ-ଗ୍ରହଣ କରିଥିଲେ । ୧୯୦୮ ମସିହାରେ କୃତିତ୍ୱର ସହିତ ବାଲେଶ୍ୱର ଜିଲା ସ୍କୁଲରୁ ପ୍ରବେଶିକା ପରୀକ୍ଷାରେ ପାସ କରି ବୃତ୍ତି ପାଇଥିଲେ । ୧୯୧୧ରେ ରେଭେନ୍‌ସା କଲେଜରୁ ଆଇ. ଏସ-ସି. ପାସ କଲେ । ଗୁରୁଜନମାନେ ତାଙ୍କୁ ଜଣେ ଇଞ୍ଜିନିୟର ହେବା ପାଇଁ କାମନା କରୁଥିଲେ । ତେଣୁ ଲକ୍ଷ୍ମୀ-ନାରାୟଣ କଲିକତା ଶିବପୁର ଇଞ୍ଜିନିୟରିଂ କଲେଜରେ ଅଧ୍ୟୟନ କରିବାକୁ ଚାଲିଗଲେ । କିନ୍ତୁ ବିଧାତାଙ୍କ ଇଚ୍ଛା ଥିଲା ଅନ୍ୟପ୍ରକାର । ଇଞ୍ଜିନିୟର ହୋଇଥିଲେ ଲକ୍ଷ୍ମୀନାରାୟଣ ମାଟି, ଗୋଡ଼ି ପଥର ସହିତ ସମ୍ପର୍କ ବାନ୍ଧି ସମସ୍ତଙ୍କର ଅଜାଣତରେ ହେଲେ ଆଖି ମୁଦି ଥାଆନ୍ତେ । ମାତ୍ର ଏହି ମାଟିଗୋଡ଼ି ଧରାରେ ତେଲଲୁଣର ସଂସାରରେ ସଂଗ୍ରାମୀ ମନୁଷ୍ୟର ସେବକ ହେବା ପାଇଁ ଯେପରିକି ସେ ଜନ୍ମଗ୍ରହଣ କରିଥିଲେ । ଅପୂର୍ବ ମାନବ ପ୍ରୀତି ଏବଂ ସେବା ପାଇଁ ଚରମ ଆତ୍ମୋତ୍ସର୍ଗ ସାଧନା ବାସ୍ତବିକ ଅନନ୍ୟସାଧାରଣ । ତେଣୁ ଶିବପୁର ଇଞ୍ଜିନିୟରିଂ ସ୍କୁଲରେ ଦୁଇବର୍ଷ ଅଧ୍ୟୟନ କଲା ପରେ ଅକସ୍ମାତ୍‌ କରେ ପଢ଼ା ପଢ଼ା ଛାଡ଼ିଲେ ଏବଂ କଟକରେ ଶିକ୍ଷକତା କଲେ ।

୧୯୧୩।୧୪ ସାଲର କଥା । ଲକ୍ଷ୍ମୀନାରାୟଣ ମିଶନ ସ୍କୁଲରେ ଶିକ୍ଷକତା କରୁଥାଆନ୍ତି । ଓଡ଼ିଶା ସେ ସମୟରେ ଏକ ଅନ୍ଧାରିମୂଳକ ହୋଇଥାଏ କହିଲେ ଚଳେ । ଏଦେଶରେ ସାଧାରଣ ଜୀବନ ଆଦୌ ନ ଥାଏ । ଆନ୍ଦୋଳନ ଅଥବା ଉତ୍ତେଜନା କଳ୍ପନାର କଥା । ବିଦେଶୀ ଶାସନ ଏବଂ ସଂସ୍କୃତିର ଅନ୍ଧାନୁସରଣ ଶିକ୍ଷିତ ଗୋଷ୍ଠୀଙ୍କର ଗୌରବର ହୋଇଥାଏ ପ୍ରଧାନ ଭୂମିକା । ଧର୍ମାନ୍ଧତା ଏବଂ ଜାତିଗତ ବିଦ୍ୱେଷ ସାମାଜିକ ଜୀବନର ପ୍ରଧାନ କଳଙ୍କ ହୋଇଥାଏ କହିଲେ ଚଳେ । ତରୁଣ ଶିକ୍ଷକ ଲକ୍ଷ୍ମୀନାରାୟଣ ଛାତ୍ରସମାଜରେ ପ୍ରଧାନ ପ୍ରେରଣାର ଉତ୍ସ ଥିଲେ । ଏହି ସମୟରେ ସେ ଖଣ୍ଡିଏ ପୁସ୍ତକ ପ୍ରଣୟନ କରି ନିଜକୁ ତହିଁରେ 'ପାଣ' ବୋଲି ଘୋଷଣା କରିଥିଲେ । ତତ୍କାଳୀନ ରକ୍ଷଣଶୀଳ ଶିକ୍ଷକ ସହକର୍ମୀଗଣ ଏହି ଘଟଣାରେ ଉତ୍‌କ୍ଷିପ୍ତ ହୋଇ ପଡ଼ିଲେ ଜଣେ ପାଣ ଶିକ୍ଷକ ସହିତ ଛାତ୍ର-ମାନେ ମିଳାମିଶା ନ କରିବା ପାଇଁ ସେମାନେ ବାରଣ କରୁଥିଲେ ।

ଲକ୍ଷ୍ମୀନାରାୟଣ ଜୀବନରେ ନେତା ହେବେ ବୋଲି ଉଦ୍ୟମ କରିନାହାନ୍ତି । ସେ ନିଜେ ମଧ୍ୟ କାହାକୁ ନେତା ବୋଲି ସ୍ୱୀକାର କରିନାହାନ୍ତି । ସେ ଥିଲେ ନିଜେ ନିଜର ଆଦର୍ଶ ଓ ସାରଥୀ । ତାଙ୍କୁ ମନୁଆ କହିଲେହିଁ ଠିକ ହେବ । ସେ ଯାହା ଭଲବୋଲି ବୁଝିବେ ଯେ କୌଣସି ପ୍ରତିବନ୍ଧକ ଅତିକ୍ରମ କରି ସେ ତାହା କରିଯିବେ ।

ଏଣିକି ଦେଶରେ କେତେ ସେବା ଅନୁଷ୍ଠାନ ଗଠିତ ହେଲଣି । ସେବା ଅନୁଷ୍ଠାନରେ ସେବକ ଭାବରେ ଯୋଗ ଦେଲେ ମାସିକ ଭତ୍ତା ବା ଦରମା ମଧ୍ୟ ମିଳୁଛି । କେହି କେହି ରାଜନୈତିକ ଦଳର କର୍ମୀମାନଙ୍କୁ ଦରମା ଦେବାକୁ ପ୍ରସ୍ତାବ କରୁଛନ୍ତି । ଏହି ସମ୍ପର୍କରେ ଲକ୍ଷ୍ମୀନାରାୟଣ ବାବୁ ମୃତ୍ୟୁର ଅଳ୍ପକାଳ ପୂର୍ବରୁ ଦୁଃଖ ପ୍ରକାଶ କରି ଏକ ଲେଖା ପ୍ରକାଶ କରିଥିଲେ । ସେବକ ଜୀବନର ବ୍ରତ ବରଣ କରିବା ପାଇଁ ଯେଉଁ ନିଷ୍ଠା, ଦେଶପ୍ରେମ ଏବଂ ମାନବ ଧର୍ମର ପ୍ରେରଣା ଆବଶ୍ୟକ ହୁଏ, ଦରମା ନିଆ ସେବକ ସେ ତ୍ୟାଗ ଏବଂ ଆଦର୍ଶର ମହାନୁଭବତାକୁ ହୁଏତ ଉପଲବ୍ଧି

କରିପାରିବ ନାହିଁ । ତାହାହେଲେ ଏଦେଶରେ ପ୍ରେମ ଓ ତ୍ୟାଗର କଣ ମାପକାଠି ହେବ ଅର୍ଥ ! ! !

ସେବକ ଲକ୍ଷ୍ମୀନାରାୟଣ ମହାଭାରତୀୟ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଭାରତୀୟ ଜନତାର ସେବା କରିବା ପାଇଁ ମହାମତି ଗୋପାଳକୃଷ୍ଣ ଗୋଖଲେଙ୍କ ପ୍ରତିଷ୍ଠିତ 'ଭାରତସେବକ ସମାଜ'ରେ ଯୋଗଦାନ କରିଥିଲେ । ବର୍ତ୍ତମାନ ଏହି ଅନୁଷ୍ଠାନ 'ହିନ୍ଦ୍ ସେବକ ସମାଜ' ନାମରେ ସୁପରିଚିତ । ଏ ଦେଶ ହେଉଛି ବନ୍ୟା, ମଡ଼କ ଓ ମହାମାରୀର ଦେଶ । ଯେଉଁଠାରେ ମଣିଷର ଦୁଃଖ ଦୈନ୍ୟର ଆର୍ତ୍ତଚିତ୍କାର, ସେଠାରେ ଲୋକ-ସେବକ ଲକ୍ଷ୍ମୀନାରାୟଣ ବିନା ନିମନ୍ତ୍ରଣରେ ଉପସ୍ଥିତ । କାହାରି ନିନ୍ଦା ପ୍ରଶଂସା ପ୍ରତି ତାଙ୍କର ଭ୍ରୂକ୍ଷେପ ନ ଥିଲା । ସେବା କ୍ଷେତ୍ରରେ ଆଜିକାଲି ପ୍ରଚାର ଓ ପ୍ରତିଯୋଗିତା ଲକ୍ଷ୍ୟ କରି ସେ ମର୍ମାହତ ହେଉଥିଲେ । କିନ୍ତୁ ଦୀର୍ଘକାଳ ଧରି ସେବାକ୍ଷେତ୍ରରେ ସେ ଜୀବନ ଉତ୍ସର୍ଗ କରିଥିଲେ ହେଁ ଦିନେ ହେଲେ କାହାରିକୁ ଈର୍ଷା କରି ନାହାନ୍ତି । କାହା ସହିତ ପ୍ରତିଯୋଗିତା କରିବାପାଇଁ ଅବସର ଖୋଜି ନାହାନ୍ତି । ସେ ନିଜେ ଥିଲେ ଏକ ଅପୂର୍ବ ଅନୁଷ୍ଠାନ । ନିରଳସ ନିରଭିମାନ ଜୀବନରେ ସେ ସର୍ବଦା ଫୁଲ୍‌ଗୁପରି ଥିଲେ ଝଲଝଲ ଓ ଛଳଛଳ ।

ପରିଣତ ବୟସରେ ସେ ଗୁମ୍ଫାଗୋଟି ବିଷୟରେ ଏମ. ଏ. ପାସ କରିଥିଲେ । ଜୈନଧର୍ମ ସମ୍ପର୍କରେ ଗବେଷଣା କରି ପି, ଏଚ, ଡ଼ି, ପାଇଁ ଥେସିସ ମଧ୍ୟ ପ୍ରସ୍ତୁତ କରିଥିଲେ । ତାଙ୍କର କର୍ମଚଞ୍ଚଳତା ଉତ୍ସାହ ଓ ଏକନିଷ୍ଠ ସାଧନା ସର୍ବଦା ଯୁବକ ସମାଜର ଆଦର୍ଶ ସ୍ଥାନୀୟ । ଜୀବନରେ ସେ ଥିଲେ ବହୁରଙ୍ଗୀ ଉଭୟ ଇଂରେଜୀ ଏବଂ ଓଡ଼ିଆରେ ସେ ଏକାଧିକ ପତ୍ରିକା ପ୍ରକାଶ କରିଥିଲେ । ତନ୍ମଧ୍ୟରୁ 'ସହକାର' ପତ୍ରିକାର ପ୍ରଥମ ପ୍ରତିଷ୍ଠାତା ହିସାବରେ ସେ ଚିରସ୍ମରଣୀୟ । ଅବଶ୍ୟ ପରେ ଏହି ପତ୍ରିକା ସ୍ୱର୍ଗତ ବାଳକୃଷ୍ଣ କରଙ୍କ ସମ୍ପାଦନାରେ ସାହିତ୍ୟିକ ମର୍ଯ୍ୟାଦା ଲାଭ କରିଥିଲା । ଲକ୍ଷ୍ମୀନାରାୟଣ ଶତାଧିକ ପୁସ୍ତକର ରଚୟିତା । ଇଂରେଜୀ, ଓଡ଼ିଆ ଏପରିକି ବଙ୍ଗଳାରେ ମଧ୍ୟ ସେ କବିତା ପୁସ୍ତକ ପ୍ରଣୟନ କରି ନିଜ ମନର ସାଧ ମେଣ୍ଟାଇଛନ୍ତି । ତାଙ୍କ ରଚିତ ପୁସ୍ତକ ମଧ୍ୟରେ "ଦଣ୍ଡନାଟ" ଓ "ଜୈନଧର୍ମ" ଦୁଇଟି ଗବେଷଣାତ୍ମକ ପୁସ୍ତକ । ଏଥିପାଇଁ ସେ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି । ଏହା ବ୍ୟତୀତ ଇଂରେଜୀରେ ଲିଖିତ **Songs on the hills** (ପର୍ବତର ସଙ୍ଗୀତ), ଏବଂ **Hill Tribes of Jeypore** (ଜୟପୁର ପାହାଡ଼ିଆ ଜାତି) ପୁସ୍ତକ ଦୁଇଟି ବିଶେଷ ଉଲ୍ଲେଖଯୋଗ୍ୟ ।

ଲକ୍ଷ୍ମୀନାରାୟଣଙ୍କର କର୍ମକ୍ଷେତ୍ର ଥିଲା ଅତ୍ୟନ୍ତ ବ୍ୟାପକ । ଉତ୍କଳ ସମ୍ମିଳନୀ, ଉତ୍କଳ ସାହିତ୍ୟ ସମାଜ, ଓଡ଼ିଶା ସାହିତ୍ୟ ଏକାଡେମୀ, ଓଡ଼ିଶା ବିଧାନସଭା, ବିଧାନ ପରିଷଦ ଭଳି ଭାରତୀୟ ବହୁ ସଂସ୍ଥା ଓ ସାଧାରଣ ଅନୁଷ୍ଠାନ ସହିତ ସେ ସଂପୃକ୍ତ ଥିଲେ । ସେଉଁଠି ଆଥାନ୍ତି, ମଣିଷର ଦୁଃଖ ଦୈନ୍ୟ, ଅନୁଭୂତ ତାଙ୍କୁ ପ୍ରଥମେ ଅନୁପ୍ରାଣିତ କରୁଥିଲା । ନିଜକୁ ଅନାଥ ବୋଲି ଘୋଷଣା କରି ସେ ଥିଲେ ସବୁଠାରୁ ବଡ଼ ନାଥ । ଜାତିପାଇଁ ସେ ସର୍ବଦା ଚିନ୍ତା କରୁଥିଲେ । ତାଙ୍କର ଗୋଟିଏ କବିତାରେ ସେ ଲେଖିଥିଲେ—

"ଉତ୍କଳୀୟ ଦୀନ ଦିନମାନ
ହେବ ଏଣିକି ଅବସାନ
ଶୀଘ୍ର ଶୀଘ୍ର ହେବ ଅବଧାନ
ଉଠ ଉଠ ଏବେ ହେ ମ ସ୍ୱମାଣ
ଜାଗ୍ରତ ଏବେ ଭଗବାନ ।"

ଆଶାବାଦୀ ଲକ୍ଷ୍ମୀନାରାୟଣଙ୍କ ଜାତୀୟତାବୋଧ ଦେଇଛି ଅପୂର୍ବ ପ୍ରେରଣା । ସେ ଆଶା କରିଛନ୍ତି—

"ଏ ଜାତି ସତ କଳଙ୍କ ଦୋଷ୍ୟାଦିଟି
ଉଠିବ ଏବେ ଶୁଭେ ପୁଣି ମାତି ।"

ଲକ୍ଷ୍ମୀନାରାୟଣଙ୍କୁ କେହି ବୁଝିଛନ୍ତି ବୋଲି ବିଶ୍ୱାସ କରି ହୁଏନାହିଁ । ସେ ନିଜେ ହିଁ ଥିଲେ ବହୁଧା ବିଭକ୍ତ ଅଥଚ ଏକକ-- ଏକ ମୂର୍ତ୍ତିମନ୍ତ ଅନୁଷ୍ଠାନ । ତାଙ୍କର ଭାବନା ଥିଲା ଅରୂପର ଆକର୍ଷଣରେ । ମିଷ୍ଟିକ୍ ଲକ୍ଷ୍ମୀନାରାୟଣ ଏକଥା କାହାକୁ ଦେଖାଇ ହୋଇ ନାହାନ୍ତି । ଜୀବନରେ ସେ ସେଇ ଅରୂପ ରାଜ୍ୟର ସନ୍ଧାନରେ ବ୍ରତୀ ହୋଇଥିଲେ । ସେ ତାଙ୍କର ପ୍ରାଣର ମନ୍ତ୍ର ଗୋଟିଏ କବିତାରେ ଗାଇଥିଲେ—

"ତାହାର ଇଙ୍ଗିତେ ଚାଲଇ ମୁହିଁ
ତାହାର ସଙ୍ଗୀତେ ମୁଗ୍ଧ ମୁହିଁ
ସେ ନାହିଁ ଆଜି ସେ ନାହିଁ
ଶନ୍ୟ ଲାଗେ ସବୁ ଶୂନ୍ୟ ଲାଗେ ତହିଁ ।
ସେହି ମୋର ହେଉ ଜଗଜ୍ଜ୍ୟୋତି
ସେହି ମୋର ହେଉ ବଡ଼ ସ୍ନେହି
ସେହି ମୋର ପରାଣ ମନ ନେଉ
ସେହି ମୋର ସେହି ମୋର ଚିରରହୁ ।

ଲକ୍ଷ୍ମୀନାରାୟଣଙ୍କୁ ପଦୁଟିଏ କଥାରେ ବୁଝିହୁଏ-ମୋଟ ଉପରେ ସେ ଥିଲେ ଅବୁଝ ଓ ଅବୋଧ । ବାଳକପରି ସରଳ ସେହି ମହାମନା, ପ୍ରୌଢ଼ ବ୍ୟକ୍ତିପରି ଥିଲେ ଅତ୍ୟନ୍ତ ଗମ୍ଭୀର ଓ ଯୁବକ ପରି ଥିଲେ ଅତ୍ୟନ୍ତ ଉତ୍ସାହୀ । ଏହି ବିରଳ ସ୍ୱଭାବସିଦ୍ଧ ଜୀବନର ଜୟଯାତ୍ରା ସରିଯାଇଛି ବୋଲି ବିଶ୍ୱାସ ହେଉନାହିଁ । ଜୟ ହୁ ଲକ୍ଷ୍ମୀନାରାୟଣ !

# ସାହୁଜୀଙ୍କ ଅଭୁଲା ସ୍ମୃତି

## ଶ୍ରୀ ଗୋପାଳ କାନୁନଗୋ

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଇହଜଗତରୁ ବିଦାୟ ନେଇ ଚାଲିଗଲେ । ଫୁଲ ଫୁଟି ଝଡ଼ିଗଲା କିନ୍ତୁ ମହକ ତାର ମନ ଭିତରେ ଲାଗି ରହିଛି । ସାହୁଜୀଙ୍କପରି ସ୍ନେହପରାୟଣ ଲୋକ ଆମଦେଶରେ ବିରଳ ; ପକ୍ଷେ ସେମିତି ଗୋଟିଏ ସସ୍ନେହ ଦାବୀ ତାଙ୍କର ସବୁରି ଉପରେ ଥିଲା । ଦିନକର କଥା—ସେତେବେଳକୁ ରାତି ୧୦ଟା । ମୁଁ ସେତେବେଳେ ଟ୍ରେନିଂସ୍କୁଲ ହଷ୍ଟେଲରେ ରହୁଥାଏ । ସେ ଦିନ ମୋ ଦେହ ଖରାପ ଥାଏ । ସାହୁଜୀ ଅସୁସ୍ଥ । ଚାଲିବାର ଶକ୍ତି ନ ଥିଲା ତାଙ୍କର । ଗୋଟିଏ ପିଲାର କାନ୍ଧରେ ହାତଦେଇ ମୋ ପାଖରେ ପହଞ୍ଚି କହିଲେ, "ଗୋପାଳ ଆସ, ପେନ୍‌ସିଲ କାଗଜ ଧରି ମୋର ଗୋଟିଏ Portrait ପ୍ରସ୍ତୁତ କରିଦିଅ ।" ମୁଁ ପ୍ରଶ୍ନ କଲି "ରାତି ୧୦ଟାବେଳେ କେମିତି Portrait ହେବ ? ଆଲୋକର ଅଭାବରେ ଏହା ହେବା କେତେ କଠିନ ଆପଣ ଜାଣନ୍ତି ତ ?" "କିନ୍ତୁ ମୋର 'ଉତ୍କଳ ଜୈନଧର୍ମ' ବହି ପାଇଁ ସେ କାଲି ଦରକାର କରୁଛନ୍ତି । ପ୍ରକାଶକ କାଲି କଲିକତା ପଠାଇବେ, ତେଣୁ Portrait ଟି ନ ହେଲେ ନ ଚଳେ । ମୁଁ ତ ଘରୁ ବାହାରି ପଡ଼ିଛି, କାଲି ମଧ୍ୟ ଆସିପାରିବି ନାହିଁ"—ବୋଲି ସାହୁଜୀ କହି ଚାଲିଲେ । ମୁଁ କହିଲି, ଆପଣଙ୍କର ଘନଘନ ଶ୍ୱାସ ହେଉଛି । ଆପଣ ସ୍ଥିର ହୋଇ ବସିବେ କିପରି ? ଏହା ତ ଏକଘଣ୍ଟାରୁ କମ୍‌ରେ ସରିବ ନାହିଁ । ସାହୁଜୀ ଯୋର ଦେଇ କହିଲେ "ତମେ କାମ ଆରମ୍ଭ କର । ମୁଁ ନିଶ୍ଚୟ ଚୁପ୍ ହୋଇ ବସିବି ।" ଏଇପରି କଥାବାର୍ତ୍ତା ଭିତରେ ସେ ଯୋଉଠି ବସିବାର କଥା ସେ ସ୍ଥାନ ସ୍ଥିର କରା ହୋଇଥାଏ ଏବଂ ରାତିରେ ଗୋଟିଏ ମୋପାଖେ ଥିବା ଟେବୁଲ ଲ୍ୟାମ୍ପଦ୍ୱାରା ତାଙ୍କ ମୁହଁପାଖ ଆଲୋକିତ କରା ଯାଇଥାଏ । ଇତିମଧ୍ୟରେ ପିଲାମାନଙ୍କ ଭିଡ଼ ମଧ୍ୟ ଘରେ ଆରମ୍ଭ ହୋଇଥାଏ । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏପରି ଏକା ଆସି ଚୁପ୍ ଦେଖେଇ ଏଠି କ'ଣ କରୁଛନ୍ତି ଜାଣିବା ପାଇଁ ପିଲାମାନେ (ଛାତ୍ର) ଖୁବ୍ ଆଗ୍ରହୀ ହୋଇପଡ଼ିଲେ । ମୁଁ ମଧ୍ୟ ଭିଡ଼ ଦେଖି ଟିକିଏ ଶଙ୍କିତ ହେଲିଣି । ମନୁଷ୍ୟମାତ୍ରକେ ଭୁଲ କରେ । ଯଦି ପ୍ରସ୍ତୁତ ନ ଆସେ, ତେବେ ପିଲାମାନଙ୍କ ଆଗରେ ଅପଦସ୍ତ ହେବା ବଡ଼ ଦୁଃଖଦାୟକ । ତଥାପି ମୁଁ କହିଲି, "ଆପଣ କାଲିକୁ ଆସନ୍ତୁ, ନିଶ୍ଚୟ କରିଦେବି ।" ସାହୁଜୀ କହିଲେ, "ତୁମେ ଗୋଟିଏ ପ୍ରସ୍ତୁତ ୨୦ବର୍ଷ ପୂର୍ବେ କରିଥିଲ, ସେଟା ବହୁସ୍ଥାନରେ ବ୍ୟବହୃତ ହୋଇଛି । ସେମିତି ତ କେହି କରିପାରିଲେ ନାହିଁ । ତେଣୁ ମୁଁ କାହିଁକି ଆଉ କାହାପାଖକୁ ଯିବି, ସେ ମୂଳ ଚିତ୍ର ତୁମେ ନଷ୍ଟ କରିଛ । ତେଣୁ ତୁମେ ଇ କରିଦେବ । ପେନ୍‌ସିଲ ଧରିଲେ ତମର ସବୁ ଠିକ୍ ହୋଇଯିବ ।" ମୁଁ ନାଚାର—ଏଥିରୁ ମୁକ୍ତି ପାଇବା ଅସମ୍ଭବ । ଭାବିଲି ଖରାପ ହେଲେ ଚିରି ଦେବି—ଉପରେ ବିଜୁଳି ଆଲୁଅ—ମୁହଁ ପାଖରେ ଟେବୁଲ ଲ୍ୟାମ୍ପ ରଖାଗଲା । ସବୁ ପିଲାଏ ମୋପଛକୁ ଆସି ଠୁଳ ହେଲେ । ମୋର କିଛିସମୟ କାର୍ଯ୍ୟ ହେବାପରେ ପିଲାମାନେ ଏକସ୍ୱରରେ କହି ଉଠିଲେ "ସାର୍—ଠିକ୍ ଆସିଗଲା" ମୋର ଆହୁରି କାମ ବାକିଥାଏ । ମୁଁ ତାଙ୍କ କଥା ନ ଶୁଣି ଆଗେଇ ଚାଲିଥାଏ । କିଛିକେ ସାହୁଜୀ କହିଲେ, ହେଲାଣି ତ ମୋତେ ଦେଖାଅ । ସେମିତି ଦେଖିଛନ୍ତି । ସାଙ୍ଗେ ସାଙ୍ଗେ ମୋ ହାତରୁ ପେନ୍‌ସିଲ ଟାଣି ନେଇ ତାଙ୍କ ନାମ ଦସ୍ତଖତ କରିଦେଲେ । ମୁଁ ଶେଷରେ ଏତିକି କହିଲି, "ଦେଖନ୍ତୁ ଛବିଟି ବ୍ଲକ କରି ବହି ସହିତ ମୋତେ ଦେଖାଇବେ ।" କିଛିଦିନ ଅତୀତ ହେଲା ପରେ ପୁଣି ଦିନେ ସ୍କୁଲ ଲାଇବ୍ରେରୀରେ ମୋତେ ଦେଖିଲେ, କହିଲେ, "ଏଇ ଦାଖଣ୍ଡ ବହି ନେଇ ପଢ଼" ଇଂରାଜୀରେ ଲିଖିତ ଜୈନ-ଧର୍ମ ସମ୍ବନ୍ଧୀୟ ପୁସ୍ତକ । ମୁଁ ପଚାରିଲି ଅପଣଙ୍କ ବହି ଆଉ ଛବି କ'ଣ ହେଲା । ଉତ୍ତରରେ ସାହୁଜୀ କହିଲେ, ତୁମ ପାଖକୁ ଠିକ୍ ସମୟରେ ଆସି ପହଞ୍ଚିବ । ତୁମେ ନିଶ୍ଚୟ 'ଜୈନକଳା' ସମ୍ବନ୍ଧରେ ମୋତେ ଗୋଟିଏ ପ୍ରବନ୍ଧ ଲେଖିଦେବ । ମୁଁ କହିଲି, "ଜୈନକଳା ସମ୍ବନ୍ଧରେ ମୁଁ କ'ଣ ପରୀକ୍ଷା ଦେବି" ସେ କହିଲେ ହଁ ହଁ ନିଶ୍ଚୟ । 'ଦେଖନ୍ତୁ' ମୁଁ କହିଲି ମୁଁ ଜଣେ କଳାକାର । ବଢ଼େଇ ବୋଲି ଧରନ୍ତୁ । ମୋତେ ଆପଣ କାଠ ଭଲ ଦିଅନ୍ତୁ ମନ୍ଦ ଦିଅନ୍ତୁ— ମୁଁ ସେଥିରେ ଆପଣଙ୍କ କହିବାମତେ ଗୋଟିଏ ଜିନିଷ କରିଦେବି; କିନ୍ତୁ ସେ କାଠ କେଉଁ ପାହାଡ଼ରେ ଜନ୍ମେ କିଭଳି ଜଳବାୟୁ-ଖାଦ୍ୟ ତାର ଦରକାର-ଏତେ କଥା ମୋର ଜାଣିବା କ'ଣ ଦରକାର ଅଛି ? ସେ ହଠାତ୍ କହିଲେ, ତମକୁ ପରୀକ୍ଷା ଦେବାକୁ ହେବ । ତୁମେ ପାଠପଢ଼ା ଆର୍ଟିଷ୍ଟ । ତୁମେ ପଢ଼ା ନ ହେଲା ବୋଲି କ'ଣ art ପଢ଼ିବାକୁ ଯାଇଛ କି ? ବାଧ୍ୟ ହୋଇ ତାଙ୍କ କଥାରେ ରାଜି ହେଲି । ତଥାପି କହିଲି, "ମୋ ଲେଖା କ'ଣ ଆପଣଙ୍କ ବହିକୁ ଉପଯୁକ୍ତ ହେବ ?"

ସେ କହିଲେ "ନିଶ୍ଚୟ ହେବ ଏବଂ ମୁଁ ତାକୁ ମୋ ବହିରେ ଛାପିବି । ଆଉ କାଲି ସନ୍ଧ୍ୟାକୁ ଲେଖି ରଖିଥିବ । ମୁଁ ନିଜେ ଆସି ଏଠାରୁ ନେଇକରି ଯିବି ।" ମୁଁ ଭାବିଲି ଏମିତି ଦିନ ପରେ ଦିନ ଗଡ଼ିଯିବ । ସତରେ କ'ଣ ମୋ ଲେଖାଟା ନେଇ ତାଙ୍କ ବହିରେ ସେ ଛାପିବେ । ଏକଥା ମୋତେ ସତ ଲାଗୁନାହିଁ । ଯାହାହେଉ, ମୁଁ କେତେ କ'ଣ ଦେଖାଉଛି କରି ପ୍ରବନ୍ଧଟି ଲେଖି ରଖିଥାଏ । ସତକୁ ସତ କାଲି ଯେତେବେଳେ ଆସିବେ ବୋଲି କହିଥିଲେ ଠିକ୍ ସେତିକିବେଳେ ଆସି ପହଞ୍ଚିଲେ ମୁଁ ବା ଲୁଚିବ କେଉଁଠି ? ତା ପରେ ଏତେବଡ଼ ଦାବୀଟା ଯାହାର ମୋ ଉପରେ ତାକୁ ଫାଙ୍କି ଦେବାର ପ୍ରବୃତ୍ତି ମୋର ହେଲା ନାହିଁ । ଏତ ରାଜାର ହୁକୁମ ନୁହେଁ କିମ୍ବା ଉଚ୍ଚପଦସ୍ଥ ହାକିମଙ୍କ ଫରମାସୀ ନୁହେଁ । ଏହା ଜଣେ ରସଗ୍ରାହୀ ଅନ୍ୟ ଏକ କଳାକାର ଉପରେ ସ୍ନେହଦାବୀ । ମୁଁ ସେଥିପାଇଁ ମନଦେଇ ମୋର କ୍ଷୁଦ୍ର ଜ୍ଞାନର ସୀମା ମଧ୍ୟରେ ଯାହା ଲେଖିଥିଲି ତାକୁ ଆଣି ରଖିଲି । ଏପରି ସମୟରେ ମୋତେ ଡକାଇ ପଠାଇଲେ । ମୁଁ ଖାଲି ହାତରେ ପହଞ୍ଚିଲି । କହିଲେ, 'କଉ, ପ୍ରବନ୍ଧ ଦିଅ' ମୁଁ କହିଲି, ମୋ ହାତରେ ହେଲା ନାହିଁ । ସାହୁଜୀ କହିଲେ ଦେଖ ମୋର ଏତେ ବଡ଼ ସ୍ନେହଟାକୁ ତମେ ଫିଙ୍ଗି ଦେଇଥିବ—ଯାହା ଲେଖିଛ ଆଣ ।" ମୁଁ ଆଣି ପ୍ରବନ୍ଧଟା ଦେଇ ଚାଲିଗଲି । ସେ ଖୁବ ଖୁସି ହୋଇ ନେଲେ ଓ ସତକୁ ସତ ହେ ତାଙ୍କ ବହିରେ ଛାପିଛନ୍ତି ଓ ସେହି ବହିରେ ସେ ଡକ୍ଟର ଉପାଧି ପାଇଛନ୍ତି । ୮ ଦିନ ପରେ ବହିଟି ଓ ମୋ ପ୍ରବନ୍ଧ ଲେଖାଥିବା ବହିଟି ପଠାଇଛନ୍ତି, ମାତ୍ର ଚିତ୍ରଟି ଆଉ ବହିରେ ଦିଆଯାଇ ପାରିଲା ନାହିଁ । ଶୁଣାଯାଏ ପ୍ରକାଶକ ଗୋଟିଏ ବ୍ଲକ ଯାହା ପାଖରେ ଥିଲା, ସେତିକ ନେଇ କାର୍ଯ୍ୟ ଶେଷ କରିଛନ୍ତି, କିଛିଦିନ ପରେ ଦେଖା ହେଲା—ପଚାରିଲି ମୋ ଚିତ୍ରଟି (Portrait) କ'ଣ କଲେ । ଉତ୍ତରରେ ସେ କହିଲେ ? ତମେ ମନକଷ୍ଟ କରନା ଗୋପାଳ, ଚିତ୍ରଟି ମୁଁ ନିଜଘରେ ବନ୍ଧେଇ କରି ରଖିଛି । ସେ ଦେବାକୁ ତାଙ୍କର ସମୟ ହେଲା ନାହିଁ, ଫଟ ବ୍ଲକ ଗୋଟାଏ ରଖିଥିଲେ—ତାକୁ ହିଁ ଠାରୁ ବ୍ୟବହାର କରିଛନ୍ତି । ସେ ଯାହାହେଉ, ବିଶ୍ୱବମିଳନ ପ୍ରଦର୍ଶନୀରେ ସାହୁଜୀ ନିଜେ ତାଙ୍କର କେତେକ Sketch ଓ ଏ ଚିତ୍ରଟି ଏକାଠି ଟାଙ୍ଗିଥିଲେ । ମୁଁ ଛବିଟି ଅନେକ ଦିନ ପରେ ଦେଖିବାକୁ ପାଇ ଖୁବ ଖୁସି ହୋଇଥିଲି । କାରଣ ଜୀବନ୍ତ ମନୁଷ୍ୟକୁ ଦେଖି ଅନ୍ୟାନ୍ୟ Sketch ମଧ୍ୟରେ ଏହା ଏକ ଉତ୍କୃଷ୍ଟ ନିଦର୍ଶନ । ଏଗୁଡ଼ିକ ଏକାଠି କରି ଗୋଟିଏ ଆଲବମ କରି ପାରନ୍ତେ ବେଶ୍ ବଢ଼ିଆ ହୁଅନ୍ତା । କିମ୍ବା ସେଇ ଚିତ୍ରଗୁଡ଼ିକ କୌଣସି କଳା ସଂଗ୍ରହାଳୟ (Art Gallery)ରେ ରଖାଯାଇ ପାରନ୍ତା ।

ସାହୁଙ୍କଙ୍କ ସହିତ ମୋ ଜୀବନରେ ବହୁବାର ଦେଖା ହୋଇଛି ଏବଂ ବହୁବାର ଆମ ଘରେ ସେ ଖାଇପିଇ ଯାଇଛନ୍ତି । କିନ୍ତୁ ବହୁବାର ସେ ମୋପାଖକୁ ତାଙ୍କ ସଂଗୃହୀତ କଳା ସମ୍ବନ୍ଧୀୟ ପୁସ୍ତକ ମୋତେ ଉପହାର ଦିଅନ୍ତି । ସେଗୁଡ଼ିକ ମୁଁ ଯତ୍ନର ସହିତ ରଖିଛି । ଥରେ ବ୍ରହ୍ମପୁରରେ ଥିବାବେଳେ ମୋ ସହିତ ଦେଖା ପାଇପାରିଲେ ନାହିଁ । କାର୍ଯ୍ୟବ୍ୟସ୍ତତା ହେତୁ ମୁଁ କୋଉଠି ଅଛି, ଜାଣି ପାରିଲେ ନାହିଁ । ମାତ୍ର ଷ୍ଟେସନଠାରେ ଗାଡ଼ି ଛାଡ଼ିବାକୁ ଟିକିଏ ବାକି ଅଛି—ତାଙ୍କୁ କିଏ କହିଲା, ବ୍ରହ୍ମପୁରରେ ଅଛି । ସେ ତତ୍‌କ୍ଷଣାତ୍ ଗୋଟିଏ କବିତା ଲେଖି ତାଙ୍କ ହାତରେ ମୋ ପାଖକୁ ପଠାଇଦେଲେ । ସେଥିରେ ଲେଖିଥିଲେ—

"ଗୋପାଳ, ଗୋପାଳ, ଗୋପାଳ
ଯାଇଥିଲି ବ୍ରହ୍ମପୁର
ଦେଖା ନ ହେଲା ତୁମର
× × × ×
କ୍ଷମାକର କ୍ଷମାକର କ୍ଷମାକର
ଇତି—ତୁମର ଲକ୍ଷ୍ମୀନାରାୟଣ ସାହୁ

ଆଉ ଥରେ ସେ ଲେଖକ ଗୋପୀନାଥ ମହାନ୍ତିଙ୍କ ହାତରେ ମୋ ପାଖକୁ Dr. Coomar Swamiଙ୍କ ଭାରତୀୟ ଚିତ୍ରର ଦୁଇଖଣ୍ଡ ବହି ପଠାଇ ଦେଲେ । ମୁଁ ତାହା ପାଇ ନ ଥାଏ—ଯେଉଁ ଭଦ୍ରଲୋକ ଗୋପୀ ବାବୁଙ୍କୁ ସେ ବହି ଦେବା ଦେଖିଥିଲେ, ସେ ମୋତେ ଏ ସମ୍ବାଦ ଦେଲେ ଏବଂ ଠିକ୍ ଦୁଇଦିନ ପରେ ତାଙ୍କଠାରୁ ମଧ୍ୟ ଚିଠି ପାଇଲି ସେ ବହି ପଠାଇଛନ୍ତି । ମୁଁ ଗୋପୀନାଥ ବାବୁଙ୍କ ନିକଟକୁ ଚିଠି ଲେଖିଲି, ସେ ବହି ପଠାଇଦେଲେ । ସାହୁଙ୍କଙ୍କର ଏ ପ୍ରଗାଢ଼ ହାର୍ଦ୍ଦିକତା ମୁଁ ଭୁଲିପାରି ନାହିଁ । ସେ ମୋ ଘରକୁ ଆସି ଅନେକ ଦିନ ତଳର ପୁରୁଣା କଥା ସବୁ କହନ୍ତି । ସେଗୁଡ଼ିକ ଯେପରି ଚିତ୍ତାକର୍ଷକ, ସେହିପରି ବିସ୍ମୟୋତ୍ପାଦକ । ଭାରତର ବହୁ ପ୍ରବୀଣ ବୃଦ୍ଧ ଜନନାୟକଙ୍କ ସଙ୍ଗେ ତାଙ୍କର ବନ୍ଧୁତା ଥିଲେ ମଧ୍ୟ ସେ ଯେ ତରୁଣ, ପ୍ରୌଢ଼, ଶିକ୍ଷିତ, ଅର୍ଦ୍ଧଶିକ୍ଷିତ ସମସ୍ତଙ୍କ ସଙ୍ଗେ ସରଳ ଭାବରେ ମିଶିପାରନ୍ତି, ଏକଥା ବଡ଼ ଆଶ୍ଚର୍ଯ୍ୟଜନକ । ଏପରି ଏକ

ପ୍ରକୃତ ସାମ୍ୟବାଦ ଅନ୍ୟ କୌଣସି ଲୋକଠାରେ ଦେଖାଯାଏ ନାହିଁ । ଏହି ସାମ୍ୟ ଓ ସରଳତା ଓ ଆଡ଼ମ୍ବରହୀନତା ତାଙ୍କ ଚରିତ୍ରର ଗୋଟିଏ ଗୋଟିଏ ମହନୀୟ ଗୁଣ । ପରକୁ ସାହାଯ୍ୟ କରିବା ମଧ୍ୟ ତାଙ୍କର ଅନ୍ୟ ଏକ ଗୁଣ, ଯାହା ତାଙ୍କୁ ବହୁ ବିଶିଷ୍ଟ ଲୋକଙ୍କ ସହିତ ସମ୍ପୃକ୍ତ କରି ରଖିଛି । ସାହୁଜୀ ଯାହା କରିବାକୁ ଇଚ୍ଛା କରନ୍ତି, ତାହା ଯେତେ କଷ୍ଟକର ହେଉ ପଛେ ନିଷ୍ପନ୍ନ କରିବେ । ଏ ଦୃଢ଼ତା ତାଙ୍କର ଚରିତ୍ରର ଅନ୍ୟ ଏକ ଗୁଣ ।

ଅହଂ ନିଜଃ ପରୋବେତ୍ତି
ଗଣନା ଲଘୁଚେତସାଂ

ଉଦାର ଚରିତାନାନ୍ତୁ ବସୁଧୈବ କୁଟୁମ୍ବକମ । ଉଦାର ଚରିତ ସାହୁଜୀଙ୍କର ନିଷ୍କାପଟତା ଓ ସରଳତା ଉଦ୍ଦେଶ୍ୟରେ ମୁଁ ପ୍ରକଟ ଜଣାଉଛି—ତାଙ୍କର ଆତ୍ମାର ସଦ୍‌ଗତି ହେଉ ।

---

ଏହି କି ସତ ?
ଆଲୁଅ ଅନ୍ଧାର ମିଳନ ବନ୍ଧ
ଏହି କି ଶାଶ୍ୱତ ସତର
ପ୍ରାଣ କି କ୍ଳାନ୍ତ ହୁଏ
ପୁଣି ସ୍ଥିତ ହୁଏ ଅଥ
ମିଳନ ବିଚ୍ଛେଦେ ଏହିପରି ଗୋ
ମରଣ ମୋର ପୁଣି କେବେ ଜୀବନ ପାଇବ ଗୋ ।

—ଲକ୍ଷ୍ମୀନାରାୟଣ

# ଲୋକସାହିତ୍ୟ ଓ ସାହିତ୍ୟିକ ଲକ୍ଷ୍ମୀନାରାୟଣ

## ଡକ୍‌ଟର କୁଞ୍ଜବିହାରୀ ଦାଶ

ଲକ୍ଷ୍ମୀନାରାୟଣଙ୍କ ମନ ଏକ ବାଇଆ ମନ; କେତେବେଳେ କୋଉ ଦିଗକୁ ଗଲେ ତାର ଠିକ୍‌ଠିକଣା ନାହିଁ । ବିଚିତ୍ର ତାଙ୍କର ଖିଆଲ । କେତେବେଳେ କଣ ଲେଖନ୍ତି; କୋଉ ବିଷୟରେ ବା ଲେଖନ୍ତି ? କାଲଅକାଲ ସେ ବାରନ୍ତି ନାହିଁ; ଶୌଚ ଶୁଚିତାର ଅପେକ୍ଷା ରଖନ୍ତି ନାହିଁ । ଘର ବାହାରର ତାରତମ୍ୟ ସେ ଦେଖନ୍ତି ନାହିଁ । ଗହଳଚହଳରେ ବନ୍ଧୁମେଳରେ ତାଙ୍କର ବାକ୍‌ସ୍ଫୁର୍ତ୍ତି ହୋଇପାରେ । ଜମାଟବନ୍ଧା ଅନ୍ଧାରରେ ମଧ୍ୟ ତାଙ୍କ ଲେଖନୀ ଚଳେ । କାଗଜ ଉପରେ ହାତଟି ରହିଲେ ହେଲା । ଗାରକେ ଗୋଟିଏ କବିତା; ତା ଉପରେ ଆଉ ଗାର ପଡେ ନାହିଁ । ବିହିବିଧାତାଙ୍କ ସୃଷ୍ଟି ଯେପରି । ବାରମ୍ବାର ଲେଖିବା ଧୈର୍ଯ୍ୟ ତାଙ୍କର ନ ଥିଲା । ଲେଖାଟି କଲା ଦିଗରୁ କେତେ ପୂର୍ଣ୍ଣ ହେଲା, ତା ଭିତରେ କେତେ ତ୍ରୁଟିବିଚ୍ୟୁତି ରହିଲା, ତାହା ବାରିବା ଭଳି ସମାଲୋଚନାତ୍ମକ ମନ ତାଙ୍କର ନ ଥିଲା ।

କବି ବା ଲେଖକ ହିସାବରେ ତାଙ୍କର ଟିକିଏହେଲେ ବଡ଼ିମା ନ ଥିଲା । କଳାର ଆଭିଜାତ୍ୟବୋଧ କଳାବିତ୍‌ଙ୍କୁ ଜନସାଧାରଣଙ୍କଠାରୁ ଦୂରେଇ ରଖେ । ଲକ୍ଷ୍ମୀନାରାୟଣ ଆଗେ ଜନସେବକ, ପରେ ଲେଖକ । ଏ ଦୁଇ ଭାବକୁ ସେ ବିପରୀତମୁଖୀ କରି ରଖି ନ ଥିଲେ । ତାଙ୍କଠାରୁ ବଡ଼ ସମନ୍ୱୟବାଦୀ ଏ ଯୁଗରେ ଆଉ କିଏ ଅଛି ?

ତେଣୁ ସେ କେବଳ ଲେଖକ ହୋଇ ରହିଗଲେ । ନିଜ ଲେଖାର ବିଦଗ୍‌ଧ ପାଠକ ହୋଇ ପାରିଲେ ନାହିଁ । ଏଥିରେ କଳାର କି କ୍ଷତି ଘଟିଲା କାଳ ତାହା ବିବେଚନା କରିବ ।

ଲେଖା ସରିବା ସଙ୍ଗେ ସଙ୍ଗେ ବହି ଛପା ହୁଏ; ଶିଶୁର କୌତୂହଳ ତାଙ୍କର । ବହିଗୁଡ଼ିକ ଆକାରରେ କ୍ଷୁଦ୍ର, ମଲାଟର ଆଡ଼ମ୍ବର ନାହିଁ; କାଗଜ ମଧ୍ୟ ଯାହିତାହି । ଦାମ ଦୁଇ ଚାରିଅଣା ମେଳଣଯାତ୍ରାରେ ବିକା ହେଉଥିବା ଲୋକ କବିଙ୍କ ବହିପରି । ପୃଥିବୀର ବଡ଼ ବଡ଼ ପାଠାଗାରକୁ ସେ ଏଇ ଚଟିବହି ସବୁ ପଠାନ୍ତି । ଓଡ଼ିଆ ଦାରିଦ୍ର୍ୟର ଚରମ ପ୍ରତୀକ—ଏ ଦିଗରେ ସଙ୍କୋଚ ତାଙ୍କର ନାହିଁ । ବନ୍ଧୁବାନ୍ଧବଙ୍କୁ ଉଦାର ଭାବରେ ଉପହାର ଦିଅନ୍ତି । ପିଲାଙ୍କଠାରୁ ବୁଢ଼ାଙ୍କ ପର୍ଯ୍ୟନ୍ତ ବନ୍ଧୁବାନ୍ଧବ ତାଙ୍କର ଅଗଣିତ ! ଛପାବହି ପ୍ରାୟ ସବୁତକ ବିତରଣରେ ଯାଏ । ବୋଧହୁଏ ପଇସାଟିଏ ପାଆନ୍ତି ନାହିଁ ।

ନାନା ଦିଗରେ ତାଙ୍କର ଆଗ୍ରହ; କିନ୍ତୁ କାହିଁରେ ଆବଦ୍ଧ ନୁହନ୍ତି । ବିଚିତ୍ର ଗହ୍ୱରରେ ତାଙ୍କର ଗୃହ, କିନ୍ତୁ ପଡ଼ିଆ ଉଠିଆ । ସାଧନା ଏକମୁଖୀ ହୋଇନାହିଁ । ତେଣୁ ସିଦ୍ଧି ମଧ୍ୟ ଜ୍ୱଳନ୍ତ ଭାବରେ ଫୁଟିଦିଶେ ନାହିଁ । ବିଭିନ୍ନ ଭୂମିକାରେ ସେ ଅଭିନୟ କରିଅଛନ୍ତି । କାହିଁରେ କୃତିତ୍ୱ ଅର୍ଜନଲିପ୍‌ସା ପ୍ରକାଶ ପାଇନାହିଁ । ଲୋକ ଗୀତ ସଂଗ୍ରହ ଓ ଲୋକ ନାଟ୍ୟ ବିଷୟରେ ଗବେଷଣା ତାଙ୍କର ଏକ ବିନୋଦନ । ଏଥିଲାଗି ସେ ଅବସର ସୃଷ୍ଟି କରିଛନ୍ତି, ସବୁ କାର୍ଯ୍ୟ ଛାଡ଼ି କିଛିଦିନ ଏଥିରେ ମାତି ଯାଇଛନ୍ତି ।

ଆଦିବାସୀ ଜୀବନ ଓ ସଂସ୍କୃତି ଏ ଦେଶରେ ବିଶେଷ ଅବହେଳିତ ଅବସ୍ଥାରେ ଥିଲା । କେତେଖଣ୍ଡି ଉପନ୍ୟାସ ଓ ଯତ୍‌ସାମାନ୍ୟ ବିବରଣୀ ମଧ୍ୟରେ ଆମର ଆଦିବାସୀ ସମ୍ପର୍କୀୟ ଜ୍ଞାନ ସୀମାବଦ୍ଧ ଥିଲା । ସେମାନଙ୍କ ମୌଳିକ ଲୋକସଙ୍ଗୀତ ସବୁ ସଂଗୃହୀତ ହୋଇ ନ ଥିଲା । ଶ୍ରୀ ସାହୁଙ୍କ ପ୍ରେରଣାରେ ନବରଙ୍ଗପୁର ନିବାସୀ ମଞ୍ଜୁଘୋଷ ତ୍ରିପାଠୀ କୋରାପୁଟ ଅଞ୍ଚଳରୁ ଚଇତପର୍ବ ଗୀତ ସବୁ ସଂଗ୍ରହ କରିଥିଲେ । ଏହି ଗୀତରୁ କେତେକ ପଲ୍ଲୀଗୀତି ସଞ୍ଚୟନର ପ୍ରଥମ ଓ ଦ୍ୱିତୀୟ ଭାଗର ଅନ୍ତର୍ଭୁକ୍ତ ହୋଇଅଛି ।

'ଗାନ୍ଧର୍ବିକା ଶତଦଳ' ନାମରେ ଖଣ୍ଡିଏ ଗୀତ ସଂଗ୍ରହ ସେ ପ୍ରକାଶ କରିଛନ୍ତି । ତାଙ୍କ ସଂଗ୍ରହ କୋରାପୁଟ ଜିଲ୍ଲା ମଧ୍ୟରେ ସୀମିତ । ଏହି ଜିଲ୍ଲାର ବନ୍ଧୁମାନଙ୍କ ସାହାଯ୍ୟରେ ଗୀତ-ସଂଗ୍ରହ ଓ ଅନୁବାଦ ସମ୍ଭବ ହୋଇଥିଲା । କନ୍ଧ, ସଉରା, ଗଣ୍ଡ, ସାନ୍ତାଳ, ଗଦ୍‌ବା, ଝୋଡ଼ିଆ ପରଜା, ବଡ଼ ପରଜା, ମାଟିଆ ପରଜା, ପାରେଙ୍ଗା ପରଜା, କୋୟା, ଡମ ଓ ପାଣମାନଙ୍କ ଗୀତର ଯତ୍‌କିଞ୍ଚିତ୍ ନମୁନା ଏଥିରେ ଦିଆଯାଇଛି । ଏହା ମୁଖ୍ୟତଃ ବିବାହ ସମ୍ପର୍କୀୟ । ବିଭିନ୍ନ ଆଦିବାସୀଗୋଷ୍ଠୀଙ୍କ ସାମାଜିକ ଚଳଣିର ବୈଚିତ୍ର୍ୟ ଏଥିରେ ପ୍ରକଟିତ ହୋଇଅଛି । ତୀବ୍ର ଜୀବନ ସଂଗ୍ରାମ ଓ ଗହନମନର ଗୋପନବାର୍ତ୍ତା ମଧ୍ୟ ଏଥିରେ ସରସଭାବରେ ରୂପାୟିତ ହୋଇଅଛି । ତଳେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦିଆଗଲା ।

"ଯାର କି ସାଯ୍ୟା ଖାଟାର ହେଲା ରୁମ୍ବିର
ବିକୁଟୀ ମାୟୁ ଖାଟାର ହେଲା ରୁମ୍ବିକୁ ନିଲସ ହେ
କାମ୍ବେଲ ବିମ୍ବି ଖାଟାର ହେଲା ନିଲସ ହେ ।
କାରଲ କାମ୍ବିଲ ଖାଟଡ ହେଲା ନିଲସ ହେ
ଲଜା ହାରୁ ଅବେଗୁ ହେଲ ନିଲସ ହେ
ଆଟାଙ୍ଗା ହାଙ୍ଗୁଡ଼ା କିକାର ହେଲା ନିଲସ ହେ
ମାଟାଙ୍ଗା ବାଚୁଲି କାକାର ହେଲା ନିଲସ ହେ
ଆକୁଟା ଆଟାଆ କାନାର ହେଲା ନିଲସ ହେ
" " "

କୁମୋଠା ଶଂ ଦାଆ ଗାଟାର ହେଲ ନାଲସ ହେ ।"
(କୁଇଭାଷା, କନ୍ଧଗୀତ)

ଅନୁବାଦ—

ତୁମ୍ଭ ମୁହଁ ରଙ୍ଗ ଦେଖିବା ମାତ୍ର ସାର ହେଲା
କି ଜୁଳୁଜୁଳିଆ ପୋକ ପରି ତୁମ୍ଭେ ହେଲ
କିଟାଲେମ୍ବୁ ପରି ତୁମ୍ଭେ ହେଲ
ଖାଲି ଲଙ୍କା ଭଳି
ଏ ଯୌବନ ବନରେ ଏହିପରି ହେଲ
ହାଟକୁ ଯାଉଥିବା ପସରା ପରି ବା ପିଲିପରି ଚଞ୍ଚଳ
ବାଟରେ ବିକିଲି ଦ୍ରବ୍ୟ ପରି
ଡାଳରେ ନ ଲଗିଲି ପରି ।।

ଲକ୍ଷ୍ମୀନାରାୟଣ ଜଣେ ଗବେଷକ । ଲୋକସାହିତ୍ୟରେ ତାଙ୍କ ଗବେଷଣାର ସ୍ପଷ୍ଟ ମୁଦ୍ରା ଅଙ୍କିତ ହୋଇଅଛି । ତାଙ୍କ 'ଦଣ୍ଡନାଟ' ଗୋଟିଏ ମୌଳିକ ଗବେଷଣାମୂଳକ ପ୍ରବନ୍ଧ । ମୁଖ୍ୟତଃ ଏହାକୁ ଅବଲମ୍ବନ କରି ମୁଁ ମୋ ଥେସିସରେ ପ୍ରକାଶ ପାଇଥିବା 'ଦଣ୍ଡନାଟ' ପ୍ରବନ୍ଧଟି ଲେଖିଛି । ଗବେଷକ ଶ୍ରୀ ସାହୁ ଦଣ୍ଡନାଟର ଉତ୍ପତ୍ତି, କାମନାଘର, କାମନାଘଟ, ନାଟର ପାତ୍ରପାତ୍ରୀ ଓ ଦେବଦେବୀଙ୍କ ବିବରଣୀ, ପାଟଖେଳୁଆ, ଚନ୍ଦନିଆ ପାତ୍ର, ଧୂପିଆ ପାତ୍ର, ବେନ୍ତୁଆପାତ୍ର, ଦାଣ୍ଡକାଠିଆ ପାତ୍ର, ଗୋବରିଆ ପାତ୍ର, କଳଅପାତ୍ର ଓ ଦଣ୍ଡସ୍ୱାମୀଙ୍କର ବସ୍ତ୍ରର ବର୍ଣ୍ଣନା ଦେଇଅଛନ୍ତି । 'ଦଣ୍ଡନାଟ' ଓଡ଼ିଶାରେ ବ୍ୟାପକ ଭାବରେ ପ୍ରଚଳିତ; ଦଣ୍ଡର ଠାକୁରାଣୀ ଦଣ୍ଡୀ ମହାଦେବୀ । ଦଣ୍ଡ ଶିବପାର୍ବତୀଙ୍କ ପ୍ରତୀକ ବେତ୍ର । ଦଣ୍ଡୁଆମାନେ ଉକ୍ତ ଦେବୀଙ୍କି ତୁଷ୍ଟ କରିବାଲାଗି ବହୁକାଯ୍ସ ସାଧନା କରିଥାନ୍ତି ।

'ଦଣ୍ଡନାଟ'ରୁ ଶ୍ରୀ ସାହୁଙ୍କ ଗଭୀର ଅଧ୍ୟବସାୟ, ନିଷ୍ଠା, ମୌଳିକ ବିଷୟ ସଂଗ୍ରହ ପ୍ରଚେଷ୍ଟା ଓ ତାକୁ ବୈଜ୍ଞାନିକ ଭିତ୍ତିରେ ସଜେଇ ଲେଖି ପାରିବା ଦକ୍ଷତାର ପରିଚୟ ମିଳେ । ଓଡ଼ିଆ ଲୋକସଂସ୍କୃତିର ଏହା ଏକ ଦିଗଦର୍ଶକ ଖଣ୍ଡି ।

'The Hill Tribes of Jeypore' ଜୟପୁରର ମହାରାଜା ସାହିତ୍ୟସମ୍ରାଟ ବିକ୍ରମଦେବ ବର୍ମାଙ୍କ ଆନୁକୂଲ୍ୟରେ ୧୯୪୨ରେ ପ୍ରକାଶିତ । କୌଣସି ଖଣ୍ଡିଏ ପୁସ୍ତକ ଲାଗି ଲେଖକ ଜୀବନରେ ଏତେ ପରିଶ୍ରମ କରିନାହାନ୍ତି । ଏହି ପୁସ୍ତକ ରଚନା କରିବା ଲାଗି ଲେଖକଙ୍କୁ ଜୟପୁରରେ ଦୀର୍ଘ ତିନି ବର୍ଷ ରହିବାକୁ ପଡ଼ିଥିଲା । ଏ ତିନି ବର୍ଷ ସେ ସମାଜସେବା କାର୍ଯ୍ୟରୁ ଅବ୍ୟାହତ ନେଇଥିଲେ; ତାଙ୍କର ସମସ୍ତ ବ୍ୟୟ ମହାରାଜା ବହନ କରିଥିଲେ ।

କୋରାପୁଟରେ ଆଦିବାସୀ ସଂଖ୍ୟା ୫ ଲକ୍ଷରୁ ଅଧିକ । ପ୍ରକୃତରେ ସମସ୍ତ ଜିଲ୍ଲା ଗୋଟିଏ ମାନବୀୟ ଚିଡ଼ିଆଖାନା; ସେହିଭଳି ଭାବରେ ବୈଦେଶୀକ ପଣ୍ଡିତମାନେ ଦୀର୍ଘକାଳ ଧରି ଏହାର ଅଧ୍ୟୟନ କରି ଆସୁଛନ୍ତି । କନ୍ଧ, ସଉରା, ପରଜା, ଅମନାତ୍ୟ, ଭୂମିଜ, ଗଦବା, କୋୟା, ଗଣ୍ଡ, ରୋଣା, ଗୋଥାର ପ୍ରଭୃତି ପ୍ରାୟ ପାହାଡ଼ରେ ବାସ କରନ୍ତି । 'ପୋଡ଼ୁ' ଚାଷ କରନ୍ତି । ଏବେ ସମତଳ କ୍ଷେତକୁ ଅଭେଚଣ କରୁଛନ୍ତି ! ଗବେଷକ ଶ୍ରୀ ସାହୁ ସେମାନଙ୍କ ବିକଟ ଦାରିଦ୍ର୍ୟ, ରୋଗବ୍ୟାଧି, କୁସଂସ୍କାର, ଅନ୍ଧବିଶ୍ୱାସ, ସେମାନଙ୍କ ମେଳାମହୋତ୍ସବ, ମଦ୍ୟପାନ ଓ ନୃତ୍ୟ, ସେମାନଙ୍କ ମଧ୍ୟରେ ପ୍ରଚଳିତ ଗଳ୍ପ କାହାଣୀର ସୁନ୍ଦର ନମୁନାମାନ ଦେଇଅଛନ୍ତି । ସେମାନଙ୍କର କେତେକ ଗୀତର ଇଂରେଜୀ ଅନୁବାଦ ଚିତ୍ତାକର୍ଷକ ହୋଇଅଛି । ଅବଶ୍ୟ ନୃତତ୍ତ୍ୱବିତ୍ ଗବେଷଣାମୂଳକ ବିବରଣୀ ସହିତ ଅର୍ଥନୈତିକ ଯୋଜନା ଖାପ ଖାଉନାହିଁ । ତଥାପି କୋରାପୁଟବାସୀଙ୍କ କନ୍ଦା, କରବା, ପିଠାଳ, ଟାକୁ ଆଦି ଖାଦ୍ୟ, ଲନ୍ଧା, ମଦ୍ୟପାନ, ସେମାନଙ୍କ 'ଗବସୁମ୍' ( ଗୋରୁ ରୋଗର ଦେବତା ), ରୋଗୋସୁମ୍ ( ବସନ୍ତ ରୋଗର ଦେବତା ), କାଲୁସୁମ ( କୁଷ୍ଠର ଦେବତା ), ମପ୍ରୁସୁମ୍ ( ମୃତ୍ୟୁ ଦେବତା ), ରଥୁସୁମ ( ଶିକାର ଦେବତା ), ଡୁରୁଗୁ କୁଣ୍ଡୀସୁମ ( ଭିକ୍ଷାର ଦେବତା ), ସ୍ୱୋ ସ୍ୱୋ ବୋ ସ୍ୱୋସୁମ ( ଧାନକ୍ଷେତର ଦେବତା ), ଓୟୁମ୍ସୁମ ( ଜନ୍ତୁପର ଦେବତା ) ପ୍ରଭୃତି ବହୁ ଦେବତା, ଆଦିବାସୀଙ୍କ ସାହିତ୍ୟ, ସେମାନଙ୍କ ଜନ୍ମାଦି ସସ୍କାର ଓ ମୃତାହକିସ୍କାର ପୁଙ୍ଖାନୁପୁଙ୍ଖ ବିବରଣୀ ଏହି ପୁସ୍ତକରେ ଦିଆଯାଇଅଛି । ତାଙ୍କ ସଂଗୃହୀତ ମେରିଆ ପୂଜାର ସାରାଂଶ ତଳେ ଦିଆଯାଉଛି ।

କନ୍ଧ ଦେବତା ଜାକରିଙ୍କ ଆଗରେ ମେରିଆ ପୂଜା ବା ଟୋକା ପୂଜା ହୁଏ ।

ତାରି ଶନା ଶନା ତାରି ଶନା ଶନା
ଟୋକା ପୂଜା ମେରିଆ ପୂଜା କିନା । (କିନା-କରିବା)

ଅବିବାହିତ ଯୁବକ ବା ଯୁବତୀ ମେରିଆ ହେବାକୁ ସମର୍ଥ । ବଳି ପୂର୍ବରୁ ତାକୁ ଛ'ମାସ ପର୍ଯ୍ୟନ୍ତ ଉତ୍କୃଷ୍ଟ ଖାଦ୍ୟ ଦିଆଯାଏ। ଯେକୌଣସି ପୁରୁଷ ବା ସ୍ତ୍ରୀ ସଙ୍ଗ କରିବା ଲାଗି ମେରିଆଟୋକା ବା ଟୋକାକୁ ସୁଯୋଗ ମିଳେ । ବଳି ବେଳେ ମେରିଆ 'ଅହିତ୍ୟା' କହିଲେ ଦେଶାରର ମୃତ୍ୟୁ କିମ୍ବା 'ଅହିତ୍ୟାମ' କହିଲେ ଦେଶାରର ସ୍ତ୍ରୀର ମୃତ୍ୟୁ ହେବ ବୋଲି ସୂଚନା ମିଳେ । କାଳେ ସେ ଶବ୍ଦ ମେରିଆ ତୁଣ୍ଡରୁ ବାହାରି ପଡ଼ିବ ଏଥିଲାଗି ଦେଶାରି ଭୟରେ ଥରୁଥାଏ । ଦେଶାରି ମେରିଆ ମୁଣ୍ଡର ଅଧିକାରୀ । ସେ ମେରିଆର ମୁଣ୍ଡଟି ନେଇ ଭଲ ଫସଲ ଆଶାରେ ନିଜ ବିଲରେ ପୋତିଦିଏ ।

କନ୍ଧ ପରିବାର ପାଳି କରି ମେରିଆ ଯୋଗାଇଥାନ୍ତି; କିମ୍ବା

ଅର୍ଥ ସଂଗ୍ରହ କରି କୌଣସି ଦୁଃସ୍ଥ ପରିବାରରୁ ମେରିଆ କିଣି ଆଣନ୍ତି କିମ୍ବା ଦଳ ବାନ୍ଧି ସମତଳ ଅଞ୍ଚଳରୁ ପିଲାଟିଏ ଚୋରେଇ ଆଣନ୍ତି । ମେରିଆ ଲାଗି ପିଲା ବନ୍ଦୀ କରିବା କନ୍ଧସମାଜରେ ଅତି ନିନ୍ଦନୀୟ ।

ବଳି ପୂର୍ବରୁ ମେରିଆକୁ ଖିଅର କରାହୁଏ । ସରସର କରି ଦେହରେ ହଳଦୀମାଳିପା ବୋଳି ଗାଧୋଇ ଦିଆହୁଏ । ତାକୁ ଫୁଲମାଳ ପିନ୍ଧାଇ ପଟୁଆରରେ ବୁଲେଇ ଅଣାହୁଏ । ତାକୁ ଗୋଟିଏ ଖମ୍ବରେ ବାନ୍ଧି କନ୍ଧମାନେ ତା ଚତୁର୍ଦ୍ଦିଗରେ ନୃତ୍ୟ କରନ୍ତି । ବଳି ଦେବା ପୂର୍ବରୁ ଦିଶାରି କହେ "ହେ ଈଶ୍ୱର, ଆମ ବଡ଼ବଡ଼ିଆ ଯାହା କରୁଥିଲେ ଆମେ ସେଇଆ କରୁଛୁ । ଆମକୁ ଭଲ ଫସଲ ଦିଅ, ଆମ ଦେହପା ଭଲ ରଖ ।"

କେତେକ ସ୍ଥାନରେ ପଟୁଆରବେଳେ ଲୋକେ ମେରିଆ ମୁଣ୍ଡରୁ ବାଳ ଛିଡ଼ି ନେଇଯାନ୍ତି । ତାର ଟିକିଏ ମାଂସ, ହାଡ଼ କି ଟିକିଏ ବାଳ ରଖିବା ଶୁଭ । ବଳି ପୂର୍ବରୁ ମେରିଆର ହାତ ଗୋଡ଼ ଭାଙ୍ଗି ଦିଆ ହୋଇଥାଏ । ତା ହେଲେ ସେ କୌଣସି ପ୍ରତିରୋଧ କରିପାରିବ ନାହିଁ । ତାକୁ ବହୁତ ଅଫିମ ଖୁଆଇ ଦିଆ ହୋଇଥାଏ ।

କେଉଁଠି ବୃକ୍ଷ ଶାଖା ସାହାଯ୍ୟରେ ମେରିଆର ଚୁଡ ବା ତୋଟି ଚିପାଯାଏ କିମ୍ବା ଦିଶାରି ତା ତୋଟିରେ କୁରାଢ଼ି ମାରିଦିଏ । ରକ୍ତଧାରା ଝରଝର ହୋଇ ବୋହିଥାଏ । କେବଳ ମୁଣ୍ଡକୁ ଛାଡ଼ି ଜୀଅନ୍ତା ଅବସ୍ଥାରେ ଲୋକେ ତାହା ଦେହରୁ ଟିକିଏ ଟିକିଏ ମାଂସ କାଟି ନିଅନ୍ତି ।

ଏବେ ଏ ପୋଡ଼ ମେରିଆ ହେଉଅଛି; ଏହା ଅତି ନିଷ୍ଠୁର ପ୍ରଥା ହେଲେ ବି ସାମାଜିକ ଚଳଣିର ଅନ୍ତର୍ଗତ ହୋଇଅଛି । ଶ୍ରୀ ସାହୁ ଏ ପ୍ରଥାର ତୁଳନାତ୍ମକ ଅଧ୍ୟୟନ କରିଛନ୍ତି ।

ଭେରିଅର ଏଲୱିନଙ୍କ ପରି ପଣ୍ଡିତମାନେ ଏ ଜିଲାରୁ ଲୋକସଂସ୍କୃତିର ବହୁ ଉପାଦାନ ସଂଗ୍ରହ କରିଥିଲେ । କୋରାପୁଟର ଭାଷା ଗବେଷଣା ଲାଗି ଆମେରିକାର ଭାଷାତତ୍ତ୍ୱବିତ୍‌ମାନେ କୋରାପୁଟ ଆସିଥିଲେ । କୋରାପୁଟ ସଂପର୍କରେ କେତେକ ଉପାଦେୟ ପୁସ୍ତକ ପ୍ରକାଶିତ ହୋଇଅଛି । ତେଣୁ ଓଡ଼ିଶାର ଯେ କୌଣସି ଜିଲା ଅପେକ୍ଷା ନୃତାତ୍ତ୍ୱିକ ଦୃଷ୍ଟିରୁ କୋରାପୁଟ ଭାରତ ବାହାରେ ଅଧିକ ପରିଚିତ । କୋରାପୁଟ ଆଦିବାସୀଙ୍କ ସଂପର୍କରେ ଗବେଷଣାରେ ମାନବପ୍ରେମୀ, ସମାଜସେବାବ୍ରତୀ ଲକ୍ଷ୍ମୀନାରାୟଣ ସାହୁ ଅଗ୍ରଣୀ । ତାଙ୍କ ଗବେଷଣା ଯେ ଅନ୍ୟମାନଙ୍କର ପଥପ୍ରଦର୍ଶକ ହେବେ ସନ୍ଦେହ ନାହିଁ ।

---

ଛୁଏଁ ଛୁଏଁ ଛୁଏଁ, ଏଥି ତଥି ସହିଁ,
ତୁମକୁ ଛୁଏଁ, ଆଉ ଛୁଏଁ କାହିଁ, ସହିଁ ତୁମେ ନାହିଁ
ଭାବନା ମୋର ଯାଏ ସହିଁ, ଛୁଏଁ ମୁଁ ତହିଁ, ତହିଁ
ସେହି ଛୁଆଁରେ ତୁମେ ଧରାପଡ, ମୁଁ ଧରାପଡ଼େ ଥରେ ଥରେ
ଆଉ ନାହିଁ କାହିଁ ।

—ଲକ୍ଷ୍ମୀନାରାୟଣ

# ସ୍ମର୍ତେ ଲକ୍ଷ୍ମୀନାରାୟଣ

## ସଚ୍ଚିଦାନନ୍ଦ ରାଉତରାୟ

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓଡ଼ିଶାର ଏକ ଜୀବନ୍ତ ଅନୁଷ୍ଠାନ ଥିଲେ । ତାଙ୍କର ମହନୀୟ ବ୍ୟକ୍ତିତ୍ୱର ବିଭିନ୍ନ ପର୍ଯ୍ୟାୟ ଆଲୋଚନା କଲେ ଦେଖାଯିବ ଯେ ସେ ଥିଲେ ଏକାଧାରରେ ସେବକ, କବି ଓ ଦାର୍ଶନିକ ।

ସମାଜସେବକ ଭାବରେ ସେ ଓଡ଼ିଶାର ଘରେ ଘରେ ପରିଚିତ ଥିଲେ । ଉପକୂଳବର୍ତ୍ତୀ ଓଡ଼ିଶାର ଏପରି କୌଣସି ଅନୁଷ୍ଠାନ ନାହିଁ ଯାହା ସହିତ ତାଙ୍କର ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଯୋଗସୂତ୍ର ନ ଥିଲା । ସାହିତ୍ୟ, ସଙ୍ଗୀତ, ସମାଜସେବା ଏବଂ ସଂସ୍କୃତିର ବିଭିନ୍ନ ଅନୁଷ୍ଠାନମାନଙ୍କ ସଙ୍ଗେ ସେ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ । ସେବାକାର୍ଯ୍ୟ ପାଇଁ ସେ କାହାର ଆହ୍ୱାନ ବା ନିମନ୍ତ୍ରଣକୁ ଅପେକ୍ଷା କରୁ ନ ଥିଲେ । ସେ ନିଜେ ଯାଇ ସମସ୍ତ କର୍ମପ୍ରବାହରେ ନିଜକୁ ମିଶାଇ ଦେଉଥିଲେ । ସବୁ କାର୍ଯ୍ୟକୁ ନିଜର ବୋଲି ମନେ କରି ମାନ ଅଭିମାନକୁ ଭ୍ରୂକ୍ଷେପ ନ କରି ସେ ନିପୁଣ ଭାବରେ ତୁଲାଉଥିଲେ ।

ତାଙ୍କ ଭଳି ନିରଭିମାନ ସରଳପ୍ରାଣ ବ୍ୟକ୍ତି ଓଡ଼ିଶାରେ ବିରଳ । ସେ ଏକଥା ବୁଝିଥିଲେ ଯେ ମହତ୍ କାର୍ଯ୍ୟ ଗୁଡ଼ିକ କା ଚତୁରତା ଦ୍ୱାରା ସମ୍ପନ୍ନ ହୁଏନାହିଁ, ଏଥିପାଇଁ ଦରକାର ପ୍ରାଣର ଆବେଗ ଓ ଆନ୍ତରିକତା ।

ସେ ଅନ୍ୟକୁ ଯେପରି ନିଜର କରି ନେଇ ପାରୁଥିଲେ, ସେଭଳି ଶକ୍ତି ମୁଁ ଅନ୍ୟ କାହାଠାରେ ଦେଖି ନାହିଁ । ପରକୁ ଆପଣା କରିବାରେ ସେ ଥିଲେ ଓଡ଼ିଶାରେ ଅଦ୍ୱିତୀୟ ବ୍ୟକ୍ତି ।

ସାହୁଙ୍କର କବିତା ତାଙ୍କର ହୃଦୟର ନିର୍ଝରରେ ଭରପୂର । ସେଥିରେ ଆବିଳତା ବୋଲି କିଛି ନାହିଁ । ତାଙ୍କ କବିତାଗୁଡ଼ିକ ପଢ଼ିଲାବେଳେ ତାଙ୍କର ଆବେଗପ୍ଲୁତ ବ୍ୟକ୍ତିତ୍ୱର ଚେହେରା ଆଖି ଆଗରେ ସ୍ୱତଃ ଝଲସି ଉଠେ । ସେ ଯାହା, ଠିକ୍ ସେଇପରି ଭାବରେ ନିଜକୁ ପ୍ରକାଶ କରି ଯାଇଛନ୍ତି ସେ ତାଙ୍କର ଅସଂଖ୍ୟ କାବ୍ୟ କୃତିରେ । କେଉଁଠାରେ ନିଜକୁ ସଜାଇବାକୁ ବା ଢୋଡ଼ାଇବାକୁ ଚେଷ୍ଟା କରିନାହାନ୍ତି, ସାହିତ୍ୟିକତାର ନିନ୍ଦା ପ୍ରଶଂସା କିମ୍ବା ପ୍ରଚଳିତ ଧାରାର ଦାବୀ ଭ୍ରୂକୁଟି ପ୍ରତି ସେ ଆଦୌ ଭ୍ରୂକ୍ଷେପ କରିନାହାନ୍ତି ।

ତାଙ୍କର ପ୍ରକୃତ ପରିଚୟ ମିଳେ ତାଙ୍କର ବହୁମୁଖୀ କର୍ମଧାରାରେ । ସେ ଥିଲେ ଜଣେ ସାଧକ, ଜଣେ ଭୂୟୋଦର୍ଶୀ ପରିବ୍ରାଜକ । ଜୀବନର ବହୁ ପଥ ଅତିକ୍ରମ କରିଛନ୍ତି ସେ । ଚରୈବେତି ଜୀବନର ଅଗ୍ରସର ପ୍ରବାହରେ ସେ କେବେ ଥକି ପଥପାର୍ଶ୍ୱରେ ଛିଡ଼ା ହୋଇ ଯାଇନାହାନ୍ତି । ବରାବର ଆଗକୁ ଚାଲିଛନ୍ତି । ପାରିପାର୍ଶ୍ୱିକତାର ପ୍ରତିକୂଳତା ବା ଔଦାସୀନ୍ୟ ତାଙ୍କ ଗତିକୁ ସ୍ଥିର ମନ୍ଥର କରି ଦେଇ ପାରିନାହିଁ ।

ସଂସାର ଭିତରେ ଥାଇ ମଧ୍ୟ ସେ ସଂସାରର ବହୁ ଊର୍ଦ୍ଧ୍ୱରେ ଥିଲେ । ସଂସାରର କୌଣସି ମଳିନତା ତାଙ୍କୁ ସ୍ପର୍ଶ କରି ପାରି ନ ଥିଲା ।

ତାଙ୍କ ଭଳି ଜଣେ କ୍ଷଣଜନ୍ମା ଅଜାତଶତ୍ରୁ ପୁରୁଷକୁ ହରାଇ ଓଡ଼ିଶା ଦରିଦ୍ରତର ହୋଇ ପଡ଼ିଛି । ତାଙ୍କର ଅକପଟ ସ୍ୱଭାବ, ପ୍ରତିଜ୍ଞାପୂର୍ଣ୍ଣ ଦୀପ୍ତଚେତନା ଏବଂ ସର୍ବୋପରି ତାଙ୍କର କ୍ଷମା-ସୁନ୍ଦର ହସ ହସ କଥା—ତାଙ୍କର ସମସାମୟିକ ଜନତାର ଚିରଦିନ ସ୍ମୃତିର ସାମଗ୍ରୀ ହୋଇ ରହିବ ।

# ଲକ୍ଷ୍ମୀନାରାୟଣ ସ୍ମରଣେ

## ଶ୍ରୀ ଶ୍ରୀଧର ଦାସ

ଉତ୍କଳର ନୀରଳସ କର୍ମବୀର ଲକ୍ଷ୍ମୀନାରାୟଣ ସାହୁ ଆଜି ଇହଧାମରେ ନାହାନ୍ତି । ତାଙ୍କର ଦୀର୍ଘ କର୍ମମୟ ଜୀବନର ଅବସାନ ଘଟିଛି; କିନ୍ତୁ ତାଙ୍କର ସ୍ମୃତି ସହଜେ ଲିଭିବାର ନୁହେଁ ।

ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ମୋର ୪୦ବର୍ଷରୁ ଅଧିକ କାଳ ସମ୍ବନ୍ଧ ଥିଲା । ୧୯୧୮ କିମ୍ବା ୧୯୧୯ ମସିହାର କଥା । ସେତେବେଳକୁ ମୁଁ ପୁରୀ ଜିଲା ସ୍କୁଲର ୮ମ ବା ୯ମ ଶ୍ରେଣୀର ଛାତ୍ର । ଦିନେ ପୁରୀ ବଡ଼ଦାଣ୍ଡରେ ମୋତେ ଦେଖି ମୋର ପରିଚୟ ନେଲେ । ସେଦିନ ପ୍ରାୟ ୪ଘଣ୍ଟାଯାଏ ମୋତେ କାମରେ ଲଗାଇଲେ । ହିତବାଦ, ସର୍ଚ୍ଚଲାଇଟ ପ୍ରଭୃତି ପତ୍ରିକା ପଢ଼ି ଶୁଣାଇବା, କେଉଁ ଇଂରାଜୀ ଲେଖାର ଓଡ଼ିଆ କରିଦେବା ଇତ୍ୟାଦି କାମ । ଏହି ସମୟରେ ପୁରୀ ଜିଲାରେ ଦୁର୍ଭିକ୍ଷ ପଡ଼ିଥାଏ । ଦୁର୍ଭିକ୍ଷ ସାହାଯ୍ୟ କମିଟିଟିଏ ଗଢ଼ା ହୋଇଥାଏ । ପୁରୀର ବିଶିଷ୍ଟ ଓକିଲ ଜଗବନ୍ଧୁ ସିଂହଙ୍କ ଘରେ ଲକ୍ଷ୍ମୀନାରାୟଣ ବାବୁ ଅନେକ ସମୟରେ ରହୁଥାନ୍ତି । ତାଙ୍କ ପାଖକୁ ମୁଁ ଅନେକ ସମୟରେ ଯାଏ । ଗଲାମାତ୍ରେ ଗୋଟାଏ କିଛି କାମରେ ଲଗାଇ ଦିଅନ୍ତି । ଓଡ଼ିଆ ଖବରକାଗଜରେ ବାହାରିଥିବା ଦୁର୍ଭିକ୍ଷ ସମ୍ବାଦକୁ ଇଂରାଜୀ କରିବାକୁ ଅନେକ ସମୟରେ ମୋତେ ଦିଅନ୍ତି । ମୁଁ ଯାହା ଇଂରାଜୀ କରେ, ସେ ତାକୁ ସଂଶୋଧନ କରିଦିଅନ୍ତି; ତାପରେ ଟାଇପ କରି ବିଭିନ୍ନ ଇଂରାଜୀ ଖବରକାଗଜକୁ ପଠାନ୍ତି । ଖବରକାଗଜରେ ବାହାରିଲା ପରେ ମୋତେ ପୁଣି ତାହା ପଢ଼ାନ୍ତି ।

ଏହି ସମୟରେ ଗୋଟିଏ ମାସିକ ପତ୍ର ବାହାର କରିବାକୁ ସେ ମନସ୍ଥ କଲେ । ସେତେବେଳେ ସମବାୟ ଆନ୍ଦୋଳନ ଉପରେ ବିଶେଷ ଜୋର ଦିଆ ଯାଉଥିଲା । ତେଣୁ ସେହି ସମବାୟର ପ୍ରସାର ଲକ୍ଷ୍ୟରେ ଏହା କାର୍ଯ୍ୟ କରିବ ବୋଲି ତାଙ୍କର ମତ ଥିଲା; କିନ୍ତୁ ସେ ପତ୍ରିକାର ନାମ ଦେଲେ 'ସହକାର' । ମୁଁ କହିଲି 'ସହକାର' ନ ଦେଇ 'ସମବାୟ' ନାମ ଦେଲେ ଭଲ ହେବ; କିନ୍ତୁ ସେ କହିଲେ—'ସହକାର'ର ଅର୍ଥ ମଧ୍ୟ ତାହା; କାର ଅର୍ଥ କାର୍ଯ୍ୟ । ସମସ୍ତେ ମିଳି ଯେଉଁ କାମ କରିବେ, ତାହା ସହକାର ହେବ ନାହିଁ କାହିଁକି ? ମୁଁ ଆଉ ପ୍ରତିବାଦ କରିନାହିଁ ।

ଦୁଇ ତିନିଦିନ ପରେ ଗୋଟିଏ ଇଂରାଜୀ ପତ୍ରିକା (ବୋଧହୁଏ ଅମୃତବଜାର ପତ୍ରିକା)ରୁ ଗୋଟିଏ ସମବାୟ ବିଷୟକ କ୍ଷୁଦ୍ର ସମ୍ବାଦ ଓଡ଼ିଆ ଅନୁବାଦ କରିବାକୁ ମୋତେ ଲକ୍ଷ୍ମୀନାରାୟଣ ବାବୁ ଦେଲେ । ମୁଁ ଓଡ଼ିଆ କରି ଦେଲି । ସେତେବେଳେ ଏହାର କି ବ୍ୟବହାର ହେବ, ମୁଁ ଜାଣି ନ ଥିଲି । ପରେ ଦେଖିଲି ଯେ 'ସହକାର'ର ପ୍ରଥମବର୍ଷ ପ୍ରଥମ ସଂଖ୍ୟାର ପ୍ରଥମ ପୃଷ୍ଠାରେ ଏହା ପ୍ରକାଶ ପାଇଛି ।

ସେତେବେଳକୁ ଲକ୍ଷ୍ମୀନାରାୟଣ ବାବୁ ପୁରୀ ଜିଲା ସ୍କୁଲ ହଷ୍ଟେଲ ପାଖରେ ଥିବା ବାଲିପଡ଼ିଆରେ ତାଳପତ୍ର ଛାଟିର ବାଡ଼ଘେରା କେତୋଟି କୁଡ଼ିଆରେ ରହୁଥାନ୍ତି । ପାଖରେ ସେହି ସ୍କୁଲର ସାନ କିରାଣୀ ଲାଲ ପ୍ରତାପନାରାୟଣ ରାୟ ରହୁଥାନ୍ତି । ଏହି ପ୍ରତାପନାରାୟଣ ରାୟ ଲକ୍ଷ୍ମୀନାରାୟଣ ବାବୁଙ୍କୁ ଖୁବ୍ ଭକ୍ତି କରୁଥିଲେ ଏବଂ ଲକ୍ଷ୍ମୀନାରାୟଣ ବାବୁ ତାଙ୍କୁ ଯଥାସମ୍ଭବ ସାହାଯ୍ୟ କରୁଥିଲେ ।

'ସହକାର'ର ପ୍ରଥମ ସଂଖ୍ୟା ପୁରୀର ଜଗନ୍ନାଥ ପ୍ରେସରେ ଛପା ହେଉଥାଏ । ସେତେବେଳେ ଲକ୍ଷ୍ମୀନାରାୟଣ ବାବୁ ଦିନକେ ୧୫ଠାରୁ ୨୦ଘଣ୍ଟା ଯାଏ କାମ କରୁଥିଲେ । ଦିନେ ସନ୍ଧ୍ୟାବେଳେ ମୋତେ କାମ କରିବାକୁ ଡାକି ନେଇଥିଲେ । 'ସହକାର'କୁ ପାକେଟ୍ କରି ବାନ୍ଧିବା ଓ ତା ଉପରେ ଠିକଣା ଲେଖିବା ଏବଂ ଟିକେଟ୍ ମାରିବା କାମ କରୁ କରୁ ରାତି ଗୋଟାଏ ହୋଇ ଯାଇଥିଲା ।

୧୯୨୧ ମସିହାବେଳକୁ ଅସହଯୋଗରେ ମୁଁ କିଛିଦିନ ପାଇଁ ସ୍କୁଲ ଛାଡ଼ିଥିଲି । ଅବଶ୍ୟ ଲକ୍ଷ୍ମୀନାରାୟଣ ବାବୁ ମୋତେ ମନା କରିଥିଲେ । ସେ କହୁଥିଲେ—ତୁମେ ଭଲପିଲା । ପାଠ ପଢ଼ି ବି. ଏ., ଏମ. ଏ. ପାଶ କର । ଚାକିରି ନ କରି ଦେଶ କାମ କରିବ । ପୂର୍ବବର୍ତ୍ତୀ ଦୁଇତିନିବର୍ଷ ମଧ୍ୟରେ ତାଙ୍କ ସହିତ ସାମୟିକ ଦେଖା ହେଉଥିଲା । ତାଙ୍କ ସହିତ ଯେଉଁ କେତେଘଣ୍ଟା କଟାଇବାର ସୁବିଧା ମିଳେ, ସେଥିରେ ସେ କୌଣସି ନା କୌଣସି କାମର ଭାର ଦେଇଥାନ୍ତି ।

ଗୋଟିଏ ଆଶ୍ଚର୍ଯ୍ୟର କଥା—ସେ ଏତେ କାମ ଲଗାଉଥିଲେହେଁ କେବେହେଲେ ସେ କାମ କରିବାରେ କ୍ଳାନ୍ତି ଆସୁ ନ ଥିଲା; ବରଂ ଆନନ୍ଦ ଆସୁଥିଲା । ଅନେକ ସମୟରେ ସେ

Sister Nivedita, Annie Besant ପ୍ରଭୃତିଙ୍କ ବହି ଆଣି ପଢ଼ିବାକୁ ଦେଉଥିଲେ । ଖାଲି ସେତିକି ନୁହେଁ, ପରେ ଦେଖାହେଲେ ବହିଟିର ବିଷୟବସ୍ତୁ ସମ୍ବନ୍ଧରେ ମତାମତ ପଚାରୁଥିଲେ । ଏହି କେତେବର୍ଷ ମଧ୍ୟରେ ସେ ମୋର ଆର୍ଥିକ ଅଭାବ ଜାଣିପାରି କିଛି ସାମୟିକ ସାହାଯ୍ୟ ମଧ୍ୟ କରିଥିଲେ ।

ମୁଁ ଆଇ. ଏ. ପାଶ କରି ଗୋଟିଏ ମାଇନର ସ୍କୁଲରେ ହେଡ଼ମାଷ୍ଟର ହୋଇଥାଏ । ଏଥିପୂର୍ବରୁ ଲକ୍ଷ୍ମୀନାରାୟଣ ବାବୁ ମୋତେ କହୁଥାନ୍ତି—ଅନ୍ତତଃ ବି. ଏ, ଟା ପାଶ କରି ପକାଅ । ଭାରତସେବକ ସମିତିରେ ଯୋଗଦିଅ । ମୁଁ ଆଇ. ଏ. ପରେ ଆଉ ଅଧିକ ପଢ଼ିପାରିଲି ନାହିଁ । ତଥାପି ଭାରତସେବକ ସମିତିରେ ଯୋଗଦେବା ପାଇଁ ଖଣ୍ଡିଏ ଦରଖାସ୍ତ ପଠାଇ ଦେଲି । ତାର ଉତ୍ତରରେ ସେ ସମୟର ସଭାପତି (ବୋଧହୁଏ ଶ୍ରୀଯୁକ୍ତ ଦେବଧର) ଲେଖିଲେ—ତୁମର ଦରଖାସ୍ତ କମିଟି ବିଚାର କରି ସ୍ଥିର କଲେ ଯେ ତୁମକୁ ସହକାରୀ (Associate Member) ସଭ୍ୟ ଭାବରେ ନିଆଯାଇ ପାରିବ ନାହିଁ ।

ଏ ଖବର ମୁଁ ଲକ୍ଷ୍ମୀନାରାୟଣ ବାବୁଙ୍କୁ ଦେଇଥିଲି । ମୋ ମନରେ ବି. ଏ. ପାଶ୍ କରିବାକୁ ପ୍ରବଳ ଇଚ୍ଛା ହେଲା । ଲକ୍ଷ୍ମୀନାରାୟଣ ବାବୁ ଉତ୍ସାହ ଦେଲେ । ୧୯୨୮ ମସିହାରେ ମୁଁ ପରୀକ୍ଷା ଦେଇ ବି. ଏ. ପାଶ କଲି । ମୁଁ ଏଥର Servants of India Societyକୁ ନ ଲେଖି ଲକ୍ଷ୍ମୀନାରାୟଣ ବାବୁଙ୍କୁ ଚିଠି ଲେଖିଲି । ସେ ଉତ୍ତର ଦେଲେ ଏହିପରି—

Servants of India Society,
Cuttack
6-12-1928

ଶ୍ରୀଧର,

ତୁମ ଚିଠି ପାଇଥିଲି । କାର୍ଯ୍ୟରେ ବ୍ୟସ୍ତ ଥିବା ଯୋଗୁ ଉତ୍ତର ଦେଇ ପାରିନାହିଁ । Servants of India Societyରେ ଯୋଗଦେବାକୁ ହେଲେ ତୁମକୁ Public lifeରେ ଚିରକାଳ ପାଇଁ ଉତ୍ସର୍ଗ କରିବାକୁ ହେବ । ପୁଣି ଏଥିରେ ସହଜରେ ମେମ୍ବର କରନ୍ତି ନାହିଁ । ଯଦି ତୁମେ Public lifeରେ ବରାବର ରହିବାକୁ ଚାହଁ, ତାହାହେଲେ ପ୍ରଥମେ ଠିକ କର—ଏହି ଜୀବନଯାପନ କରିବ କି ନା ? ଯେବେ ଏହା କରିବାକୁ ରାଜି ହୁଅ, ତାହାହେଲେ ଏକବର୍ଷ ପାଇଁ ଚୌଦ୍ୱାରର Rural Reconstruction ସମ୍ପର୍କରେ ଚୌଦ୍ୱାରରେ ଗୋଟିଏ M. E. School କରିବାକୁ ଚେଷ୍ଟା କରିବ । ଏଥିପାଇଁ ଉପଯୁକ୍ତ ସମୟ ଡିସେମ୍ବର-ଜାନୁଆରୀ-ଫେବ୍ରୁଆରୀ ଓ ମାର୍ଚ୍ଚ । ମାର୍ଚ୍ଚ ସାଲ୍ଟିମାର୍ଟିବେଲକୁ ଯଦି ଡିଷ୍ଟ୍ରିକ୍ଟ ବୋର୍ଡ଼ ମଞ୍ଜୁର କରେ, ତାହାହେଲେ ସ୍କୁଲଟି ହୋଇଯିବ । ଏହିପରି କାର୍ଯ୍ୟ କଲା ପରେ ସୋସାଇଟିରେ ଯଦି ମେମ୍ବର ହୋଇ ପାରିବ । ମୋତେ ସୋସାଇଟିରେ ମେମ୍ବର ହେବା ପାଇଁ ୧୨ବର୍ଷ ଚେଷ୍ଟା ଓ ଅପେକ୍ଷା କରିବାକୁ ହୋଇଥିଲା । ଆଉ ଗୋଟିଏ କଥା ମନରେ ସ୍ପଷ୍ଟଭାବରେ ରଖିବାକୁ ହେବ—Public life must be spiritualized ଗୋଖଲେଙ୍କର ଏହା ମୂଳମନ୍ତ୍ର ଥିଲା । ଏହି ମୂଳମନ୍ତ୍ର ଉପରେ Servants of India Society ପ୍ରତିଷ୍ଠିତ । ଦେଖାହେଲେ ଅଧିକ କଥା । ଡିସେମ୍ବର ୧୭ ତାରିଖରେ ନମାପଡ଼ା ବ୍ୟାଙ୍କ ମିଟିଙ୍ଗ attend କରିବ । ସେଠାରେ ଦେଖାହେଲେ ଆଉ ସବୁ କଥା ।

ମାସିକ ୫୩୦୲ ଦେଇ ପାରେଁ ଏକବର୍ଷ ପାଇଁ ।

ତୁମର ସ୍ନେହର
ଲକ୍ଷ୍ମୀନାରାୟଣ

ଘଟନାଚକ୍ରରେ ମୋର ଆଉ Societyରେ ଯୋଗଦେବା ହେଲା ନାହିଁ କି ଚଉଦ୍ୱାରରେ ଗ୍ରାମ ସଂଗଠନ କାର୍ଯ୍ୟ କରିବା ହେଲା ନାହିଁ । କିନ୍ତୁ ଲକ୍ଷ୍ମୀନାରାୟଣ ବାବୁଙ୍କର ମୋ ପ୍ରତି ପୂର୍ବ ଆଦର କମି ନ ଥିଲା । ବରଂ ବଢ଼ିଥିଲା । ମୁଁ ଓଲସିଂହ ହାଇସ୍କୁଲରେ ହେଡ଼ମାଷ୍ଟର ଥିବାବେଳେ ସେ ଦୁଇଥରଥର ସେଠାକୁ ଯାଇଥିଲେ । ଛାତ୍ରମାନଙ୍କୁ ବକ୍ତୃତା ଦେଇଥିଲେ ଓ ଉପିଯୁମାନ କେତୋଟି ଛାତ୍ରଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରିଥିଲେ । ସେମାନଙ୍କ ସଙ୍ଗେ ସେ ବରାବର ପତ୍ର ବିନିମୟ କରୁଥିଲେ ।

ସେ କିପରି କର୍ମଠ, ପରିଶ୍ରମୀ ଓ ସରଳ ଥିଲେ, ତାଁର ଗୋଟିଏ ଉଦାହରଣ ଦେବା ଅସମୀଚୀନ ହେବ ନାହିଁ । ଠିକ କେଉଁ ବର୍ଷ ମନେ ନାହିଁ, କିନ୍ତୁ ୧୯୩୭ ଠାରୁ ୧୯୪୦ ମଧ୍ୟରେ ହେବ । ମୁଁ ବାଣପୁରରେ ଶିକ୍ଷକ ଥାଏ । ଖରାଦିନ । ସକାଳୁଆ ସ୍କୁଲ ହେଉଥାଏ । ସ୍କୁଲ କାର୍ଯ୍ୟ ପରେ ମୁଁ ଖାଇ-ପିଇ ଶୋଇଛି । କିଏ ଜଣେ ବାହାର କବାଟରେ ଠକଠକ କରି ଡାକିଲା—ଶ୍ରୀଧର, ଶ୍ରୀଧର । ମୁଁ ଉଠିପଡ଼ି ଦେଖେତ ଲକ୍ଷ୍ମୀନାରାୟଣ ବାବୁ; ଆଉ ତାଙ୍କ ସଙ୍ଗେ ତିନିଜଣ ଭଦ୍ରଲୋକ । ପ୍ରତ୍ୟେକଙ୍କ ହାତରେ ଖଣ୍ଡିଏ ଲେଖାଏଁ ସାଇକେଲ । ସମସ୍ତେ ଘର ଭିତରକୁ ଆସିବାମାତ୍ରେ ସେ ମୋତେ କହିଲେ, "ଆମକୁ ଖାଇବାକୁ ଦିଅ । ଆମେ ସକାଳୁ କିଛି ଖାଇନାହୁଁ ।" ମୁଁ ବଡ଼ ବିବ୍ରତ ହୋଇପଡ଼ିଲି । ମୁଁ ଖଣ୍ଡିଏ ସାଇକେଲ ଦେଇ ଜଣକୁ ବଜାରରୁ ଚୂଡ଼ା, ଚିନି, କଦଳୀ ଆଣିବାକୁ ପଠାଇଲି । ମୋର ଏ ବିପଦ ଦେଖି ଲକ୍ଷ୍ମୀନାରାୟଣ ବାବୁ

କହିଲେ, "ସେ ତ ପର କଥା । ବର୍ତ୍ତମାନ ଆମକୁ ପଖାଳ ନ ଦେଲେ ହେବ ନାହିଁ । ମୁଁ ଦେଖେ ଯେ ହାଣ୍ଡିରେ ପିଲାଙ୍କ ପାଇଁ ଯେତକ ପଖାଳ ଅଛି, ତାହା ଜଣକୁ ମଧ୍ୟ ଯଥେଷ୍ଟ ହେବ ନାହିଁ । ସଙ୍ଗେ ସଙ୍ଗେ କିଛି ଶାଗ ଭଜାଗଲା । ସେହି ଜଣକର ଖାଦ୍ୟକୁ ଶ୍ରୀଜଣ ବାଣ୍ଟି ଖାଇଲେ । କେବଳ ତୋରାଣି ଓ ଦହି ପିଇବା ସାର ହେଲା । ମୁଁ ବଡ଼ ଲଜ୍ଜିତ ହେଲି । କିନ୍ତୁ ସେତେବେଳେ ମୋର ଉପାୟାନ୍ତର ନ ଥିଲା । ଘଣ୍ଟାଏ ବିଶ୍ରାମ କରିଛନ୍ତି କି ନାହିଁ ପୁଣି କଟକ ଆସିବାକୁ ବାହାରିଲେ । ଶୁଣିଲି ସେ ଦିନ ସେମାନେ ଛତ୍ରପୁରଠାରୁ ସାଇକେଲରେ ବାହାରି କଟକଯାଏ ଯିବାକୁ ସ୍ଥିର କରିଥିଲେ ।

ସେତେବେଳକୁ ତାଙ୍କୁ କୁଷ୍ଠରୋଗ ଆକ୍ରମଣ କରିଥିଲା । ଓଠ ଉପରେ ଚିହ୍ନ ଥିଲା । ମୋତେ କହିଲେ ଯେ ସେ ଚିକିତ୍ସା କରାଉଛନ୍ତି ଓ କୁଷ୍ଠରୋଗ ବିଷୟରେ ଖଣ୍ଡିଏ ବହି ଲେଖିଛନ୍ତି ।

ଘଟଣାକ୍ରମେ ମୁଁ ୧୯୪୮ରେ କଟକ ଆସିଲି ଓ ୧୯୫୫ ମସିହାରେ ତାଙ୍କର ଘର ନିକଟରେ ଘର କରି ରହିଲି । ସେହିଦିନଠାରୁ ତାଙ୍କର ମୃତ୍ୟୁପର୍ଯ୍ୟନ୍ତ ମୁଁ ପ୍ରାୟ ପ୍ରତ୍ୟହ ତାଙ୍କୁ ଦେଖୁଥିଲି । ସେ କେବଳ Servants of India Societyର କାର୍ଯ୍ୟରେ ଯେ ନିଯୁକ୍ତ ଥିଲେ, ତାହା ନୁହେଁ । ନାନା ସାମାଜିକ, ସାହିତ୍ୟିକ, ରାଜନୈତିକ ଓ ସାଂସ୍କୃତିକ ସମସ୍ୟା ସହିତ ସେ ଜଡ଼ିତ ଥିଲେ । ସେ ଯେଉଁ ବିଷୟରେ M. A. ପାଶ କରିଥିଲେହେଁ ଶ୍ୱାସରୋଗରେ ପୀଡ଼ିତ ଥାଇ ନାନା କାର୍ଯ୍ୟ ଜଞ୍ଜାଳରେ ବ୍ୟସ୍ତ ରହି ମଧ୍ୟ ପୁଣି ପରୀକ୍ଷା ହଲରେ ବସିବାକୁ କୁଣ୍ଠିତ ନ ଥିଲେ । ସେ Constituent Assemblyର ସଭ୍ୟ ଥିଲେ । ଭାରତର ପ୍ରେସିଡ଼େଣ୍ଟଙ୍କଠାରୁ ପଦ୍ମଶ୍ରୀ ଉପାଧିରେ ସେ ସମ୍ମାନିତ ହୋଇଥିଲେ । କିଛିକାଳ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଥିଲେ । ସେ ଯେତେ ବଡ଼ ହେଲେ ହେଁ ଯେତେ ଉଚ୍ଚକୁ ଉଠିଥିଲେ ହେଁ ଆମମାନଙ୍କ ପାଖରେ ସେଇ ସରଳ ଲକ୍ଷ୍ମୀନାରାୟଣ ବାବୁଙ୍କ ଛଡ଼ା ଆଉ କିଛି ନ ଥିଲେ । ମୋର ପିଲାମାନଙ୍କୁ ସେ ମୃତ୍ୟୁ-ପର୍ଯ୍ୟନ୍ତ ସ୍ନେହଆଦର ଦେଖାଇ ଅଛନ୍ତି । ଯେତେବେଳେ ଲକ୍ଷ୍ମୀନାରାୟଣ ବାବୁଙ୍କର ଶବକୁ ଶ୍ମଶାନକୁ ନିଆଗଲା, ସେତେବେଳେ ମୋର ଶ୍ରୀବର୍ଷର ନାତୁଣୀଟି ପଚାରିଥିଲା, "ଅଜାକୁ ବାନ୍ଧି କୁଆଡ଼େ ନେଉଛନ୍ତି ?" ମୋଠାରୁ ଉତ୍ତର ବାହାରିଲା ନାହିଁ । ଖାଲି ଦୀର୍ଘଶ୍ୱାସ ଲୁହ ଗଡ଼ି ପଡ଼ିଲା ।

ତାଙ୍କର କେତେ ଲେଖା, ଚିଠି, ବହି ଏବେ ସୁଦ୍ଧା ଆମ ଘରେ ଏଣେତେଣେ ପଡ଼ିଥିବ । ଶେଷ ଜୀବନରେ ସେ କାହିଁକି ଏତେ କବିତା ପ୍ରିୟ ହୋଇ ପଡ଼ିଥିଲେ, ମୁଁ ବୁଝିପାରି ନାହିଁ । କେତେବେଳେ ଓଡ଼ିଆରେ ତ କେତେବେଳେ ଇଂରେଜୀରେ । ମୋତେ ଓ ମୋର ପିଲାମାନଙ୍କୁ ଉଦ୍ଦେଶ୍ୟ କରି ସେ ଅନେକ ଇଂରେଜୀ କବିତା ଲେଖି ପଠାଇଥିଲେ ।

ତାଙ୍କର ଗୋଟିଏ ବଡ଼ ବନ୍ଧାଖାତା ଥିଲା । ସେଗୁଡ଼ିକ ହେଉଛି ଗୋଟିଏ ଛାପା ଚିଠି । ତାହାର ଗୋଟିଏ ପାଖ ଅଲେଖା ଥିବାରୁ ସେଗୁଡ଼ିକୁ ଏକାଠି ସିଲେଇ କରି ପଟା ମଲାଟ ଦେଇଥିଲେ । ତାର ପ୍ରତ୍ୟେକ ପୃଷ୍ଠାରେ ଗୋଟିଏ ପ୍ରସିଦ୍ଧ ସ୍ମରଣୀୟ ଘଟଣା ଲେଖାଥିଲା; ଯଥା—ଖାରବେଳଙ୍କ ମଗଧ ବିଜୟ ଦିବସ, ଅଚ୍ୟୁତ ଦାସଙ୍କ ସନ୍ନ୍ୟାସ ଦିବସ, ଗୋପବନ୍ଧୁଙ୍କ ମୃତ୍ୟୁଦିବସ, ଗୋଖଲେଙ୍କ ଶ୍ରାଦ୍ଧଦିବସ, ଉତ୍କଳ ସମ୍ମିଳନୀ ଦିବସ, ଉପେନ୍ଦ୍ରଭଞ୍ଜ ଦିବସ; ନବ ଉତ୍କଳ ଦିବସ ଇତ୍ୟାଦି । ମୃତ୍ୟୁର କିଛିଦିନ ପୂର୍ବରୁ ମୁଁ ତାଙ୍କ ସଙ୍ଗେ ବସି କଥାବାର୍ତ୍ତା ହେଉଥିଲି । ଶୁଣିଲେ ଯେ ମୋ ନାତୁଣୀଟି ଅ, ଆ ଲେଖିବାକୁ ଆରମ୍ଭ କଲଣି । ସେ ସେହି ବନ୍ଧାଖାତାଟି ଆଣି ତା ହାତରେ ଦେଲେ । ମୁଁ ସେଥିରେ ଏହି ସବୁ 'ଦିବସ' ପ୍ରାୟ ପ୍ରତ୍ୟେକ ପୃଷ୍ଠାରେ ଦେଖି ପଚାରିଲି, "ଅମୁକ ତାରିଖରେ କାହିଁକି ଅମୁକ ଦିବସ ପାଳିତ ହେବ ? ସେହି ତାରିଖରେ ଯେ ଘଟଣା ଘଟିଥିବାର ପ୍ରମାଣ କଅଣ ?" ସେ କହିଲେ, "ତାର ପ୍ରମାଣ ନାହିଁ; ହୁଏତ ସେ ତାରିଖରେ ସେ ଘଟଣା ଘଟି ନ ଥିଲା । ମାତ୍ର ଘଟଣା ତ ସତ୍ୟ । ସେଥିପାଇଁ ଗୋଟିଏ ଦିନ ନିର୍ଦ୍ଦିଷ୍ଟ କରିଦେଲେ କ୍ଷତି କଅଣ ? ମୋର ଇଚ୍ଛା ଥିଲା ଓଡ଼ିଶାରେ ପ୍ରତିଦିନ କୌଣସି ବିଶିଷ୍ଟ ଘଟଣାର ସ୍ମୃତି 'ଦିବସ' ପାଳିତ ହୁଅନ୍ତା । କିନ୍ତୁ ତାହା ହୋଇପାରିଲା ନାହିଁ । ମାମୀ (ମୋ ନାତୁଣୀ) ସେଥିରେ ଅ, ଆ ଲେଖୁ ।" ଖାତାଖଣ୍ଡି ଚିରିଗଲଣି ।

ତାଙ୍କର ୬।୧୨।୫୮ ତାରିଖର ଚିଠିଟି ଦେବାନ୍ତୁ ପାଇଁ ଉପରେ ଉଦ୍ଧାର କରିଛି । ୨୫।୩।୫୫ ତାରିଖରେ ସେ ଦୁଇଟି ଇଂରାଜୀ କବିତା ପଠାଇଥିଲେ । ଗୋଟିଏ ମୋତେ ଓ ଅନ୍ୟଟି ମୋର ପୁଅ କୃଷ୍ଣପ୍ରସାଦକୁ ଲକ୍ଷ୍ୟ କରି ଲେଖା । ସେ ଦୁଇଟି ନିମ୍ନରେ ଦେଲି । ଦୁଇଟିଯାକ ଉତ୍କଳ ସମ୍ମିଳନୀ ସୁବର୍ଣ୍ଣ ଜୟନ୍ତୀ ଚିଠି ଫାରମ ଉପରେ ଟାଇପ କରି ଯାଇଥିଲା ।

**ଉତ୍କଳ ସମ୍ମିଳନୀ ସୁବର୍ଣ୍ଣ ଜୟନ୍ତୀ**

ଫୋନ୍ ନ ୨୫୨ ଭାରତସେବକ ସମିତି ଅଫିସ
ବକ୍ସିବଜାର, କଟକ
ତାରିଖ........

**For Krushna**

Dear Krushna, whene'er I see you
The sweet face twitched in regardful bashfulness
I love you, all the more, really,
you are so sweet to me.
You are not so brilliant like Jagannath,
Let it be so; don't bother.
The real bother
Is how to walk always on the path of righteousness.
Let us all ever strive for it. That will give us joy and Vim.
Krushna, you are as dear to me as your Jagannath,
May you ever walk on the path of righteousness in your uplift movement

*Yours lovingly*
Sd. L. N. Sahu
Lakshmi Narayan Sahu
25-3-1955

**ଉତ୍କଳ ସମ୍ମିଳନୀ-ସୁବର୍ଣ୍ଣ ଜୟନ୍ତୀ**

ଫୋନ ନ ୨୫୨ ଭାରତସେବକ ସମିତି ଅଫିସ
ବକ୍ସିବଜାର, କଟକ
ତାରିଖ.........

**For Sridhar**

Here is a scholar, rustic in his manner,
But deep and sound in studies withal.
I welcome him. I welcomed him
many a time within my mind.
Like a seed thrown into the crevice of a broken palace struggling
He has struggled all his life, to build himself up, build himself up.
I liked him when he was a boy; I liked him and watched him when he was a young man.
To-day he has struggled up,
yet he struggles,
And knows no rest.
He is happy with his Children and yet he thinks of them so much
That he knows no rest and he will know no rest,
A strong plant exposed to hardihood and bears well
I love him all the same. Stop not till the goal is reached.

Sd. Lakshmi Narayan Sahu
25-3-1955

ତା ୮।୮।୬୦ ରିଖରେ ମୁଁ ଲକ୍ଷ୍ମୀନାରାୟଣ ବାବୁଙ୍କଠାରୁ ଭୁବନେଶ୍ୱରରୁ ଖଣ୍ଡିଏ ଚିଠି ପାଇଥିଲି । ତାହା ଏହି

There is no Higher
Religion Than Truth

The Theosophical Society
Bhubaneswar Lodge
Orissa
Date ୮-୮-୬୦

ଶ୍ରୀଧର,

କାହିଁ ଲେଖାଟା ପାଇଲି ନାହିଁ । ଦେବ । ଅପେକ୍ଷାରେ ରହିଛି । ଦହି ଛୁପା ହେଉଛି—ସେହି ଅଜଣା ରାଇଜର କଥା ।

ଜଗନ୍ନାଥ କିପରି ଅଛି ? ତାର ସ୍ତ୍ରୀ କିପରି ଅଛି ? କହିବ ମୋତେ ଗୋଟିଏ ଚିଠି ଲେଖିବ । ତାକୁ ବେଳ ନ ଥିଲେ ତା ସ୍ତ୍ରୀ ଲେଖୁ । ତା ସ୍ତ୍ରୀ କଣ ଏମ୍. ଏ. ପରୀକ୍ଷା ଦେବ ? କୃଷ୍ଣଙ୍କୁ କହିବ ତା ନୂଆ ଗୁଙ୍କରର ଖୋଜ ପଠାଇବ ପାର୍ଶଲରେ । ଇତି ।

ଲକ୍ଷ୍ମୀନାରାୟଣ ସାହୁ

ହଁ ବନ୍ଧୁ କଥା ଭୁଲି ଯାଇଥିଲି—ସେ କିପରି ଅଛୁ ?

[ଏ ପଦ ଯାଇ ମୁଁ ଅଜଣା ରାଇଜର କଥା ପାଇଁ ଗୋଟିଏ ଲେଖା ଦେଇଥିଲି। ଜଗନ୍ନାଥ ମୋର ବଡ଼ ପୁଅ । କୃଷ୍ଣ ମଝିଆଁ ପୁଅ । ବନ୍ଧୁପ୍ରିୟା ମୋର ଝିଅ ।]

ଅବଶ୍ୟ ତାଙ୍କ ସଙ୍ଗେ ଆମ ପରିବାରର ଦୀର୍ଘ ସମ୍ବନ୍ଧ ଫଳରେ ସେ ଆମର ଭଲମନ୍ଦ, ସୁଖଦୁଃଖ ସବୁ ବିଷୟ ଉତ୍ତମରୂପେ ଅବଗତ ଥିଲେ । ବ୍ୟକ୍ତିଗତ ସମ୍ବନ୍ଧ ବାହାରେ ଜଣାଇବା ସୁନ୍ଦର ନୁହେଁ । ତଥାପି ଲକ୍ଷ୍ମୀନାରାୟଣ ବାବୁଙ୍କୁ ସ୍ମରଣ କରି ଯେଉଁ କେତୋଟି କଥା ମନକୁ ଆସିଲା, ଲେଖିଲି । ପାଠକପାଠିକାମାନେ କ୍ଷମାଦେବେ ।

---

କବି ହେଲେ ଅନ୍ୟ ଯେଉଁମାନେ ପଢ଼ିବେ ତା'ଙ୍କୁ
ସେ ଯେବେ ଯିବେ ଭଲ,
ତେବେ କହିବ କବି ସେ, ନୋହିଲେ ନାହିଁ ।
ପଦ ପଢ଼ୁଥିବ, ପଢ଼ିଯାଉଥିବ
ଅନ୍ତର ଭଜିବ ନାହିଁ, ସେ କି କବି ?
ଶବ୍ଦଗ୍ରହା କବି କେତେ ଅଛନ୍ତି ଏହିପରି
ଭାବଗ୍ରହା କବି ହେଲେ ସିନା ତା'କୁ କବି ବୋଲି ।

—ଲକ୍ଷ୍ମୀନାରାୟଣ

# ଭୁଲ ନା ଭୁଲ ନାହିଁ

## ବିଭୂତି ପଟ୍ଟନାୟକ

ସମୟର ଏକ ବିଚିତ୍ର ଶକ୍ତି ଅଛି ।

ଜୀବନର ଅତି ଉଜ୍ଜ୍ୱଳତମ ସ୍ମୃତିକୁ ବି ସମୟର ପ୍ରଭାବ ବିସ୍ମୃତିର ଅତଳ ମହାସାଗରକୁ ଠେଲିଦିଏ । ସ୍ମୃତି ହୁଏ ବିସ୍ମୃତ ।

ବେଳେ ବେଳେ ମନେହୁଏ ମଣିଷ ଯଦି ସ୍ମୃତିର ସିନ୍ଦୁର ଫରୁଆରେ ଜୀବନର ସବୁ ଘଟଣାକୁ ସାଇତି ରଖି ପାରୁଥାଆନ୍ତା, ତେବେ ଜୀବନଟା ହୁଅନ୍ତା କି ଜଟିଳ—ମଧୁର, ବିଚିତ୍ର-ସୁନ୍ଦର !

କିନ୍ତୁ ତାହା ସେ ପାରେନା···

ଲକ୍ଷ୍ମୀନାରାୟଣଙ୍କ ସହ ହୋଇଥିବା ଅନେକ ସାକ୍ଷାତର ସ୍ମୃତିକୁ ମୁଁ ମନେ ରଖି ପାରିନାହିଁ । ସେଥିପାଇଁ ଚେଷ୍ଟା ମଧ୍ୟ କରି ନାହିଁ । ସ୍ମୃତିର ତାଏରୀ ପୃଷ୍ଠା ସେଥିପାଇଁ ଶୂନ୍ୟ ରହିଛନ୍ତି । କିନ୍ତୁ ସେଇ ଛିନ୍ନ ସ୍ମୃତିର ଡାଏରୀରୁ ଯେଉଁ କେତୋଟି ମଧୁର ସଂକଳ୍ପ ଏବେ ବି ମନର ପାଣ୍ଡୁଲିପିରେ ଅମଳିନ ହୋଇ ରହିଛି, ତାହା ସ୍ମରଣ କଲେ ଦେହ ମନ ଅଦ୍ଭୁତ ଆବେଗରେ ରୋମାଞ୍ଚିତ ହୋଇ ଉଠୁଛି ।

ସେ ମୋର ଅବୋଧ କୈଶୋରର ସ୍ମୃତି ।

କାଳ ୧୯୫୬—୫୭ ।

ସ୍ଥାନ—ଜଗତସିଂହପୁର । ଦ୍ୱିମାସିକ ସାହିତ୍ୟ ପତ୍ରିକା 'ତରଣୀ' ଅଫିସ । ସେ ଦିନ 'ତରଣୀ'ରେ ପ୍ରକାଶ ପାଇବା ପାଇଁ ଆସିଲା ଗୋଟିଏ କବିତା—ଡାକରେ, ଲଫାପାରେ । କାଗଜର ଗୋଟିଏ ପାଖରେ କ'ଣ ସବୁ ଟାଇପ ହୋଇ କଟା ହୋଇଥାଏ । ଅନ୍ୟ ପାଖରେ ଲେଖା ହୋଇଥାଏ କବିତା । କବିତାର ଆକାର ସୁଦୀର୍ଘ । ଲେଖକ—ଲକ୍ଷ୍ମୀନାରାୟଣ ସାହୁ ।

ମଫସଲ ଅଞ୍ଚଳରୁ ପ୍ରକାଶ ପାଉଥିବା ଆମ ପତ୍ରିକା ପାଇଁ ଲକ୍ଷ୍ମୀନାରାୟଣଙ୍କ ଭଳି ଏତେ ବଡ଼ ଲୋକ କବିତା ପଠାଇଛନ୍ତି ଦେଖିବାମାତ୍ରେ ମନଟା ଗଭୀର ଆନନ୍ଦରେ ଅଧୀର ହୋଇ ଉଠିଲା । କିନ୍ତୁ କବିତାର ଆକାର ଦେଖିଲା ପରେ ମନଟା ପୁଣି ଯନ୍ତ୍ରଣାରେ ଛଟପଟ ହେଲା ।

'ତରଣୀ'ରେ କବିତା ପାଇଁ ନିର୍ଦ୍ଦିଷ୍ଟ ସୀମିତ ସ୍ଥାନ ମଧ୍ୟରେ ଏତେ ବଡ଼ କବିତା ଛାପିବା ଲାଗି ସ୍ଥାନ ହେବ ନାହିଁ । ଅଥଚ ଲକ୍ଷ୍ମୀନାରାୟଣ ବାବୁଙ୍କ କବିତା ଫେରନ୍ତ ଦେବା ପାଇଁ ମୋଠାରେ ଉତ୍ସାହ ଓ ସାହସର ଦୁର୍ଭିକ୍ଷ !

ବନ୍ଧୁ ଭବଚନ୍ଦ୍ର ଚିଠି ଲେଖିଥିଲି ଦେଖା କରି କବିତା ସମ୍ପର୍କରେ ଆଲୋଚନା କରିବାକୁ । ଠିକ୍ ସମୟରେ ଉତ୍ତର ଆସିଥିଲା—"ମୋ ଦେଉଳସାହି ବସାରେ ଦେଖା କରିବାକୁ ଆସିବେ । ସକାଳଓଳି ଆସିଲେ ଭଲ । ଗୁଆ ଖାଇ ଯିବ ।"

ଲକ୍ଷ୍ମୀନାରାୟଣଙ୍କ ନାମ ଶୁଣିଥିଲି, ଚେହେରା ଦେଖି ନ ଥିଲି । ଚେହେରା ସମ୍ପର୍କରେ ମନରେ ନାନା ସମ୍ଭବ ଅସମ୍ଭବ କଳ୍ପନା । ବହୁ ଭାଷାର ପଣ୍ଡିତ ଲୋକ । ମୋ ସହିତ କେଉଁ ଭାଷାରେ କଥା କହିବେ, ସେଥିପାଇଁ ମଧ୍ୟ ମନରେ ଦୁଶ୍ଚିନ୍ତା ।

କିନ୍ତୁ ସାକ୍ଷାତ ହେବା ପରେ ସେ ଦୁଶ୍ଚିନ୍ତା ସବୁ ବିଗଳିତ ମହମ ଭଳି ତରଳିଗଲା । ମୁଣ୍ଡରେ ଖୁବ୍ ଗ୍ରେଟ ଗ୍ରେଟ କେଶ—ଦୀର୍ଘ ଚେହେରା—ଠିକ୍ ତାଙ୍କ କବିତା ଭଳି ! ଚଷମାତଳୁ ଉଜ୍ଜ୍ୱଳ ଦିଶୁଥିବା ଆଖିରେ ସ୍ନେହସଜଳ ଦୃଷ୍ଟି ।

ମତେ ଦେଖି ସାଙ୍ଗେ ସାଙ୍ଗେ କହି ଉଠିଲେ, "ମତେ ଦେଖି ଆଶ୍ଚର୍ଯ୍ୟ ହେଉଛ ! ମୁଁ ବି ତମକୁ ଦେଖି କମ ଅବାକ୍ ହେଇନି । ତମେ ବୋଧହୁଏ ଆମ ଦେଶର ସବା ସାନ ସମ୍ପାଦକ ।"

ମୋର ବୟସକୁ ଲକ୍ଷ୍ୟ କରି ତାଙ୍କର ସେ ମଧୁର ଆକ୍ଷେପ । ସେ ଆକ୍ଷେପରେ କିନ୍ତୁ ଅବଜ୍ଞାର ତିକ୍ତତା ନ ଥିଲା; ଥିଲା ସ୍ନେହ ସହାନୁଭୂତିର ଅମ୍ଳମଧୁର ସ୍ପର୍ଶ । ମୁହଁରେ ଗାମ୍ଭୀର୍ଯ୍ୟ ନାହିଁ, କଣ୍ଠରେ ରୁକ୍ଷତା ନାହିଁ, ଯାହା ଅନ୍ତତଃ ତାଙ୍କ ବୟସ ଓ ସାମାଜିକ ସ୍ଥିତି ଦୃଷ୍ଟିରୁ ଥିଲେ ମୁଁ ତୃପ୍ତ ହୋଇଥାଆନ୍ତି ।

ଗପ' ସପ ପରେ ସେ ମତେ ସିଧା ପଚାରିଲେ, "କବିତା ବିଷୟରେ ଏଥରକ ଆଲୋଚନା ହେଉ—ମୋ କବିତା ବିଷୟରେ ତମର ମତ କଣ ?"

କବିତା ବିଷୟରେ ମୋର ମତ ?

କେଉଁଠିବା ସେତେବେଳେ ମୋର ବୟସ, ଅଭିଜ୍ଞତା ? ତାଙ୍କରି ଆଗରେ ତାଙ୍କ କବିତାର ପ୍ରଶଂସା କରିବା ଛଡ଼ା ଆଲୋଚନା କରିବା ପାଇଁ ଯେଉଁ ଜ୍ଞାନ, ସାହସ ଦରକାର, ତାହା ମୋର ଯଥେଷ୍ଟ ଅଛି କି ନାହିଁ, ସେ କଥା ପରୀକ୍ଷା କରି ଦେଖିବା ପାଇଁ ମୁଁ କିଛି ସମୟ ଗୁମ୍ ମାରି ବସିଲି ।

କିନ୍ତୁ ଅଦ୍ଭୁତ ତାଙ୍କର ବ୍ୟକ୍ତିତ୍ୱ, ଦୂରଦୃଷ୍ଟି ।

ସେ ବୋଧହୁଏ ମୋର ସଂକୋଚ, ଅପ୍ରତିଭଭାବ ଲକ୍ଷ୍ୟ କରି ପାରିଲେ । ନିଜ ତରଫରୁ ଆରମ୍ଭ କଲେ, ମୋ କବିତାର

ଶୃଙ୍ଖଳା ନାହିଁ···କିନ୍ତୁ ପରିମାଣରେ ବୌଦ୍ଧିକତାର ଅଭାବ ମଧ୍ୟ ତମେ ଲକ୍ଷ୍ୟ କରିଥିବ । ଆଜିକାଲି ପିଲାଏ ସାହିତ୍ୟରେ ହାର୍ଦ୍ଦିକତା ଅପେକ୍ଷା, ବୌଦ୍ଧିକତା ପ୍ରତି ବେଶୀ ଧ୍ୟାନ ଦେଉଛନ୍ତି । କିନ୍ତୁ ମୁଁ ତ ଆସି ବୁଢ଼ା ହେଲିଣି, ପୁଣି ମୋ ଜୀବନରେ କୌଣସି ନିର୍ଦ୍ଦିଷ୍ଟ ଶୃଙ୍ଖଳା ନାହିଁ—କବିତାରେ କୁଆଡ଼ୁ ଆସିବ ?"

କୌଣସି ଗତାନୁଗତିକତାର ନିର୍ଦ୍ଦିଷ୍ଟ ଶୃଙ୍ଖଳାର ଶିଗଡ଼ ଗୁଡ଼ାରେ ଶୃଙ୍ଖଳିତ କରିବାକୁ ପସନ୍ଦ କରୁ ନ ଥିଲେ ଲକ୍ଷ୍ମୀନାରାୟଣ । ସେଥିପାଇଁ ସେ ଏତେ ବିରାଟ ହୋଇଥିଲେ; ଏତେ ବ୍ୟାପକ ହୋଇଥିଲେ !

କବିତାର ଗୁଣାତ୍ମକ ମୂଲ୍ୟବୋଧର ଅଭାବରୁ ନୁହେଁ; କବିତାଟି ଖୁବ୍ ଲମ୍ବା ହୋଇ ଯାଇଥିବାରୁ ଆମ ପତ୍ରିକାରେ ଛପାଯାଇ ପାରୁନ ବୋଲି ମୁଁ ତାଙ୍କୁ ବିନୀତଭାବରେ ବୁଝାଇଥିଲି । ସେ ପ୍ରତିଶ୍ରୁତି ଦେଇଥିଲେ ଯେ ଭବିଷ୍ୟତରେ ମୋପାଇଁ ସେ ଗୋଟିଏ ଶ୍ରେଷ୍ଠ ଲେଖା ଲେଖି ଦେବେ ।

ମୁଁ ତାଙ୍କ ବସା ଛାଡ଼ିବା ଆଗରୁ ସେ ମୋ ହାତରେ ଧରାଇ ଦେଇଥିଲେ ତାଙ୍କ ଲିଖିତ-ପୁଲାଏ ପୁସ୍ତକ ପୁସ୍ତିକା । ନିଜ ନାତି ନାତୁଣୀଙ୍କ ବାହାଘରକୁ ଲକ୍ଷ୍ୟ କରି ରଚିତ କବିତା ପୁସ୍ତିକାଠାରୁ ବଙ୍ଗଳା, ଇଂରେଜୀ ଭାଷାରେ ମୁଦ୍ରିତ ତାଙ୍କର କେତେକ କବିତା ପୁସ୍ତକ ମଧ୍ୟ ସେଥିରେ ଥିଲା । ଥିଲା ମଧ୍ୟ ସେଥିରେ 'ବୀଣା' ଭଳି ଉପନ୍ୟାସ । ସାହିତ୍ୟ ତାଙ୍କ ହୃଦୟର ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି, ବୌଦ୍ଧିକତାର ଜଟିଳତା କିମ୍ବା ପ୍ରକାଶ-ଭଙ୍ଗୀର କୃତ୍ରିମତାରେ ତାହା କଣ୍ଟକାକୀର୍ଣ୍ଣ ନୁହେଁ ।

ବସା ଛାଡ଼ି ଆସିବାବେଳକୁ ମୁଁ ଲକ୍ଷ୍ୟ କରିଥିଲି—ସେ କଥା କହିବାବେଳେ ତାଙ୍କ ଶ୍ୱାସନଳୀରେ ଯନ୍ତ୍ରଣା ଅନୁଭବ କରୁଛନ୍ତି; କିନ୍ତୁ ମୁହଁରୁ ସେ ହାସ୍ୟରେଖା ଅନ୍ତର୍ହିତ ହୋଇନାହିଁ ।

ତାଙ୍କସହ ଦ୍ୱିତୀୟ ସାକ୍ଷାତ ପୁଣି ସେଇ ଲେଖା ନେଇ ।

ମୁଁ ସେତେବେଳେ ସାପ୍ତାହିକ 'କୃଷକ'ର ସମ୍ପାଦନା ଦାୟିତ୍ୱରେ ଥାଏ । ସ୍ୱର୍ଗୀୟ ସାରଙ୍ଗଧର ଦାସ (ଆମର ପ୍ରିୟତମ ସାର୍ବଜନୀନ ଅଜା)ଙ୍କ ସ୍ମୃତି ଉପଲକ୍ଷେ 'କୃଷକ'ର ଏକ ସ୍ମୃତି ସଂଖ୍ୟା ପ୍ରକାଶ ପାଇଥାଏ । ଲକ୍ଷ୍ମୀନାରାୟଣ ବାବୁଙ୍କ ଲେଖା ଛପାଯିବାର କଥା—ତାଙ୍କୁ ଆଗରୁ ଚିଠି ଲେଖା ଯାଇଥିଲା । ବିଳମ୍ବ ହେବାରୁ ଲେଖାଟି ସଂଗ୍ରହ କରି ଆଣିବା ପାଇଁ ମୁଁ ନିଜେ ଗଲି ତାଙ୍କ ବସାକୁ ।

ସେତେବେଳେ ସେ ରୋଗରେ ଶଯ୍ୟାଶାୟୀ ।

ମତେ ଦେଖି କିନ୍ତୁ ଶିଶୁଟିଏ ଭଳି ଚପଳ ହୋଇ ଉଠିଲେ ।

କହିଲେ, 'ଲେଖା ପାଇଁ ଆସିଛ—ନେଇଯାଅ ।'

'କୃଷକରେ ତାଙ୍କ ଲେଖା ପାଇଁ ଗୃହପୃଷ୍ଠା ସ୍ଥାନ ମୁଁ ଶୂନ୍ୟ କରି ରଖିଥାଏ; କିନ୍ତୁ ସେ ଯେଉଁ ଲେଖାଟି ଦେଲେ ତାହା ଅତି ଶ୍ରେଷ୍ଠ । ଦୁଇ ପୃଷ୍ଠା ହେବ ।

ମୋ ମୁହଁର ଚିନ୍ତାରେଖାଗୁଡ଼ିକ କୁଞ୍ଚିତ ହୋଇଗଲା ।

ସେ କହିଲେ, ତୁମକୁ "ଥରେ ଶ୍ରେଷ୍ଠ ଲେଖାଟିଏ ଲେଖି ଦେବି ବୋଲି କହିଥିଲି—ଏଥର ସେ ପ୍ରତିଶ୍ରୁତି ମୁଁ ରଖିଛି । କଣ ଖୁସି ତ ?"

ତାଙ୍କର ସେ ଶାଣିତ ସ୍ମୃତିଶକ୍ତି ଦେଖି ମୁଁ ଚକିତ ହୋଇଥିଲି । ଉତ୍ତର ଦେଇଥିଲି ଏଥର କିନ୍ତୁ ମୁଁ ଆପଣଙ୍କ ପାଇଁ ଗୃହପୃଷ୍ଠା ସ୍ଥାନ ରଖିଥିଲି ।"

ତାଙ୍କ ଯନ୍ତ୍ରଣାକାତର ଶୀର୍ଣ୍ଣ ମୁହଁରେ ହସର ତରଙ୍ଗ ଉଚ୍ଛଳ ହୋଇ ଉଠିଲା ।

--- ସେ କହିଲେ, "କିଛି ଲେଖିବା ଜିନିଷ ନ ଥିଲେ ଅନେକ ଲେଖି ହୋଇଯାଏ । ଆଉ ବେଶି ଲେଖିବା ପାଇଁ ମସଲା ଥିଲେ, ମୋ ଲେଖା ହୁଏ ଶ୍ରେଷ୍ଠ । ସାରଙ୍ଗଧର ବାବୁଙ୍କ ସହ ମୋର ଅନେକ ଦିନର ପରିଚୟ—ଅନେକ ସ୍ମୃତି ଜଡ଼ିତ । କେଉଁଟା ଲେଖିବି କିଛି ଠିକ୍ କରି ପାରିଲି ନାହିଁ । ସେ ଆଗ ମରିଗଲେ—ତାଙ୍କ ପାଇଁ ସ୍ମୃତି କଥା ମତେ ଲେଖିବାକୁ ହେବ—ଏକଥା ମୁଁ କେବେ ଭାବି ନ ଥିଲି ତ ! ତମର ତ ପ୍ରତିବର୍ଷ ସ୍ମୃତି ସଂଖ୍ୟା ବାହାରିବ—ମତେ ବୋଧହୁଏ ଆଉ ଅନେକଥର ଲେଖିବାକୁ ପଡ଼ିବ—ଏକା ଥରେ ସବୁ ସ୍ମୃତି ଶେଷ କରିଦେଲେ ଚଳିବ କେମିତି ?"

ଜୀବନ ପ୍ରତି ଏକ ବ୍ୟାପକ ଦୃଷ୍ଟିକୋଣ, ସମାଜ ପ୍ରତି ଏକ ଉଦାର ସହାନୁଭୂତିଶୀଳ ମନୋଭାବ ଯୋଗୁ ଲକ୍ଷ୍ମୀନାରାୟଣ ସବୁ ସ୍ତରର ଲୋକଙ୍କୁ ଅତି ଆପଣାର କରି ପାରିଥିଲେ । ତାଙ୍କର କେହି ଶତ୍ରୁ ଥିବେ ଏକଥା ମୁଁ ମୋଟେ କଳ୍ପନା କରି ପାରିନାହିଁ ··· ଯଦିଓ ସେ ସାହିତ୍ୟ ଏକାଡେମୀ ସଭାପତି ଥିବାବେଳେ ତାଙ୍କ ପ୍ରତି କେତେକଙ୍କଠାରୁ ଆକ୍ଷେପୋକ୍ତି ମୁଁ ଶୁଣିଛି ।

ସେ ଏକାଧାରରେ ଥିଲେ ରାଜନୀତିଜ୍ଞ, ସମାଜସେବୀ, ସାହିତ୍ୟିକ, ଗବେଷକ—ଆଉ ପ୍ରତିଟି ବିଷୟରେ ତାଙ୍କର ନିଷ୍ଠା, ଅବଦାନ ଥିଲା ଅପରିସୀମ, ଜ୍ଞାନ ଆହରଣର ପିପାସା

ତାଙ୍କଠାରେ ଏତେ ପ୍ରବଳ ହୋଇଥିଲା ଯେ ବୃଦ୍ଧ ବୟସରେ ମଧ୍ୟ ସେ କେତେଥର ଏମ୍, ଏ, ପରୀକ୍ଷାରେ ବସିଥିଲେ ।

ସେ ଏପରି ଏକ ସମୟର ପ୍ରତିନିଧିତ୍ୱ କରୁଥିଲେ ଯେତେବେଳେ ଆଜି ଭଳି ସମାଜସେବା ଜୀବିକା ନିର୍ବାହର ଏକ ଅବଲମ୍ବନ ନ ଥିଲା; ଥିଲା ଜୀବନର ଏକ ବ୍ରତ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଲକ୍ଷ୍ମୀନାରାୟଣ ଏହି ସମାଜସେବାରେ ନିଜକୁ ଉତ୍ସର୍ଗ କରିଥିଲେ ।

ମୁଁ ତାଙ୍କ କର୍ମମୟ ଜୀବନର ବହୁ କ୍ଷେତ୍ରରେ ଦେଖିଛି । ଟାଉନହଲ ସଭାର ସଭାପତି, ବକ୍ତା ଭାବରେ । ସାହିତ୍ୟ ଏକାଡେମୀର ସଭାପତି ରୂପରେ, ତରୁଣ ସାହିତ୍ୟିକମାନଙ୍କୁ ବାଟରେ ଦେଖାହେଲେ ବି ସାହିତ୍ୟ ପାଇଁ ଉତ୍ସାହିତ କରିବା ସମୟରେ । ବୟସରେ ବୃଦ୍ଧ ହୋଇ ଯାଇଥିଲେ ବି କର୍ମତତ୍ପରତାରେ ସେ ଥିଲେ ଚିର ତରୁଣ ।

ମୃତ୍ୟୁ ସବୁବେଳେ କରୁଣ, କେବେ କେବେ କିନ୍ତୁ ଏହା ଏକାନ୍ତ ମର୍ମନ୍ତୁଦ ମନେହୁଏ । ଲକ୍ଷ୍ମୀନାରାୟଣଙ୍କ ଭଳି ନିରହଙ୍କାରୀ, ସମାଜସେବୀ, ସାହିତ୍ୟିକ, ବିଶେଷ କରି ତାଙ୍କପରି ଜଣେ ଭଦ୍ରଲୋକଙ୍କ ମୃତ୍ୟୁରେ ମୋ ଭଳି ଓଡ଼ିଶାର ବହୁ ତରୁଣ ସାହିତ୍ୟିକ ପ୍ରେରଣାର ଝରଣାଟା ହଠାତ୍ ଶୁଖିଗଲା ଭଳି ବୋଧ କରିବା ସ୍ୱାଭାବିକ ।

---

ଖଣିରୁ ଖଣିଜ ଶୁଦ୍ଧି ପାଇଁ
ଯେମନ୍ତେ ଅପେକ୍ଷା କରଇ
ଅପର କାରିଗରର ହାତ
ମୁହିଁ ତେମନ୍ତେ ଖଣିରୁ ଆଣିଛି ଖଣିଜ ମାତ୍ର
ବୃଦ୍ଧଜନେ ତାହା ନେବେ ସଂସ୍କାର କରି ।

-- ଲକ୍ଷ୍ମୀନାରାୟଣ

# ବଚ୍ଛିନ୍ନ ଉତ୍କଳର ଶ୍ରଦ୍ଧାଞ୍ଜଳି

## ଶ୍ରୀ କାଳୀପ୍ରସନ୍ନ କର

"ଯିଏ ଖାଲି ନ ଜାଣିଲେ
ଯା'ର ପାଇଁ ଏତେ ଗୀତକଥା ।
ଜଳେ ଭରି ଆମ ଆଖି
ନଦେ ଭରି ତାଙ୍କ ଆଖି ପତା ॥"

ତ୍ୟାଗବୀର ଲକ୍ଷ୍ମୀନାରାୟଣ ସାହୁ, ସ୍ୱୟଂସିଦ୍ଧ ଓ କ୍ଷଣଜନ୍ମା ପୁରୁଷ । ତେଣୁ ତାଙ୍କ ଜନ୍ମସ୍ଥାନ, ପିତାମାତାଙ୍କ ନାମ, ଜନ୍ମ ଲଗ୍ନ ଦିନ, ବାର, ମାସ, ସାଲ ଦେଇ ପରିଚୟ ଦେବାର କୌଣସି ପ୍ରୟୋଜନ ନାହିଁ । ତାଙ୍କର ଏକମାତ୍ର ପରିଚୟ ସେ ଧର୍ମବୀର— ଜାତିରେ ମନୀଷୀ । ସେ ତାଙ୍କ ବଂଶପତି, ସେହି ତାଙ୍କ ବଂଶଧର ।

ବ୍ୟକ୍ତିବିଶେଷର ତ୍ୟାଗ ବଳରେ ହିଁ ଜାତୀୟଶକ୍ତି ପରିପୁଷ୍ଟ ହୁଏ, ସଂପ୍ରସାରିତ ହୁଏ, ଉଦ୍ଦୀପିତ ହୁଏ । ଭୋଗର ପ୍ରବଳ ମୋହ ଏଡ଼ି ତ୍ୟାଗର ପଥରେ ଅଗ୍ରସର ହେବା ସମସ୍ତଙ୍କ ପକ୍ଷେ ସମ୍ଭବପର ନୁହେଁ । ଯାହା ପକ୍ଷେ ତାହା ସମ୍ଭବ, ସେ ବୀରଗ୍ର ଗଣ୍ୟ—ଜାତି ଓ ଦେଶର ମଥାର ମଣି । ତାଙ୍କ ବୀରତ୍ୱ ନିକଟରେ ମନୁଷ୍ୟତ୍ୱ ଚିରକାଳ ପଦାନତ ଓ ପ୍ରଣତ । ଲକ୍ଷ୍ମୀନାରାୟଣ ବାବୁ କର୍ମର ମନ୍ଦିରରେ ହିଁ ତ୍ୟାଗର ଚରମ ଓ ପରମ ବିକାଶ କରି ଯାଇଛନ୍ତି ।

ବିଭିନ୍ନ ମହାମାନବ ବିଭିନ୍ନ ରୂପରେ, ଭିନ୍ନ ଭିନ୍ନ ପଥରେ ବିଶ୍ୱସ୍ରଷ୍ଟାଙ୍କୁ ଉପଲବ୍ଧି କରି ଯାଇଛନ୍ତି । Wordsworth ଅଜ୍ଞେୟ ଅନନ୍ତଙ୍କୁ ଉପଲବ୍ଧି କରିଥିଲେ ପ୍ରକୃତିର ସୁଷମା ସମ୍ଭାର ମଧ୍ୟରେ-ତାହାର ଭିତରେ Shelleyଙ୍କର ରହସ୍ୟମୟ ବ୍ରହ୍ମର ଉପସ୍ଥିତିର ଉପଲବ୍ଧି । ଏହିପରି Scott, Arnold, ଭକ୍ତ, କବିସମ୍ରାଟ, ରବୀନ୍ଦ୍ର ଆହୁରି କେତେ ଆହୁରି କେତେ ବିଭିନ୍ନ ପଥଦେଇ ଧାଇଁଛନ୍ତି ସ୍ରଷ୍ଟାର ସାନ୍ନିଧ୍ୟ ସକାଶେ । ସର୍ବତ୍ୟାଗୀ ଲକ୍ଷ୍ମୀନାରାୟଣ ଜନସେବାରେ ହିଁ ସାନ୍ନିଧ୍ୟ ଲଭି ଓ ସ୍ରଷ୍ଟାର ସ୍ୱରୂପ ଦର୍ଶନ ଉପଲବ୍ଧି କରି ପାରିଥିଲେ ।

ଆଜକୁ ୫୦ ବର୍ଷ ପୂର୍ବେ ଅର୍ଥାତ୍ ୧୯୨୪ ସାଲରେ ମହାନୁଭବ ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ମୋର ପ୍ରଥମ ପତ୍ର ପରିଚୟ ଘଟେ । ସେତେବେଳେ 'ସହକାର' ମାସିକପତ୍ରିକାଟିର ଶିଶୁ ଅବସ୍ଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ଲକ୍ଷ୍ମୀନାରାୟଣ ବାବୁ ସେ ପତ୍ରିକାଟିର ସମ୍ପାଦନା କରୁଥିବା ବେଳେ ତାଙ୍କ ଓଡ଼ିଶାର ସିଂହଭୂମିରେ ଗୁଇଁବସାର ମୁଁ ଓଡ଼ିଆ ପାକ୍ଷିକ 'ତରୁଣ' ପତ୍ରିକାଟିଏ ପ୍ରକାଶ କରୁଥାଏ । ଲକ୍ଷ୍ମୀନାରାୟଣ ବାବୁ ଲେଖିଲେ, ପ୍ରତି ମାସରେ 'ସହକାର' ଓ 'ତରୁଣ'ର ବିନିମୟ ଘଟିଲେ ବିଶେଷ ସୁଖୀ ହେବ, ଏହା ତାଙ୍କ ଅଲଙ୍ଘନୀୟ ଆଦେଶ ଭାବି ସାଦରେ ବରଣ କଲି ।

ଏହିପରି ପତ୍ରିକା ଦୁଇଟିର ଆଦାନପ୍ରଦାନ ଚାଲୁଥାଏ । ତା'ର କିଛିଦିନ ପରେ ଚକ୍ରଧରପୁରରୁ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଜୟନ୍ତୀରେ ଭାଷଣ ଦେବା ପାଇଁ ଆହୂତ ହୋଇ ଉଭୟେ ସେଠାରେ ଯାଇ ମିଳିତ ହେଲୁ । ତାହାହିଁ ଆମ୍ଭର ପ୍ରଥମ ଦୃଷ୍ଟିଗ୍ର ପରିଚୟ ।

ଏହାର କିଛିକାଳ ପରେ ସେ ହଠାତ୍ ଝଡ଼େଇକଳା ଯାଇ ଉପସ୍ଥିତ ହୁଅନ୍ତି—ମୁଁ ଅସୁସ୍ଥତା ଯୋଗୁଁ ତାଙ୍କ ଆଗମନ ସଂବାଦ ଜାଣି ପାରି ନ ଥିଲି । କିନ୍ତୁ—ସେ ଉଦାର ମହାଶୟ ମୋତେ ଖୋଜି ଖୋଜି ସହସା ମୋ କୁଟୀରରେ ଯାଇ ପଦାର୍ପଣ କରି ମୋତେ ଧନ୍ୟ କଲେ । ତା ପରେ ବହୁ ସ୍ଥାନରେ ବହୁବାର ସାକ୍ଷାତ ହୋଇଛି । ସବୁବେଳେ ଦେଖିଛି—ଜୀବନର ଚିରଜାଗ୍ରତ ରୂପରେଖା ସାରା ଅଙ୍ଗରେ ପ୍ରକଟିତ । ସେହି ସରଳ, ମହାନ୍ ମୁଖଛବି—ଚିର ପ୍ରସନ୍ନ । ଜୀବନର ଜୀବନ୍ତ ପ୍ରତିଛବି ଗୋଟିଏ ।

ଲକ୍ଷ୍ମୀନାରାୟଣ ବାବୁ ଯେ ପ୍ରକୃତରେ ଆମ ଜାତିର ଗୌରବ, ଅପରିମିତ ବୈଭବ, ତ୍ୟାଗର ଆଦର୍ଶ ପ୍ରତିମୂର୍ତ୍ତି, ତାହା ପ୍ରତ୍ୟେକ ମନୀଷୀଙ୍କୁ ବିଶେଷ ଭାବରେ ଜଣା । ପ୍ରିୟ, ସ୍ତୁତି, ବନ୍ଦନା ପାଇଁ ସେ ଯେ ବିନ୍ଦୁମାତ୍ର ଲାଳାୟିତ ନୁହନ୍ତି— ଏହା ଯେ ଅଭ୍ରାନ୍ତ ସତ୍ୟ—ସେଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଯଦି ଜଣେ ହେଲେ ଓଡ଼ିଆ ପୁଅ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଲୋଭର ମୋହ ଜୟ କରି ତାଙ୍କର ଲକ୍ଷ୍ୟ-ପଥରେ ଅଗ୍ରସର ହୋଇପାରନ୍ତି, ତେବେ ସ୍ୱର୍ଗ ଗର୍ଭରେ ତାଙ୍କ ଛାତି ଫୁଲି ଉଠିବ, ସେ ସୁଖୀ ହେବେ, ଶାନ୍ତି ପାଇବେ ।

ତେଣୁ ନିଜର କଥାରେ କହେ···
ନିଜକୁ ତମେ ଯେ ସହଜରେ ଭୁଲିପାର
ତେଣୁ ନା ତମକୁ ପାରୁନାହୁଁ ଆମେ ଭୁଲି ।
ସମସ୍ତଙ୍କ ପଛେ ନିଜକୁ ଗୋପନ କର
ତେଣୁନା ତମକୁ ପ୍ରକାଶୁଁ ଉପରେ ଧରି ।

ସାନକୁ କେବେହେଁ ସାନ ନାହିଁ ଭାବ ମନେ
ସାଦରେ ବରଣ କର ଅନାଦୃତ ଜନେ ।
ପ୍ରୀତି ତବ କିଛୁ ଚାହେନା ନିଜର ଲାଗି
ତେଣୁ ନା ଧନ୍ୟ ହୋଇ ତବ ଅନୁରାଗୀ ।

# ଅଫୁରନ୍ତ

## ନରସିଂହ ସାହୁ

'କି ପିଲା ତୁମେ ?
ପାଣ ପିଲା ଅମେ ।'
ଏହି କଥା ଶୁଣି ମନ ହୋଇଗଲା ମୋର ଦୁଃଖ
କେତେ ଦିନ ଧରି ମା'ଛେଉଣ୍ଡ ପରି ରହିଥିବ ଯୁଗେଯୁଗ ।
କେହି କି ତାଙ୍କର ପାଇଁ
ଏତିକି ଭାବନ୍ତି ନାହିଁ
କିମ୍ପା ସେ ଜନମ ହୋଇ
ରହିବ ଦୂରେ-ଦୂରେ ଅଛୁଆଁ ହୋଇ ?'

ଓଠରେ ଯା'ର ହସ, ଆଖିରେ ଯା'ର ଦୀପ୍ତି, କଥାରେ ଯା'ର ଅମୃତ; ଯିଏ ପାଣପିଲାଙ୍କୁ କୋଳ କରେ, ଗଦବାପିଲାଙ୍କୁ ଚଡ଼ ଦିଏ, କୃଷ୍ଣବେଣୀର ପିଠି ଆଉଁସେ, ଇଦ୍ରୁସ ବେଗୀର ଥଲଥଲ ଗା'ରୁ ପୋଛିଆଣେ ପୂଜରକ୍ତ; ଯିଏ କାଠ ଚିରେ, ବୋଝେ ନଡ଼ା ମୁଣ୍ଡାଇ ନର୍ଦ୍ଦମ ଖସିବେଳେ ଖଲଖଲ ଆସେ ଚଉଦୁଆରରୁ ଦେଉଳ ସାହି, ଯିଏ ବୁଢ଼ା ଦିନେ ହାଫ୍‌ପ୍ୟାଣ୍ଟ ପିନ୍ଧି ସ୍କୁଲପିଲାଙ୍କ ସାଙ୍ଗରେ ଫୁଟବଲ ଖେଳେ, ଯିଏ ଭୁବନେଶ୍ୱରର ପଣ୍ଡାଟୋକାଙ୍କ ସାଥିରେ ବିନ୍ଦୁସାଗରରେ ଏ ମୁଣ୍ଡରୁ ସେ ମୁଣ୍ଡ ପହଁରେ, ଯେ ରଙ୍ଗମଞ୍ଚରେ ନେତାଜୀ ସୁଭାଷ ବୋଷଙ୍କ ରୋଲ୍‌ରେ ଅବତରଣ କରି ଷ୍ଟେଜ୍ କମ୍ପାଏ, ଯିଏ କୂଳଉଛୁଳା ବଢ଼ନ୍ତି ପଦାନଈରେ ଗୋଟାଏ ହାତରେ ଚୂଡ଼ା ଚାଉଳ ଧରି ଆଉ ହାତରେ ପହଁରି ପହଁରି ଏକୂଳରୁ ସେକୂଳ ଯାଇ ବନ୍ୟାଜର୍ଜରିତଙ୍କ ସେବା କରେ, ଯିଏ ଜୟପୁର ଟାଉନହଲରେ ରାତି ଦଶଟାରେ ମିଟିଂ ସାରି ନବବିବାହିତା ସ୍ତ୍ରୀକୁ ଏକୁଟିଆ ଛାଡ଼ିଦେଇ ଟୁଙ୍ଗ୍‌ଟୁଙ୍ଗ୍ ଆସି ବସାରେ ପହଞ୍ଚେ, ଯିଏ ସତଷଠି ବର୍ଷରେ ବାଇଶି ବର୍ଷର ଛୁଆଙ୍କ ସାଥିରେ ପରୀକ୍ଷା ହଲରେ ବସି ଏମ୍. ଏ. ପରୀକ୍ଷା ଦିଏ, ଯିଏ ତମ ଘରେ, ତା'ଘରେ, ମୋ ଘରେ, ହାଡ଼ି ଘରେ, ପାଣ ଘରେ, ପଠାଣ ଘରେ, ଖ୍ରୀଷ୍ଟାନ ଘରେ, ବଙ୍ଗାଳି ଘରେ, ତେଲେଙ୍ଗା ଘରେ, ରାଜଉଆସରେ, ପତଚ୍ଛୁଉଣୀରେ ଭିକାରୀଙ୍କ ଭଳି ମାଗି ମାଗି ହସି ହସି ସଭିଙ୍କ କଂସାରେ ହାତ ବୁଡ଼ାଏ. ପୁଣି ଯିଏ ସିଂହ ଶିଶୁ ଭଳି ବଜ୍ରହୁଙ୍କାରରେ ଦିଗଦିଗନ୍ତ ପ୍ରକମ୍ପିତ କରି ସେ ଯୁଗର ପ୍ରବଳ ପରାକ୍ରମୀ ମିଷ୍ଟର ଦାସଙ୍କ ମୁହଁରେ ପ୍ରକାଶ୍ୟ ସଭାରେ ଠୋସ୍ ଠୋସ୍ ଜବାବ ଦିଏ ଓ ଏ ଯୁଗର ଭାରତର ଅଦ୍ୱିତୀୟ ନେତା ପଣ୍ଡିତ ନେହେରୁଙ୍କୁ କନଷ୍ଟିଚୁଏଣ୍ଟ ଏସେମ୍ବ୍ଲିରେ ରୋକ୍‌ଠୋକ୍ ସମାଲୋଚନା କରେ, ଯିଏ ଶିଶୁଭଳି ସରଳ, କୋମଳ, ଚପଳ, ତରୁଣ ଭଳି ଉଚ୍ଛଳ, ଉଦ୍ଦାମ, ଉଗ୍ର ଶୀଳ ଓ ସ୍ଥବିର ଭଳି ଧୀର, ଶାନ୍ତ, ସାଧନାରତ, ତପସ୍ୟାମଗ୍ନ ସେଇ ଲକ୍ଷ୍ମୀନାରାୟଣ ସାହୁ......

ଲକ୍ଷ୍ମୀନାରାୟଣ ସାହୁ ଅଦ୍ଭୁତ, ବିଚିତ୍ର, ଛବିଳ, ଦୀପ୍ତିମନ୍ତ, ସ୍ଥିତପ୍ରଜ୍ଞ ।

ଲକ୍ଷ୍ମୀନାରାୟଣ ସାହୁଙ୍କୁ ମୁଁ ପ୍ରଥମେ ଦେଖିଥିଲି ୧୯୩୫ରେ । ସେତେବେଳେ ମୁଁ ପଞ୍ଚମ ଶ୍ରେଣୀର ଛାତ୍ର । ମୋର ତାଙ୍କ ସହିତ ପରିଚୟ ନାହିଁ । ମୁଁ ତାଙ୍କ ବକ୍ତୃତା ଶୁଣିନାହିଁ । ତାଙ୍କ ଗୁଣଗରିମା ଜାଣିନାହିଁ । ସେ କେବଳ ଦଶମିନଟ୍ ପାଇଁ ମୋର ସେକେଣ୍ଡମାଷ୍ଟର ସ୍ୱର୍ଗୀୟ ହରିବଲ୍ଲଭ ଘୋଷଙ୍କ ପାଖକୁ ଯାଇ ହସି, ବସି, କୋଳାକୋଳି ହୋଇ, କୁଣ୍ଢାକୁଣ୍ଢି ହୋଇ ଫେରିଲେ । ସେତିକିରେ କେଜାଣି କାହିଁକି ମନ ମୋର ଛାଏଁ ଛାଏଁ ତାଙ୍କଆଡ଼କୁ ଟାଣି ହୋଇଗଲା । ମୁଁ ତାଙ୍କୁ ମନେମନେ ଦେବତା ଭଳି ପୂଜା କରିବାକୁ ଲାଗିଲି ।

ହାଇସ୍କୁଲରେ—୧୯୪୧, ପରିଚୟ ହୋଇ ବି ହୋଇ ନାହିଁ । କେବଳ ଖଣ୍ଡିଏ ଚିଠିର ବିନିମୟ ଯାହା ।

କଲେଜରେ—୧୯୪୬, ଦିନେ ହଠାତ୍ ଦେଖିଲି ପଞ୍ଚହତା ଡେଙ୍ଗା ଦରବୁଢ଼ା ଜଣେ ଖାଲି ଲୁଗାଖଣ୍ଡେ ପିନ୍ଧି ଫୁଙ୍ଗୁଳା ଦେହରେ, ଫୁଙ୍ଗୁଳା ଗୋଡ଼ରେ ଧୂଳି ପଟପଟ ହେଇ ଝାଳନାଳ ଅଣ୍ଟୁଏ ହୋଇ ଦେଉଳସାହିରୁ ଖଲଖଲ ଆସି ମିନର୍ଭା ମେସ୍‌ରେ ମୋ ଆଗରେ ଠିଆ !! ମୁଁ ସ୍ତମ୍ଭିତ ହୋଇ ଘଡ଼ିଏ ଚାହିଁଲି । ମୁଁ ମେଧାବୀ ଛାତ୍ର ନୁହେଁ । ମୋର ଝଲକ ନ ଥିଲା । ମୋର ଶାଳୀନତା ନ ଥିଲା, କୁଳୀନତା ତ ଦୂରର କଥା । ତଥାପି ଭିକ ଆଶାରେ ଉକାଣ୍ଠି ଥରେ ତାଙ୍କ ଦ୍ୱାରସ୍ଥ ହୋଇଥିଲି ବୋଲି ସେ ଯେ ଖଲଖଲ ହସି ହସି କାହିଁ ଇଦ୍‌ଗାପଡ଼ିଆରୁ କାହିଁ ଚାଉଳଆଗଡ଼ର ମିନର୍ଭା ମେସରେ ସିଧା ଆସି ଉପସ୍ଥିତ ହୋଇଯିବେ ଖାସ୍ ମୋରି ପାଇଁ, ଏହା ମୋର ସ୍ୱପ୍ନର ଅତୀତ ଥିଲା । ସେ କେତେ ଧନୀସନ୍ତାନଙ୍କୁ ହୁଏତ କୋଳ କରୁଥିଲେ । କିନ୍ତୁ ଗରିବ ପାଇଁ, ନୀଚ ପାଇଁ ସେ ନିଜକୁ କିପରି ନିଃଶେଷ କରି ଦେଉଥିଲେ, ତାଙ୍କର

ଅଥଳ ସିନ୍ଧୁ କିପରି ଉଦ୍‌ବେଳିତ, ଉଚ୍ଛୋଳିତ ହୋଇ ଉଠୁଥିଲା ମୁଁ ସେଦିନ ଦେଖିଛି ତାଙ୍କର ଅଶ୍ରୁରେ, ହସରେ, ବାଣୀରେ, ଭଙ୍ଗୀରେ । ମୋ ଭଳି କେତେ ଶତ ଶତ ଚଳିଆ ଜୀବନ୍ତୁ, ଅଳିଆ ଷ୍ଟୋକେଇର କାଗଜକୁ ଆଣି ସେ ଯେ ଟେବୁଲ ଉପରେ ରଖିଛନ୍ତି, ତା' ଯେ ଜାଣିଛି, ସେଇ କେବଳ ଜାଣେ ।

ତାଙ୍କର ପ୍ରୀତି, ତାଙ୍କର ସ୍ନେହ, ତାଙ୍କର ହସ, ତାଙ୍କର ଉନ୍ମାଦନା, ତାଙ୍କର ଯୌବନର ଅଗ୍ନି ସରିବାର ନୁହେଁ, ମରିବାର ନୁହେଁ, ତାହା ଅନନ୍ତ, ଅସୀମ, ଅପାର, ଅଫୁରନ୍ତ !

ସେଇ ଅଥଳ ଅମ୍ବୁଧିର ଗୋଟିଏ ବିନ୍ଦୁ ଏଠି ଉଦ୍ଧାର ନ କରି ରହିପାରୁନି । ତାଙ୍କର ମୋତେ ପ୍ରଥମ ଚିଠି—

ରାୟଗଡ଼, କୋରାପୁଟ,
ତା୧୪।୪।୪୧

ମମ ସ୍ନେହମଞ୍ଜୁ ଘାସଫୁଲ !

ତୁମର ସ୍ନେହବୋଳା ମନଭୁଲା ଲେଖାଟି ପଢ଼ି ମୁଁ ତ ଏକାବେଳକେ କବିର ରାଜ୍ୟରେ ଉପନୀତ ହେଲି । ତୁମର ରିକ୍ତତାଟି ପାଇଁ ମୁଁ ଦୁଃଖିତ, ତୁମର ରିକ୍ତତାଟି ହୁଏତ ତୁମକୁ ଶୂନ୍ୟର ପଥରେ ନ ନେଇ ପୂର୍ଣ୍ଣର ପଥରେ ନେଇଯିବ । ଦୁଃଖ କରିବ ନାହିଁ । ଜୀବନ ଏହିପରି ଚେତନା ପାଏ । ବେଦନାର ପଥ ଦେଇଗଲେ, ସେ ମୁକ୍ତି ଲଭ କରେ, ସ୍ୱର୍ଗ ଲଭ କରେ । ଋଷିଙ୍କର ପଥ ଛାଡ଼ି ମାନବ ଚରମ ସନ୍ଧାନ ପାଏ । ......... କିମଧିକଂ ?

ମମ ମାନସକୁଞ୍ଜେ ଥାଅ ତୁମ୍ଭେ
ଏକୋଇ ପ୍ରିୟ ଜନ ହେ
ଘାସଫୁଲ ମୁହିଁ ଦେଖି ନ ଥିଲି ଜୀବନେ
ଅନ୍ଧ ଆଜି ପାଇଲି ଲୋଚନ ଯେ
ତୁମ୍ଭେ ସତେ ମୋର ଘାସଫୁଲ ହେ ।

ତୁମର
ଲକ୍ଷ୍ମୀନାରାୟଣ ସାହୁ ।

× × ×

ଆଜି ସେହି ଘାସଫୁଲର ଦେବତାଙ୍କୁ ପ୍ରାଣର ସହସ୍ର ପ୍ରଣତି ଜଣାଉଛି ।

# ଆଚ୍ଛା ଲୋକ !

## ଅଧ୍ୟାପକ ଗୋପାଳଚନ୍ଦ୍ର ମିଶ୍ର

ଜୀବନରେ ଧନ ରତନଟା ଏମ୍. ଏ ପାସ୍ କରି ଯେଉଁ ଲୋକ ମରିବାବେଳେ ହାତରୁ କହି ଗ୍ରନ୍ଥ ନ ଥିଲା ପୁଣି ଶାସ୍ତ୍ର ସମ୍ବନ୍ଧୀୟ ନାନାଦି ସମସ୍ୟା ଆଲୋଚନା କରିବାପାଇଁ ଯେଉଁ ଲୋକ ଏକାଦି କ୍ରମେ ପନ୍ଦର କୋଡ଼ିଏ ମାଇଲ ଖାଲି ଚିପ ରାସ୍ତା ଭଙ୍ଗି ଯାଇ ପାରୁଥିଲା, ବୁଢ଼ା ନାହିଁ ପିଲାନାହିଁ ସମସ୍ତଙ୍କ ସଙ୍ଗେ ହୃଦୟ ଦେଇ ମିଶି ପାରୁଥିଲା, ବୁଢ଼ାଙ୍କ ସଙ୍ଗେ ଏକବାରେକେ ବୁଢ଼ା, ପିଲାଙ୍କ ସଙ୍ଗେ ଏକବାରେକେ ପିଲା—ଏପରି ଯେଉଁ ଲୋକ, ସେ ଲୋକକୁ କଣ କୁହାଯିବ ? ତାକୁ ପଣ୍ଡିତ ବୋଲି କହି ଭାରତୀୟ ଶାସ୍ତ୍ରୀୟ ପାଣ୍ଡିତ୍ୟର ବ୍ୟାଖ୍ୟାକଲେ କଣ କିଛି କ୍ଷତି ହେବ ? ସେ ଗୋଟାଏ ଅଦ୍ଭୁତ ଜୀବ, ଖରା ନାହିଁ କାକର ନାହିଁ ଦିନ ନାହିଁ । ପଢ଼ୁଛି ତ ପଢ଼ୁଛି, ରାସ୍ତାରେ ବୁଲୁଛି ତ ବୁଲୁଛି । କାହାକୁ କହିଲଣି "ଆଜି ତୁମ ଘରେ ମୁଁ ଖାଇବି" ଆଉ କାହାକୁ କହିଲଣି "ତୁମେ ମୋତେ ଟିକିଏ ଦର୍ଶନ ପଢ଼ାଇ ଦେବ ।" ଆଉ କେତେବେଳେ ଚଉଦିଆର ଝରିଖିଆ ଟାଙ୍ଗରା ଭୂମିରେ ବୁଲୁଛି । ମୁଣ୍ଡରେ ନଡ଼ା ବୋଝ—ଖରାଦିନିଆ ମହାନଦୀ ତଳର ବାଲି ରାସ୍ତା, ପୁଣି କେତେବେଳେ ହଜାର ହଜାର ଲୋକଙ୍କୁ ବୁଝାଇ କହୁଛି "ମୋତେ ଜାଣିଛ ମୁଁ କିଏ, ଜାତିରେ ମୁଁ ପାଣ ।" ସତେ ଯେମିତି ଏ ଅସ୍ପୃଶ୍ୟତାପ୍ରଥା ବିରୁଦ୍ଧ ଯଥେଷ୍ଟ ହେଲାନାହିଁ । ତେଣୁ ସେ ବହି ଲେଖିଲା, "ଲକ୍ଷ୍ମୀନାରାୟଣ ସାହୁ ଜାତିରେ ପାଣ" ଏମିତି ଯେଉଁଲୋକ, ତାକୁ ନ ଚିହ୍ନି କିଏ ଅଛି ? ଓଡ଼ିଶାର ପ୍ରତ୍ୟେକ ପଲ୍ଲୀରେ ସାତ ନଈନାଳ ପାହାଡ଼ ବନପ୍ରଦେଶ କନ୍ଧ, ସଅର ଆଦିବାସୀମାନଙ୍କର ପତର କୁଡ଼ିଆରେ ମଧ୍ୟ ତାଙ୍କର ପାଦ ପଡ଼ୁଥିଲା । ତାଙ୍କର ଲମ୍ବା ଲମ୍ବା ପାଦ ଦିଟା ଭଲ ତ ସେ ଭଲ । ପାଦକୁ ଯେତେ କଷ୍ଟ ଦିଆଯାଇ ପାରେ । ପାଦ ଦୁଇଟା ଉପରେ ଯେପରି ମନର ଏକଚାଟିଆ କାରବାର । ଆଉ ମନଟା ଅଗଣିତ ଜନତାର ଆପଦବିପଦ ବେଳାର ଗୋଟାଏ ଚଷଭୂଇଁ । ଧାନବେଙ୍ଗଲା ପଡ଼ିବାର ମେଣ୍ଟଣ୍ଡର ଯେଉଁ ଦୃଶ୍ୟ ତାଙ୍କର ଏହି ଦୀର୍ଘଜୀବନର ବିଭିନ୍ନ ବୟସ, ପାଠପଢ଼ା ତଥା ଦେଶସେବାର ସେହି ଅବସ୍ଥା ତାକୁ କେନ୍ଦ୍ର କରି ବରାବର ଅନେକ ଲୋକଙ୍କର ଭେଳା, ଅନେକ ଲୋକଙ୍କର ଚାହା ।

ଚବିଶ ଘଣ୍ଟିଆ ପଢ଼ୁଆ ଛାତ୍ରଙ୍କର ଜିଭ ଅଗରେ ତାର ପାଠ୍ୟପୁସ୍ତକର ତାଲିକା ଯେପରି ବସା ବାନ୍ଧିଥାଏ, ଠିକ୍ ତାଙ୍କ ତୁଣ୍ଡରେ ସେହିପରି ଗୋଟିଏ ପଦ ବସା ବାନ୍ଧି ରହିଥିଲା । ତାହା ହେଉଛି 'ଆହା' ପଦ । ଜୀବନଟା ଏକ ସଂଗ୍ରାମ । ତେଣୁ ସଂଗ୍ରାମର ପ୍ରସ୍ତୁତ ଏବଂ ସଂଗ୍ରାମର ସମ୍ମୁଖୀନତା ହିଁ ଜୀବନର କର୍ମମୟତାକୁ ବରାବର ଚେତନଶୀଳ କରି ରଖିଥାଏ ! ଗୁଣୀ ମହାପୁରୁଷମାନଙ୍କ ଜୀବନରେ ଏହା ହିଁ ଘଟେ । ଯେଉଁମାନେ ସଂଘର୍ଷର ବିରୁଦ୍ଧରେ ଗତି କରନ୍ତି ସେମାନେ ବାସ୍ତବିକ ଗତିଭ୍ରଷ୍ଟ ହୁଅନ୍ତି, ଯେଉଁମାନେ ସଂଘର୍ଷ ସହିତ ହାତମିଳାଇ ଚାଲନ୍ତି ସେମାନଙ୍କ ଜୀବନ ଯଥାର୍ଥତଃ ଏକ କଷଟି ପଥର ସଦୃଶ । ସେହି ପଥର ଯାହାକୁ ସ୍ପର୍ଶ କରେ ସେ ଅବଶ୍ୟ ମୂଲ୍ୟବାନ ଧାତୁରେ ପରିଣତ ହୁଏ । ତାର ଅନ୍ତରର ନିଦ୍ରିତ ଦେବତା ଜାଗରିତ ହୁଏ । ଲକ୍ଷ୍ମୀନାରାୟଣ ସାହୁ ହେଉଛନ୍ତି ସେହିପରି ଏକ ଜିନ୍ଦା କଷଟି ପଥର । ୧୮୯୦ ମସିହାରେ ବାଲେଶ୍ୱର ଜିଲ୍ଲାର ଏକ ନିଭୃତ ପଲ୍ଲୀ ଗ୍ରାମରେ ସାହୁଙ୍କର ଜନ୍ମ । ପ୍ରାଚୀନ ଶିକ୍ଷାପଦ୍ଧତିର ସମସ୍ତ ପରିବେଶ ମଧ୍ୟରେ ବାଲ୍ୟଶିକ୍ଷା ଏବଂ ଆଧୁନିକ ଶିକ୍ଷାପଦ୍ଧତିରେ ଉଚ୍ଚଶିକ୍ଷା ସେ ପ୍ରାପ୍ତ ହୋଇଥିଲେ । ବିଶ୍ୱବିଦ୍ୟାଳୟ ଉଚ୍ଚଶିକ୍ଷାର କୁହୁକ ତାଙ୍କ ଜୀବନରେ ଶୁଣାଇଥିଲା ସଂସ୍କାରର ପ୍ରତିଧ୍ୱନି । ସାହୁଙ୍କର ଜୀବନ ଏକ ମହା ବିଦ୍ୟାଳୟ ଏକ ମହା ଶିକ୍ଷାପୀଠ ରୂପେ ପ୍ରତୀତ ହୁଏ । ସେ ନିଜେ ଏକ ଶିକ୍ଷକ, ସେ ନିଜେ ଏକ ଧ୍ୟାନମଗ୍ନ ଶିଷ୍ୟ । ତାଙ୍କର ସାରା ଜୀବନ ପରୀକ୍ଷା ନିରୀକ୍ଷାର ଥିଲା ଏକ ଗବେଷଣାଗାର । ନିଜ ସେବା, ଘର ସେବା, ଗାଁଗଣ୍ଡାର ସେବା, ଶେଷରେ ମାନବସମାଜର ସେବା, ତାଙ୍କ ଜୀବନର ଥିଲା ମୂଳ ମନ୍ତ୍ର । ସେ କି କାମ କରୁଥିଲେ, କି କାମ କରି ନ ଥିଲେ, ଚାକିରି କରିଥିଲେ କି ନାହିଁ, ତାଙ୍କର ଯୋଗ୍ୟତା, ତାଙ୍କର ଦକ୍ଷତା, ତାଙ୍କର ଶକ୍ତି କେତେଦୂର ଥିଲା; କେତେଦୂର ନ ଥିଲା ଏ ସବୁ ତାଙ୍କ ଜୀବନରେ ବିଚାର କରିବା ନିରର୍ଥକ । କାରଣ ସାହୁଜୀ ଥିଲେ ମଣିଷଭଳି ମଣିଷଟାଏ । ଛାତ୍ରନେତା, ଯୁବକମାନଙ୍କର କର୍ଣ୍ଣଧାର, କୃଷି ମଜଦୁରମାନଙ୍କର ସଖା । ସାହିତ୍ୟ କ୍ଷେତ୍ରରେ ଅଗ୍ରଣୀ, ବନ୍ୟା ମରୁଡ଼ି ସମୟରେ ଗରିବ-

ମାନଙ୍କର ଏକମାତ୍ର ସହାୟକ । ପ୍ରାଚୀନ ଜୀର୍ଣ୍ଣସମାଜ ବକ୍ଷରେ ଏକ ବିଦ୍ରୋହୀ ସଂସ୍କାରକ, ସର୍ବୋପରି ଓଡ଼ିଶାର ଜାତୀୟଜୀବନର ଝଂଜା-ବିକ୍ଷୁବ୍ଧ ନଦୀରେ ଜଣେ ଦୁଃସାହସୀ ନାବିକ । ରାଜନୀତି କ୍ଷେତ୍ରରେ ମଧ୍ୟ ଜଣେ ଜଣାଶୁଣା କ୍ଷେତ୍ରୁଆଡ଼ । ସାହୁଙ୍କ ଜୀବନର ଭାବ କେଉଁଟା, ଅଭାବ କେଉଁଟା ତାହା ମାପ-ଚୁପ୍ କରି କହିବା ସହଜ ନୁହେଁ ।

ହିଁ ସେ ମଧ୍ୟ ଗୃହସ୍ଥ । ଅବଶ୍ୟ ସେ ବିବାହ କରିଥିଲେ ବୋଲି ଯେ ସେ ଗୃହସ୍ଥ, ତାହା ନୁହେଁ । ତାଙ୍କର ଶିରପ୍ରଶିରାରେ ବହୁମୁଖୀ ବ୍ୟକ୍ତିତ୍ୱର ଥିଲା ଉଚ୍ଛଳ ବନ୍ୟା । ଧର୍ମ, ଅର୍ଥ, କାମ ମୋକ୍ଷ ଏ ଚତୁର୍ବର୍ଗ ତାଙ୍କ ଜୀବନରେ ଥିଲା । ତାଙ୍କର ଘରଦ୍ୱାର ଥିଲା, କିନ୍ତୁ ସେ ଘରର କ୍ଷୁଦ୍ର ପ୍ରାଚୀର ମଧ୍ୟରେ ଆବଦ୍ଧ ନ ଥିଲେ । ତାଙ୍କର ଅର୍ଥକରୀ ଯୋଗ୍ୟତା ଥିଲା । କିନ୍ତୁ ତାଙ୍କ ନିକଟରେ ସେ ଯୋଗ୍ୟତାର ମୂଲ୍ୟ କିଛି ନ ଥିଲା । ତାଙ୍କ ଜୀବନରେ ସୁଯୋଗ ଥିଲା ବହୁତ, କିନ୍ତୁ ସେ ସୁଯୋଗ ପଛରେ ଧାଇଁବା ଲୋକ ନ ଥିଲେ । ଓଡ଼ିଶାର ଜାତୀୟ ଜୀବନର ଦୀର୍ଘ ପଚାଶ ବର୍ଷର ଇତିହାସରେ ଏକା ଲକ୍ଷ୍ମୀନାରାୟଣ ସାହୁଙ୍କର କ୍ରିୟାକଳାପର ଇତିହାସ ହିଁ ଉଲ୍ଲେଖ-ଯୋଗ୍ୟ ସ୍ଥାନ ଅଧିକାର କରିଥିଲା । ସମାଜସେବା କାର୍ଯ୍ୟରେ ଧୁରନ୍ଧର । କା'ର ଘର ଭାଙ୍ଗିଗଲା, ନଈବଢ଼ିରେ କେଉଁ ଗାଁ ଭାସିଗଲା, କେଉଁ ପିଲା ମଫସଲରୁ କୋଡ଼ିଏ ମାଇଲ ଚାଲିକରି ଆସିଛି ସହରକୁ ଟିଉସନ କରି ପାଠ ପଢ଼ିବା ପାଇଁ, କିଏ ନିରାଶ୍ରିତା, ସାହୁଜୀ ସମସ୍ତଙ୍କୁ ଆଶ୍ୱାସନା ଦେଇ ପାରୁଥିଲେ । ଅଣ୍ଟାଭିଡ଼ି ସମସ୍ତଙ୍କ ଦୁଃଖରେ ଡେଇଁ ପଡ଼ିବା ଥିଲା ତାଙ୍କର ପ୍ରକୃତିଗତ ବୈଶିଷ୍ଟ୍ୟ ।

ପ୍ରତିଦିନ ନୂଆ ନୂଆ ବନ୍ଧୁ ସୃଷ୍ଟି କରିବା ତାଙ୍କର ଥିଲା ଗୋଟିଏ ଖିଆଲ । ସେ ଖିଆଲ ମଧ୍ୟ ଅଦ୍ଭୁତ । ଶ୍ରେଷ୍ଠ ପିଲାଏ କବିତାଟିଏ ଲେଖି ନେଇ ହାଜର ହେଲେ, କବିତାଟିକୁ ସଂଶୋଧନ, ସଂସ୍କାର କରିବା ମଧ୍ୟ ସେ ନିଜର କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ଓଡ଼ିଶାର କେତେ କବି, ସାହିତ୍ୟିକ, କଳାକାର, ସଙ୍ଗୀତଜ୍ଞଙ୍କ ପିଠିରେ ତାଙ୍କ ହାତ ବାଜିଥିବ । ଲେଖନୀର ନିଶା, ତୁଳୀର ମାଦକତା ଏବଂ ବଂଶୀର ତରଳତା ସାହୁଜୀଙ୍କ ଜୀବନ୍ତ ବ୍ୟକ୍ତିତ୍ୱର ଗୋଟିଏ ଗୋଟିଏ ଦିଗ ଥିଲା । ପର ଘର ଛପର କରି, କାହା ପାଇଁ ମାଟି ହାଣି କାନ୍ଥ ତେରି, ଦେଇ କେଉଁଠି ସଭାରେ ଠିଆ ହୋଇ ବକ୍ତୃତା ଦେଇ ଆଲୋଚନାର ନୂଆ ବାଟ ଖୋଜିବା, ଆଉ ଏସବୁ କର୍ମବ୍ୟସ୍ତତା ମଧ୍ୟରେ ନିଜର ସରଳ ଜୀବନ ଏବଂ ଉଚ୍ଚ ଚିନ୍ତାର ପରମ୍ପରା ବଜାୟ ରଖିବା କମ୍ ସାଧନାର କଥା ନୁହେ । ଶିକ୍ଷକ ଭାବରେ ଜୀବନର ଯାତ୍ରା ଆରମ୍ଭ ହୋଇଗଲା । ଶିକ୍ଷକ ଭାବରେ ମଧ୍ୟ ସେ କମ ପ୍ରବୀଣ ନ ଥିଲେ । ପଢ଼ିବାରେ ଯେମିତି ପଢ଼େଇବାରେ ସେମିତି ସେ ଥିଲେ ଓସ୍ତାଦ୍ । ଦିନେ ସେ ତାଙ୍କର ଜଣେ ପ୍ରିୟ ଛାତ୍ର ନଟବରଙ୍କୁ ରାସ୍ତା ମଝିରେ ଦେଖିଲେ । ନଟବରଙ୍କର ଗୁରୁ ପ୍ରଶ୍ନର ପ୍ରତ୍ୟୁତ୍ତର ଦେଉ ଦେଉ ତାଗିଦ କଲେ "କିରେ ନଟବର, ତୁମେ ମରିନାହଁ, ତୁମେ ମରିଥିଲେ ମୁଁ ଖୁସୀ ହୋଇଥାନ୍ତି ।" ନଟବର ସାହୁଙ୍କଠାରୁ ଏମିତି ଠୋକ୍‌ଠାକ୍ କଥା ଶୁଣି ଅବାକ୍ ହେଲେ । ଶିଷ୍ୟଙ୍କର ଏପରି ମ୍ରିୟମାଣ ଅବସ୍ଥା ଦେଖି ସାର୍ ଆହୁରି ଟିକେ କଥାଟାକୁ ଫେଣେଇ ଫେଣେଇ କହିଥିଲେ—ଆହେ ନଟବର, ମୋ ହାତରେ ଯଦି ପାଠ ହେଲନି, ତେବେ ତୁ ଆଉ କାହିଁକି ମୋତେ ମୁହଁ ଦେଖାଇବୁ ପାଠ ଯେବେ ନ ହେଲା ଶାଠ କର ।" ସେହି ସାହୁଙ୍କ ପିଲାଦିନେ ଗୁଡ଼ି ଉଡ଼ାଉଥିଲେ । ଭାରି ସାହସୀ ଥିଲେ । କୌଣସି କଥାରେ ଖାତିର ନ ଥିଲା । ସିଏ ଥିଲେ ଜଣେ ବେପରୁଆ ଅଜୀବନ-ଖେଳାଳୀ ।

ଆଉ ଗୋଟିଏ ଅନୁଭୂତି ଏବଂ ଅଭିଜ୍ଞତାର କଥା । ସେତେବେଳେ ତେଲେଙ୍ଗା ବଜାରରେ ବାଉରୀବନ୍ଧୁ ପଣ୍ଡାଙ୍କ ହୋଟେଲ ଥାଏ । କେହି କେହି ତାକୁ ବାଉରୀ ନନା ହୋଟେଲ ବୋଲି କହନ୍ତି । ହଠାତ୍ ସାହୁଜୀ ଦିନେ ଗୋଟିଏ ମେଧାବୀ ଛାତ୍ରକୁ ଡ଼କାଇ ପଠାଇଲେ । ଛାତ୍ରଟି ଆସି ସାହୁଙ୍କୁ ନମସ୍କାର ଜଣାଇ ଠିଆ ହେଲା । ସାହୁଜୀ ପଚାରିଲେ, କିଏ ବାବୁ ତୁମର ଘର କେଉଁଠି, ତୁମେ ଏଠି କଟକରେ କେଉଁଠି ରହି ପଢ଼ୁଛ ।" ଛାତ୍ରଟି ସାହୁଙ୍କର ଏପରି ବାକ୍ୟବାଣରେ ଆଶଙ୍କିତ । "ମୋତେ ଆସି ବରାବର ଦେଖା କରିବ ।" ଏହି ଆଶ୍ୱାସନାରେ ଛାତ୍ରର ଛାତିରେ ଟିକିଏ ଦମ୍ଭ ପଶିଲା । ଏହା ପ୍ରାୟ ୧୯୩୬ ମସିହାର କଥା । ପୁଣି ୧୯୫୩ ମସିହାର କୌଣସି ଏକ ଅପରାହ୍ନରେ ସାହୁଜୀ ସେହି ପୂର୍ବ ସମୟର ଛାତ୍ରର ଘରେ ଯାଇ ବସି ପଚାରିବାର ଶୁଣାଗଲା । "ତୁମେ ଶ୍ରୀରାମ ମୋତେ ଇତିହାସ ପଢ଼ାଅ । ମୁଁ ଇତିହାସରେ ଏମ, ଏ, ପରୀକ୍ଷା ଦେବି ।" ସେତେବେଳକୁ ପରୀକ୍ଷା ଫିସ ଦାଖଲ କରି ସମସ୍ତ ମୋଟେ ଆଉ ୨୦ ଦିନ ମାତ୍ର ଥିଲା । ଅତି ଅଦ୍ଭୁତ ଚରିତ, ଅତି ଉଦ୍ଦାମ, ଦୁର୍ଦ୍ଦାନ୍ତ ପୁରୁଷ ଏବଂ କଠୋର କର୍ମଯୋଗୀ ।

ସାହିତ୍ୟ, ସଭା ସମିତି କଥା କାହିଁକି କହିବା ? ସେ ଯେତେବେଳେ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଥିଲେ, ଦିନ ଦିନ, ରାତି ରାତି ଧରି ସେଠାରେ ମିଟିଙ୍ଗ୍ କରାଉଥିଲେ ।

ଶେଷରେ ସଭ୍ୟମାନେ, ଶ୍ରୋତାମାନେ ବ୍ୟସ୍ତ ବିରକ୍ତ ହୋଇ ଯାଉଥିଲେ । ଗପ କରିବା, ଆଲୋଚନା କରିବା, କଥାରୁ ଖିଅ କାଢ଼ି ଯୁକ୍ତିତର୍କ କରିବା, ଶ୍ରୋତା ଏବଂ ବକ୍ତାମାନଙ୍କ ମନରେ ଚିନ୍ତା ଉଦ୍ରେକ କରାଇବା ଥିଲା ତାଙ୍କର ଚରମ କୃତିତ୍ୱ । ତାଙ୍କ ଜୀବଦ୍ଦଶାରେ ସେ ଶତାଧିକ ଅନୁଷ୍ଠାନର ସଭ୍ୟ କିମ୍ବା ସଭାପତି ହୋଇଥିବେ । ଆନ୍ତର୍ଜାତିକ ପି, ଇ, ଏନ, (Poet Editor Novelist ଅର୍ଥାତ୍ କବି ନାଟ୍ୟକାର, ସମ୍ପାଦକ, ପ୍ରାବନ୍ଧିକ, ଔପନ୍ୟାସିକ) ସଂସ୍ଥାଠାରୁ ଆରମ୍ଭ କରି, ଭାରତସେବକ ସମିତି, ଉତ୍କଳ ସାହିତ୍ୟ ସମାଜ, ସମବାୟ ସମିତି, ଆନ୍ତର୍ଜାତିକ ରେଡ଼କ୍ରସ, ବନ୍ୟା କମିଟି, ପଲ୍ଲୀ ଉନ୍ନୟନ କମିଟି, କେତେ ମଧ୍ୟ ଏବଂ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଏପରି ସାଧାରଣ ସରକାରୀ, ବେସରକାରୀ ଅନୁଷ୍ଠାନ ସମିତି ସଂସଦ ଏବଂ ବିଭିନ୍ନ କମିଟି, ଏପରି ତାଙ୍କ ଦିନପଞ୍ଜୀ ଯେବେ ଯାଞ୍ଚ କରାଯାଏ ତାହେଲେ ସେ କେହି ଲୋକ ବିସ୍ମିତ ହୋଇଯିବ ଯେ ଲକ୍ଷ୍ମୀନାରାୟଣ ସାହୁ କିପରି ଏତେ ପ୍ରକାର କାର୍ଯ୍ୟରେ ଯୋଗଦାନ କରି ପାରୁଥିଲେ । ତାଙ୍କ ଜୀବନରେ ପ୍ରତ୍ୟେକ ଦିନଟି କୌଣସି ନା କୌଣସି ସତ୍କାର୍ଯ୍ୟରେ ଜନସାଧାରଣଙ୍କ ସେବାରେ ହେଉ ବା ଚିନ୍ତାରେ ହେଉ ଅତିବାହିତ ହେଉଥିଲା । ସକାଳପହରୁ ଯେବେ ସବୁ ବାହାରଲେଣି, ହାତରେ ଝୁଲମୁଣି । ବୁଢ଼ା ବୟସରେ ସେ ହାତରେ ଖଣ୍ଡେ ବାଡ଼ି ମଧ୍ୟ ଧରୁଥିଲେ । ତାହେଲେ ଲକ୍ଷ୍ମୀନାରାୟଣ ସାହୁ ଚାଲିଛନ୍ତି । ସଭା ସମିତି ନ ହେଲେ ମଧ୍ୟ କାହା ଘରେ ଯାଇ ପହଞ୍ଚି ତାଙ୍କୁ କବିତା ଲେଖିବା ପାଇଁ କିମ୍ବା ସେବା କାର୍ଯ୍ୟ କରିବା ପାଇଁ ପ୍ରବର୍ତ୍ତାଇବେ । ଅନ୍ୟକୁ ଉତ୍ସାହିତ କରିବା, ଯାହାଠାରେ ଯାହା ଶକ୍ତି ଅଛି, ତାହାର ବିକାଶ ପାଇଁ ଚିନ୍ତା କରିବା, ବାଟ ବତେଇଦେବା ସାହୁଜୀଙ୍କ ଜୀବନର ପରମ ବ୍ରତ ଥିଲା । ସେଥିପାଇଁ ଅନେକ ବିଦ୍ୟାଳୟର ହାତଲେଖା ପତ୍ରିକାମାନଙ୍କରେ ଲକ୍ଷ୍ମୀନାରାୟଣଙ୍କ କବିତା ସ୍ଥାନ ପାଇଥାଏ । ଏକମାତ୍ର ଉଦ୍ଦେଶ୍ୟ ପିଲାମାନଙ୍କୁ ଲେଖିପଢ଼ି ଶିଖେଇବା । ଏପରିକି ବକ୍ତୃତା କିପରି ଦେବାକୁ ହେବ, ତାହା ମଧ୍ୟ ପିଲାଙ୍କୁ ସେ ଆନନ୍ଦରେ ଶିଖାଇଥିଲେ । ସେଥିରେ ତାଙ୍କର ମହା ଆନନ୍ଦ । ଲକ୍ଷ୍ମୀନାରାୟଣ ସାହୁ ବାସ୍ତବିକ ଜଣେ ମାନବପ୍ରେମୀ, ସେବକ, କଳାପ୍ରେମୀ, ସାହିତ୍ୟପ୍ରେମୀ ସାଧକ । ଶ୍ରେଷ୍ଠ କବିତାଠାରୁ ଜୈନଧର୍ମ, ଦଣ୍ଡନାଟ ସମ୍ପର୍କରେ ଗବେଷଣାତ୍ମକ ପ୍ରବନ୍ଧ ଲେଖିବା କେବଳ ତାଙ୍କର ବାହାଦୁରୀ ।

ତାଙ୍କ ଜୀବନରେ ସେ କଣ ଥିଲେ, କଣ ହୋଇ ପାରିଥିଲେ ଏବଂ ଆଉ କଣ ହୋଇପାରି ନ ଥିଲେ, ତାହାର ହିସାବ ଲେଖି ବସିଲେ ସେ ହିସାବ କଣ ସରିବ । ଜୀବନସାରା ଖଟି ଖଟି, ସେ ଦିନକ ପାଇଁ ମଧ୍ୟ କ୍ଳାନ୍ତ, ଦୁର୍ବଳତା ପ୍ରକାଶ କରି ନ ଥିଲେ । ସମ୍ପାଦକ କଥା କହିବା, ସେ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ସଂପାଦନା ସହିତ ଜଡ଼ିତ ଥିଲେ । କିନ୍ତୁ ଖୋଦ 'ସହକାର' ପତ୍ରିକାର ସେ ଥିଲେ ପ୍ରତିଷ୍ଠାତା, ସମ୍ପାଦକ । ଏହାଛଡ଼ା କେତେ ପତ୍ର-ପତ୍ରିକାର ପୃଷ୍ଠାରେ ତାଙ୍କ ଲେଖନୀର ମହତ୍ତ୍ୱ ଫୁଟି ଉଠିଥିବ । କେତେ ପୁସ୍ତକର ଅଗ୍ରଲେଖାରେ ତାଙ୍କର ବ୍ୟକ୍ତିତ୍ୱ ପ୍ରତିଫଳିତ ହୋଇଥିବ । ଲକ୍ଷ୍ମୀନାରାୟଣ ମଧ୍ୟ ଥିଲେ ଜଣେ ଆଶୁ କବି । କବି ଆସିଲା, କବି ଗଲା, କବି ହସିଲା, କବି ରୁଷିଲା, ଏପରି ମାନବିକ ପ୍ରତିକ୍ରିୟା ତାଙ୍କ ଲେଖନୀରେ ରୂପ ଗ୍ରହଣ କରିବା ପାଇଁ ଅଧିକ ସମୟ ଲାଗେ ନାହିଁ । ଶ୍ରେଷ୍ଠ ବଡ ଏପରି କେତେ ବହି ତାଙ୍କର ମୌଳିକ ପ୍ରତିଭାର ପରିଚୟ ଦିଏ । ସେ ଥିଲେ ପ୍ରଗତିପନ୍ଥୀ, ସେ ଥିଲେ ମାନବ ସମାଜର ହିତାକାଙ୍କ୍ଷୀ । ସାହିତ୍ୟ କ୍ଷେତ୍ରରେ ପୁନଶ୍ଚ ସେ ଚରମ ଗୌରବର ଅଧିକାରୀ ହୋଇଥିଲେ । କାରଣ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ପଦ ଅବଶ୍ୟ ଲୋକଦେଖାଣିଆ ବିଚାରରେ କମ ପଦବୀ ନୁହେ ।

ଲେଖକ ସାହୁଜୀଙ୍କର ବ୍ୟକ୍ତିଗତ ସଂସର୍ଗରେ ବହୁବାର ଆସିଥିଲା । ସେଥର ଦିଲ୍ଲୀଠାରେ ନିଖିଳ ଏସିଆ ଲେଖକ ସମ୍ମିଳନୀ ଅନୁଷ୍ଠିତ ହେଉଥିଲା । ତାହା ପ୍ରାୟ ୧୯୫୬ ମସିହା ଡିସେମ୍ବର ମାସର ଘଟଣା । ଦିଲ୍ଲୀର ବିଜ୍ଞାନ ଭବନର ଏକ କୋଠରୀରେ ଅନୁଷ୍ଠିତ ହେଉଥିବା ଏକ ଆଲୋଚନାରେ ସଭାପତିତ୍ୱ କରୁଥିଲେ ଲକ୍ଷ୍ମୀନାରାୟଣ ସାହୁ । ଆଲୋଚନା ଶେଷରେ ବାହାରକୁ ଚାଲିଆସି ସାହୁଙ୍କ ଆମ କେତେ ଜଣଙ୍କୁ ଲକ୍ଷ୍ୟ କରି ଯାହା କହିଥିଲେ, ତାହାର ଏବେ ମଧ୍ୟ ତାତ୍ପର୍ଯ୍ୟ ଅଛି । ସେ କହିଲେ "ଓଡ଼ିଶାରେ ଏତେ ବିଦ୍ୱେଷ କାହିଁକି, ଓଡ଼ିଆ ଲେଖକମାନଙ୍କ ମଧ୍ୟରେ ଓଡ଼ିଶାରେ ସୌହାର୍ଦ୍ଦ୍ୟ କାହିଁକି ନାହିଁ ।" ତାର ପ୍ରତ୍ୟୁତ୍ତର ଆଉ କଣ ଆଇପାରେ । ଏହି ଦେଶରେ ପରସ୍ପରକୁ ଘୃଣା କରିବା, ଆପଣା ଆପଣା ମଧ୍ୟରେ ତାମସା କରିବା ହିଁ 'ଆମର ସଂସ୍କୃତି' । ଆମ ଦେଶର ସାହିତ୍ୟରେ ରାଜନୀତି ଏବଂ ରାଜନୀତିରେ ମଧ୍ୟ ସାହିତ୍ୟ ଗୋଟାଏ କ୍ରୀଡ଼ା କନ୍ଦୁକ । ଆଉ ଥରେ ଦେଖା ହୋଇଥିଲେ ବମ୍ବେରେ । ସେ ଆନ୍ଧ୍ର ବମ୍ବେର ତତ୍କାଳୀନ ରାଜ୍ୟପାଳ ମହତାବଙ୍କର ଅତିଥି । ରାଜଭବନରେ ଅବସ୍ଥାନ ଲେଖକ ପୂନାର ଖାଧାଡ଼ିକ୍ସ ଇସ୍କୁଲରୁ ଫେରି ବମ୍ବେରେ

ପହଞ୍ଚି ଥାଏ । ବଡ଼ିସକାଳେ ମୋର ରହିବା କୋଠରୀର ଦ୍ୱାରରେ ଠକ୍ ଠକ୍ ଶୁଭିଲା । ମାଲବାର ହିଲ୍‌ର ଶୀତ ପବନ ତେଣେ ଭାରତ ମହାସାଗରର କଲଗର୍ଜନ, ଶୀତ ତେଜରେ ଯେପରି ବିଶ୍ୱ ବିସ୍ମୟ ଅଜାଡ଼ି ହୋଇ ପଡ଼ୁଥିଲା । ଏମିତି ପାରିପାର୍ଶ୍ୱିକ ଅବସ୍ଥାରେ ପାହାନ୍ତି ନିଦ ନ ଭାଙ୍ଗିବାର କଥା । ବାରମ୍ବାର ଠକ୍‌ଠକ୍ ଶବ୍ଦ ଶୁଣି ବଡ଼ ବିରକ୍ତିରେ ଉଠି ପଡ଼ିଲି । ଦ୍ୱାର ଖୋଲି ଦେଖେ ସେ ଆଉ କିଏ ନୁହନ୍ତି ସ୍ୱୟଂ ଲକ୍ଷ୍ମୀନାରାୟଣ ସାହୁ । ସେ କହିଲେ, "ତୁମକୁ ଗୋଟାଏ ନୂଆ ଜାଗାକୁ ନେବି । ଜଲ୍‌ଦି ପ୍ରସ୍ତୁତ ହୁଅ ।" ବାସ୍ତବିକ ସେ ଦିନଟି ମୋ ଜୀବନରେ ଗୋଟିଏ ସ୍ମରଣୀୟ ଦିନ । ସେହି ଜାଗାର ନାମ କୁବଳୟାନନ୍ଦ ଆଶ୍ରମ । ସେଠାରୁ ଯୋଗ ବ୍ୟାୟାମ ସାହାଯ୍ୟରେ ସମସ୍ତ ରୋଗର ଉପଶମ କରାଯିବାର ବ୍ୟବସ୍ଥା ଥିଲା । ଆଶ୍ରମ ଭିତରେ ପଶି ଯାହା ଦେଖିଲି, ତାହା ପ୍ରଥମେ ବିଶ୍ୱାସ କରିବାର ନୁହେଁ । କି ବୃଦ୍ଧ, କି ତରୁଣ, କି ତରୁଣୀ କି କିଶୋରୀ ବିଭିନ୍ନ ବୟସର ପୁଅ ଝିଅମାନେ ଯୋଗାସନ କରିବାର ଦୃଶ୍ୟ ପ୍ରକୃତରେ ବଡ଼ କୌତୂହଳ ସୃଷ୍ଟି କଲା । ନିଜେ ସାହୁଜୀ ମଧ୍ୟ ଗୋଟେ ଆସନରେ ବସି-ଗଲେ । ବମ୍ବେ ରାଜଭବନର ଅତିଥି ହେବା ମୂଳରେ ସାହୁଜୀଙ୍କର ଏହା ହିଁ ଥିଲା ପ୍ରଥମ ଉଦ୍ଦେଶ୍ୟ ଯେ ସେ ବମ୍ବେର ଏହି ଯୋଗାଶ୍ରମରେ ନିୟମିତ ଯୋଗ ଶିକ୍ଷା କରି ତାଙ୍କର ଶ୍ୱାସ ରୋଗରୁ ମୁକ୍ତ ହେବେ ।

ତାଙ୍କ ସହିତ ଆଉ ଥରେ ଦେଖା ହୋଇଥିଲା ଲେଖକର ନିଜ ଘରେ । ଝିପ୍ ଝିପ୍ ବର୍ଷା—ଠିକ ସମୟରେ ସାହୁଜୀ ଆସି ପହଞ୍ଚିଥିଲେ । ତାଙ୍କର ଖାଦ୍ୟପେୟ ନିହାତି ନିର୍ଦ୍ଦିଷ୍ଟ ଏବଂ ସୀମାବଦ୍ଧ । ସାହିତ୍ୟ, ରାଜନୀତି, ସମାଜସେବା ପ୍ରତ୍ୟେକ ବିଷୟରେ ତାଙ୍କର ଆଲୋଚନା ଏବଂ ଚିନ୍ତା ଅଗ୍ରଗାମୀ । କିନ୍ତୁ ଗୋଟାଏ ହେବାର ଅଭିମାନ ତାଙ୍କଠାରେ ନ ଥିଲା । ସେ ଓଡ଼ିଶା ବିଧାନସଭାର ସଂସ୍ଥାପକ ଥିଲେ । କିନ୍ତୁ ତାଙ୍କର ରାଜନୈତିକ ମୋହାନ୍ଧତା ନ ଥିଲା । ତାଙ୍କ ବହିପତ୍ର ଭଲ ତ ସେ ଭଲ ।

ସେ ଚାଲିଗଲେ, ଚାଲିଯିବାର କଥା । ଏ ସଂସାରକୁ ଯିଏ ଆସେ, ଆଗ ହେଉ, ପଛ ହେଉ ସେତ ଫେରିଯିବାର କଥା ; ସାହୁଜୀଙ୍କର ତିରୋଧାନ ଆଜି ସଂସାରର ସେହି ନିୟମର ଅନୁବର୍ତ୍ତୀ । ତେବେ ଗୁଣୀ ସହିତ ଗୁଣୀ, ମୂଳିଆ ସହିତ ମୂଳିଆ, ପଣ୍ଡିତ ସହିତ ପଣ୍ଡିତ, ଏମିତି ଭୂମିକାରେ କେବଳ ସାହୁଜୀ ଅଭିନୟ କରିପାରନ୍ତି । ତାଙ୍କର ଦୋଷ ତାଙ୍କ ମନର ଉତ୍ସାହକୁ ତାଙ୍କର ଭଙ୍ଗା ଦେହ ଆଦୌ ସହ୍ୟ କରି ପାରୁ ନ ଥିଲା ।

ଓଡ଼ିଶାରେ ତାଙ୍କର ବନ୍ଧୁମାନଙ୍କର ସଂଖ୍ୟା ଅଜସ୍ର । ସବୁ କ୍ଷେତ୍ରରେ ସେ ଆବଶ୍ୟକୀୟ କାର୍ଯ୍ୟ କରିଅଛନ୍ତି । ଇଦ୍‌ଗା ପଡ଼ିଆରେ ପ୍ରଥମେ ସାହୁଜୀ ମନିଷର ଘର ତୋଳିଥିଲେ । ଅର୍ଦ୍ଧରାତ୍ରିରେ ବର୍ଷା ନାହିଁ, ଝଡ଼ତୋଫାନ ନାହିଁ—ସାହୁଜୀ ତାଙ୍କର ଘରକୁ ଫେରୁଥିଲେ ।

କେତେ ଥର ସେ ତାଙ୍କର ପ୍ରିୟ ନଟବରଙ୍କୁ କହିବାର ଶୁଣାଯାଇଛି—"ନଟବର ତୁ ମୋତେ ଗୋଟିଏ ଡାକ୍ତର ଦେଖାଇଦେଲୁ ଦେ" ପୁଣି କହୁଥିଲେ "ନଟବର ତୁ ଶ୍ରୋତା, ମୁଁ ବକ୍ତା, ଆସ ଏଠି ସଭା କରିବା ।" ଆଉ ସେହି ଲୋକକୁ ଉତ୍କଳ ବିଶ୍ୱବିଦ୍ୟାଳୟ "ଡକ୍‌ଟରେଟ୍" ଉପାଧି ଏବଂ ଭାରତ ସରକାର "ପଦ୍ମଶ୍ରୀ" ଉପାଧିରେ ଭୂଷିତ କରିଥିଲେ । ସେ ହେଉଛନ୍ତି ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଯେଉଁ ମହାନଦୀର ଝିଙ୍ଗିଡ଼ିଆ ରାସ୍ତାରେ "ନଡ଼ା ବୋଝ" ମୁଣ୍ଡରେ ଧରି ଧାଉଁଥିଲେ ଏବଂ ବାସ୍ତବ କ୍ଷେତ୍ରରେ ନିଜ ହାତରେ କାମ କରି ଆଦର୍ଶର ପରୀକ୍ଷା କରୁଥିଲେ । ଯଥାର୍ଥରେ ସେ ଜଣେ ଯୋଗଜନ୍ମା ।

—

# ସାହୁଜୀଙ୍କ ସନ୍ଧାନରେ

## ଶ୍ରୀ ମଧୁ ମହାନ୍ତ

ଊନବିଂଶ ଶତକର ଶେଷ ଦଶନ୍ଧି ଥିଲା ଭାରତର ଏକ ଯୁଗ-ଜାଗରଣ । ୧୮୫୭ ସିପାହୀବିଦ୍ରୋହଠାରୁ ୧୮୮୪ କଂଗ୍ରେସର ଆରମ୍ଭ ପର୍ଯ୍ୟନ୍ତ ଯେଉଁ ଗୋଟାଏ ପ୍ରବଳ ଆତ୍ମ-ଜିଜ୍ଞାସା ଗତିଲା, ସେଇଥିରୁ ବାହାରିଲା ଏକ ନୂତନ ଶକ୍ତି—ଏକ ନବୀନ ଉଦ୍ୟମ । "Indians were going to do something" ··· 'ଭାରତବାସୀଏ କିଛି ଗୋଟାଏ କରିବାକୁ ବସିଛନ୍ତି' — ଏହା ହିଁ ଥିଲା, ଅକ୍‌ଟାଭିଅସ୍ ହ୍ୟୁମ'ଙ୍କ ବିଶ୍ଳେଷଣ ଓ ନିର୍ଦ୍ଧାରଣ । ଏଇଥିରୁ ଲାଟସାହେବଙ୍କୁ 'ହ୍ୟୁମ'ଙ୍କ ପରାମର୍ଶ—"a safety valve for the escape of great and growing forces" ··· "ବିରାଟ ଜାଗ୍ରତ ଶକ୍ତି ଲାଗି, ଗୋଟାଏ ନିରାପଦ ବାହାରିଯିବା ବାଟ" ଲେଡ଼ା—ଏହା ହିଁ ହେଲା କଂଗ୍ରେସର ଜନ୍ମ ଜାତକ !

ସିପାହୀ ବିଦ୍ରୋହ ଫଳରେ 'କଂପାନୀ' ଅମଳ ଜାଗାରେ 'ଇଂରେଜୀ ସାମ୍ରାଜ୍ୟ' ଆସିଲା । ୧୮୭୦ରେ 'ନୀଲ କୋଠି' ଧର୍ମଘଟ, ୧୮୬୧, ପ୍ରଥମ 'ଇଣ୍ଡିଆନ କାଉନସିଲ ଆକ୍‌ଟ' । ୧୮୬୭ରେ 'ହାଉସ ଟାଇଟଲସ୍ ଏକ୍‌ଟ', ୧୮୮୪ରେ 'ଇଲବର୍ଟ ବିଲ, ୧୮୯୭ରେ ମୋପଲା ଆକ୍ରମଣ, ସବୁ ଥିଲା ଜାଗ୍ରତ ଭାରତର, ଅନମନୀୟ ଅଭ୍ୟୁଥାନର, କ୍ରିୟା-ପ୍ରତିକ୍ରିୟା । ୧୭୧୭ର, 'ଫରମନ୍'ରେ, ଇଂରେଜୀ-ବାଣିଜ୍ୟ ପାଇଲା ଭାରତରେ ତାର ଅଧିକାର; ଆଉ ୧୭୫୭ର ପଲାସି ଯୁଦ୍ଧ ପରେ, କମ୍ପାନୀକୁ ଯେଉଁ 'ଦେଓ୍ୱାନି' ମିଳିଲା, ତାହା ହିଁ ହେଲା ଇଂରେଜଙ୍କ ଭାରତ-ଶାସନ-ପଟ୍ଟା । ଯେଉଁ ଇଂରେଜମାନେ ଭାରତର ରେଶମ ଓ କପା ତିଆରି ଜିନିଷକୁ ବିଲାତ ବଜାରକୁ ନ ଛାଡ଼ିବାକୁ ପାର୍ଲାମେଣ୍ଟରେ ଆଇନ କରିଥିଲେ, ତାଙ୍କରି ଆଜି 'ଭାରତୀୟ-ଟେକସ୍‌ଟାଇଲ' ସଙ୍ଗେ, ନିଜ ଘରେ ପ୍ରତିଯୋଗିତା କରିବାକୁ ପଡ଼ୁଛି । × ×

"I could not reconcile myself with the prevailing customs and beliefs and my heart was full of a new sense of revolt···"

"ମୁଁ ପ୍ରଚଳିତ ଆଚାର ଓ ବିଶ୍ୱାସ ସଙ୍ଗେ ନିଜକୁ ଖାପ ଖୁଆଇ ପାରିଲି ନାହିଁ । ଗୋଟାଏ ନୂଆ ବିଦ୍ରୋହ ବୁଦ୍ଧି ମୋ ଭିତରେ ପୂରି ରହିଥାଏ ।"

ଏ ସ୍ୱୀକାରୋକ୍ତି ମୌଲାନା ଆଜାଦଙ୍କର । ଆଜାଦ ସାହେବ ୧୮୮୮ ରେ ମକ୍‌କାରେ ଜନ୍ମ ହୋଇ ଦୁଇବର୍ଷବେଳୁ କଲି-କତାରେ ବଢ଼ିଥିଲେ । ବନ୍ଦୀ ଅରବିନ୍ଦଙ୍କଠାରୁ, ଖୁଦିରାମଙ୍କ ଫାଶୀଯାଏ, ତୁର୍କିରେ କାମାଲପାଶାଙ୍କଠାରୁ ଆୟାର୍ଲାଣ୍ଡର ଡ଼: ଭେଲେରାଙ୍କ ଯାଏ, ପୁଣି ଲଜପତ, ତିଲକ ବା ଚିତ୍ତରଂଜନ-ମୋତିଲାଲଙ୍କଠାରୁ ଗାନ୍ଧି-ଜିନ୍ନାଙ୍କ ଯାଏ, ଯାହାଙ୍କ ମନକୁ ପ୍ରଭାବିତ କରିଥିଲେ, ତାଙ୍କର ଯେ ଗୋଟାଏ ଧାରାବାହିକ ସଂକଟ ହେବ, ଗୋଟାଏ ବୈପ୍ଳବିକ ବୁଦ୍ଧି ବାହାରିବ, ଏହାହିଁ ହେଲା, ସମାଜ-ମନୋ-ବିଜ୍ଞାନର ନିର୍ଣ୍ଣୟ । ଲକ୍ଷ୍ମୀଛଡ଼ା ଲକ୍ଷ୍ମୀନାରାୟଣ ଥିଲେ, ଭାରତର ଏଇ ଜାଗର-ଯୁଗର ପ୍ରସୂତ ।

ସମାଜ ପରି, ସେଣ୍ଟିମେଣ୍ଟର ବି ଗୋଟାଏ ଐତିହାସିକ ଚଳଗତି ଅଛି । ଗୋଟାଏ ମନୋବୃତ୍ତି କିଛି କାଳ ପରେ, ଠିକ ତାର ବିରୋଧବୃତ୍ତିକୁ ପ୍ରଶ୍ରୟ ଦିଏ । ସମାଜ-ମାନସର ଏ ଗତି-ଚଳକୁ ଲକ୍ଷ୍ୟ ନ କଲେ, ବ୍ୟକ୍ତି-ଚରିତ ବିଚାର ବନ୍ଧ୍ୟା ହେବ । ଯେଉଁ ପ୍ରାଣୀର ଗର୍ଭାବାସ ଦଶମାସ, ତାର ଚିତ୍ତ-ବୃତ୍ତିର ବିବର୍ତ୍ତନ ସମୟ କେତେ ?

ଦୁଇ ଶହ ବର୍ଷ ତଳେ ୧୭୭୫ରେ ଇଷ୍ଟଇଣ୍ଡିଆ କମ୍ପାନୀର ଦୁର୍ନୀତି ସଂପର୍କରେ ପାର୍ଲାମେଣ୍ଟରେ ଯେଉଁ 'ରିପୋର୍ଟ' ପେଶ ହୋଇଥିଲା, ସେଥିରେ ପରିଷ୍କାର କୁହାଯାଇଥିଲା ଯେ

"Every one of them aspired to the rapid acquisition of lakhs."

'କମ୍ପାନୀର ପ୍ରତ୍ୟେକ ଲୋକ କେତେ ଶୀଘ୍ର କେତେ ଲକ୍ଷ ଟଙ୍କା ମାରିନେବ, ଏଇ କାମନା କରୁଥିଲେ ।'

ସୁପ୍ରୀମ କାଉନସିଲ ସଭ୍ୟ, ରିଚାର୍ଡ ବାରଓ୍ୱେଲଙ୍କ ଲୁଣ-ଗୋଲା କଳଂକ, 'ହେଶଷ୍ଟିଂସଙ୍କ ଦୁର୍ନୀତି-ବିଚାରରେ ଲାଟସାହେବଙ୍କ ହସ୍ତକ୍ଷେପ', 'ଏକୁଜା ଏମ୍ ପି'ଙ୍କ ବରଷକୁ ଅଶୀ ହଜାର ଦରମା ଉପରେ ବେନାମି କାନ୍‌ଟ୍ରାକ୍ଟ, ଏଣେ

ଅନ୍ଧୂଲ ବଜବଜ ପ୍ରତିଷ୍ଠାତା ରାମଗୃହଙ୍କ 'ରାଇଟର-ବିଲ୍ଡିଂଙ୍ଗରେ ମାସକୁ ଷାଠିଏ ଟଙ୍କା ଦରମା, ହେଷ୍ଟିଂସଙ୍କ ପାରସୀ-ମାଷ୍ଟର ରୂପେ ମହାରାଜା ନବକୃଷ୍ଣଙ୍କ ଦରମା ଷାଠିଏ, ପାଦ୍ରିଙ୍କ ଦରମା ବାରଶଟଙ୍କା ସାଙ୍ଗକୁ, ପାଖ କାରବାର ରୂପେ, ପାନ ତମାଖୁ 'ମନୋପଲି' । ୧୭୯୩ର ଗ୍ରର୍ଟର ଆଇନରେ, ବରଷକୁ ପାଞ୍ଚଶଟଙ୍କା ଉପର, କମ୍ପାନିର ସବୁ ଚାକର, ଗୋରା-ସାହେବଙ୍କ ଲାଗି 'ଶଜର୍ଭନ୍ସ' ।

ଏଇ ପଟ୍ଟଭୂମିରେ ସନ୍୧୯୧୧ରେ, ଗୋଖଲେଙ୍କ ଫ୍ରି କଂପଲସରି ଶିକ୍ଷାବିଲକୁ କାଉନସିଲରେ ଇଂରେଜ ସରକାରଙ୍କ ବିରୋଧ କିଏ କରିବ ! ଯୌବନରେ ଗୋଖଲେଙ୍କ ଏଇ ଭାରତଭବିଷ୍ୟ-ଯୋଜନା, ସାହୁଙ୍କୁ ଭାରତ-ସେବକସମିତି ଭିତରକୁ ଟାଣି ନେଇ ନ ଥିଲା ? ଦୁଇଶବର୍ଷ ତଳେ ୧୭୬୦ରେ ସୁରଟ ଫାକ୍‌ଟରିର ପ୍ରେସିଡେଣ୍ଟ 'ଏଲଗିଅର' ବୋମ୍ବେର ଗଭର୍ଣ୍ଣର ହୋଇ 'କୋର୍ଟ-ଅଫ-ଡାଇରେକ୍‌ଟର'ଙ୍କୁ ଲେଖିଲେ—

"In violent distempers, violent cures are only successful······A severe and vigorous policy would ensure the commercial stability of the company."

"ଯେସାକୁ ତେସା, ଜବରଦସ୍ତ ନୀତି ନୋହିଲେ କଂପାନିର ବାଣିଜ୍ୟ ସ୍ଥିର ନୁହେଁ । ଏଇ ବେପାରି ବୁଦ୍ଧିରୁ ଇଂରେଜଙ୍କୁ ଯେଉଁ ପାପ ଲାଗିଲା, ଯେଉଁ ମୋହ ପାଇଲା, ସେଥିରୁ ଭାରତୀୟ ସମାଜରେ ଯେଉଁ ନୈତିକ ବ୍ୟାଧିର ସଂକ୍ରମଣ ହେଲା, ଯେଉଁ ବିଷବୃକ୍ଷ-ବିଷ ପଶିଲା, ଯେଉଁ ଟଂକାର ଝଂକାର, ଅଟ୍ଟାଳିକାର ଅହଂକାର, ସଦାଗରକୁ କଦାକାର କଲା, ତାହା ହିଁ କରିଥିଲା ସାହୁଙ୍କୁ ସମସାମୟିକ ସମାଜଚଳନର ଏକ ଶାର୍ଦ୍ଦିବନ୍ତ ବ୍ୟତିକ୍ରମ ।

ନୋହିଲେ କିଏ କେବେ ସାହୁଙ୍କ ପରି ଇସ୍କୁଲର ମାଷ୍ଟର ଥାଇ, ସ୍ୱକୃତ ଆତ୍ମ-ରତିର, ଏପରି ସ୍ପଷ୍ଟ ସ୍ୱୀକୃତି ଲେଖି ଛପାଇବାକୁ ସାହସ କରିଛନ୍ତି ? ନିଜ ଛାତ୍ରାବସ୍ଥାରେ, ଏଇ ବନ୍ଧୁ ଶ୍ରେଣିକ ସୂତ୍ରରେ, ସାହୁଙ୍କଙ୍କ ସହିତ ମୋର ପ୍ରଥମ ପରିଚୟ । ସମାଜ-ଚେତନାରେ ଯାହା ଗୋଟାଏ ଅକ୍ଷମଣୀୟ ଅପରାଧ, ସେଇ ପାପକୁ ଏପରି ବିଚବଜାରରେ ବିଗ୍ର କରିବାର ସତ୍ସାହସ କେତେଜଣଙ୍କର ? ସତ୍ୟର ଏ ଅପରାଜେୟ ଉଦ୍ଧାର, ସାହୁଙ୍କଙ୍କ ଜୀବନକୁ ସେତିକି ଅମୂଲ୍ୟ କରିଛି ! ବିତ୍ତସଂପଦ ତାଙ୍କୁ ସେତିକି ଦୁଷ୍ପ୍ରାପ୍ୟ ହୋଇଛି । ଯିଏ ବିଡଲାଙ୍କ ଜୀବନୀ ଲେଖିବାରେ ପଦ୍ମହସ୍ତ, ସେ ବୃତ୍ତଙ୍କ ଜୀବନୀ ବେଳକୁ ହିସାବ ଖାତା ତଲବ କରିବେ । ନ ପାଇଲେ କହିବେ, ଯାହାର ପଇସାକର ସଂପତ୍ତି ନାହିଁ, ତା'ର ପୁଣି ସ୍ମୃତି ଗୋଟାଏ କ'ଣ ? ସାମଗ୍ରୀର ସମ୍ଭାର ବିନା ପୂଜାର ପୁଣ୍ୟ କାହିଁ ? × ×

## "ଜମ୍ବୁରସ, ଶର୍ଡା-ହିନ୍ଦ୍, ମଜୁନ ସଂକାନ୍ତ"

ପର ବିରୁଦ୍ଧରେ ନିଜକୁ ପ୍ରତିଷ୍ଠିତ କରିବା ହେଲା 'ପଲିଟିକାଲ ଉନ୍ନତିର ଭିତ୍ତି' । ଆଉ ପର ସହିତ ନିଜର ସଂବନ୍ଧ ବନ୍ଧନ ଓ ସାମଞ୍ଜସ୍ୟ ସ୍ଥାପନ ହେଲା, ଧର୍ମନୈତିକ ବା ସମାଜନୈତିକ ଭିତ୍ତି । ପରକୁ ଆପଣାର କରିବାକୁ ଗୋଟାଏ ପ୍ରତିଭା ଲୋଡ଼ା । ଅନ୍ୟର ମନ ମଧ୍ୟରେ ପ୍ରବେଶ କରିବା ଗୋଟାଏ ଇନ୍ଦ୍ରଜାଲ । ଏହା ହିଁ ହେଲା ପ୍ରେମର ପୁରୁଷାର୍ଥ, ପ୍ରତିଭାର ନିଜସ୍ୱ; ନୋହିଲେ, ଭାରତ ଶବର, ବ୍ୟାଧଙ୍କୁ, ଆଧ୍ୟାତ୍ମିକତାରେ ଅଭିଷିକ୍ତ କରିଥାନ୍ତା କିପରି ? ଭାରତସଭ୍ୟତାରେ କେହି କାହାର ପର ନୁହନ୍ତି । ଅନାର୍ଯ୍ୟ ବି ସେଠି ଆମନ୍ତ୍ରିତ । ଯାହାର ମନ୍ତ୍ର—ଶାନ୍ତି ଓ ମୈତ୍ରୀ, ଯାହାର ମୁକ୍ତି 'ପରିପୂର୍ଣ୍ଣ ପରିବେଶରେ, ସେ ଠେଲପେଲରେ ବଳକ୍ଷୟକର ବିରୋଧ ଅର୍ଜିବ କାହିଁ ? ବିପ୍ଳବ ପରି, ନିଜର ସନ୍ତତିଙ୍କୁ ଆପେ ଗ୍ରାସକରେ ? ନୋହିଲେ, ୧୭୬୦ର କମ୍ପାନୀଅମଳ କଳା ରୋଜଗାର ପୁଣି ଠିକ ଦୁଇଶ ବର୍ଷ ପରେ ୧୯୬୦ରେ ଲୋକଚରିତ୍ରରେ ଫୁଟି ବାହାରନ୍ତା କିପରି ?

କ୍ଷମତାର ମତ୍ତତା ବୋଲି ଗୋଟାଏ ପ୍ରଚଳିତ କଥା ଅଛି । ଇତିହାସରେ ଏହାର ଏକପ୍ରକାର ପ୍ରମାଣ ରହିଛି । ମାତ୍ର ଲୋକଚରିତ୍ର-ବିଜ୍ଞାନରେ, ଏହାର ସତ୍ୟତା ଅବିବାଦ ନୁହେଁ । କ୍ଷମତା କଣ ପ୍ରତ୍ୟେକଙ୍କୁ ପାଗଳ କରିଦେବ ? ଏପରି ଲୋକ କଣ ନାହାନ୍ତି, ଯିଏ କ୍ଷମତାକୁ ଆୟତ୍ତ କରିପାରିବେ ? ଅବଶ୍ୟ ମହାଦେବ ନୋହିଲେ ବିଷ ପିଇ ନୀଳକଣ୍ଠ ରୂପରେ ପୂଜା ପାଇବ, ଆଉ କେଉଁ ଦେବତା ? ସାହୁଙ୍କୁ ଏ ବିଷ ଘାରି ନଥିଲା ।

ସମାଜ-ମନର ଏ ଚକ, କଣ ଖାଲି ଭାରତରେ ଏପରି ଘୂରୁଛି ? ବିପ୍ଳବ କଣ ଏକା ଭାରତରେ ବିପ୍ଳବୀଙ୍କୁ ବିକୃତ କରିଛି ?

ତେବେ ବିପ୍ଳବର ପଚାଶ ବରଷ ନ ପୂରୁଣୁ ଗତ ପାଞ୍ଚତାରିଖ ନଭେମ୍ବର ୧୯୬୩ ଦିନ ରୁଷ ସୁପ୍ରୀମ କାଉନସିଲର ଏ ହୁକୁମନାମା କାହିଁ ?

"Courts are reminded of the need to wage a resolute struggle against theft of people's property."

"ଲୋକ-ସମ୍ପତ୍ତିର ଚୋର ବିରୁଦ୍ଧରେ ଜବର ଲଢ଼ାଇ ଚଳାଇବାକୁ ହେବ ।"

ସୋଭିଏଟ ସଂବିଧାନର ୧୩୧ ଦଫାରେ, ସମାଜ-ସମ୍ପତ୍ତିକୁ କେହି ଛୁଇଁ ପାରିବେ ନାହିଁ, .....ଯିଏ ତାକୁ ଚୋରାଇବ, ସେ ଲୋକ-ଶତ୍ରୁ । ପୁଣି ରୁଷ ଦଣ୍ଡବିଧି ଆଇନର ୯୩ ଦଫାରେ ଏପରି ଚୋରି ବା ଆତ୍ମସାତ୍ ଅପରାଧ ଲାଗି ଗୁଳି କରି ମାରି ଦେବାର ବ୍ୟବସ୍ଥା ।

ଏହା ସତ୍ତ୍ୱେ ୧୫।୯।୬୩ର 'ପ୍ରଭଦା'ରେ ରୁଷ "ଷ୍ଟେଟ ଫାର୍ମ-କନଷ୍ଟ୍ରକସନ-ଟ୍ରଷ୍ଟ ସଂପର୍କରେ—

"In almost every one—thieving and deception flourish. Alarm signals sent are swept under the carpet in Moscow."

"ପ୍ରାୟ ସବୁଠି ଚୋରି ଓ ଧପ୍‌ପାବାଜିର ବଢ଼ିମା । ଖବର ପଠାଇଲେ, ମସ୍କୋରେ କାର୍ପେଟ ତଳକୁ ଠେଲାଇ ଦିଆଯାଉଛି ।

୨୭।୫।୬୩ର 'ପ୍ରଭଦା'ରେ 'ଗୋଟାଏ ଚୋରଙ୍କ ସହର' ଗଢ଼ି ଉଠିଥିବା କଥା କୁହାଯାଇଛି । ପଶ୍ଚିମ ସାଇବେରିଆର 'ମେଟାଲର୍ଜିକାଲ ପ୍ଲାଣ୍ଟ' ଲାଗି ଉଦ୍ଦିଷ୍ଟ ସରଞ୍ଜାମ ଏଇ ଚୋର-ସହରରେ ପହଞ୍ଚି ଯାଉଛି । ୫୦ଟା ମଟରଯାନ, ୧୨ଟା ଟାୱାର କ୍ରେନ, ୧୧ଟା ଓଲଡ଼ିଂ ମେସିନ, ଟ୍ରେଞ୍ଚ-ଡ଼ିଗର ଓ୍ୱେଲଡ଼ର, ହିସାବରେ ନ ଚଢ଼ି ଉପରେ ଉପରେ ବିକି ହୋଇଯାଇଛି । ଏଠି ପ୍ରତ୍ୟେକ ଲୋକ ଅନ୍ୟକୁ ସାଧୁ ବୋଲି ସାର୍ଟିଫିକେଟ ଦେବାକୁ ଉଦ୍‌ଗ୍ରୀବ ।

ସମାଜ-ତନ୍ତ୍ରର ଏଇ ବିଡ଼ମ୍ବନାକୁ ଲକ୍ଷ୍ୟ କରି, 'ଇଜଭେସ୍ତିଆ' ୭।୬।୬୩ରେ ମନ୍ତବ୍ୟ କରିଛନ୍ତି—"ଜଣେ ସଭିଙ୍କ ଲାଗି, ପୁଣି ସଭିଏଁ ଜଣକ ଲାଗି—ଗୋଟାଏ ଠିକ ଓ ସଂଗତ ଆଇନ । ମାତ୍ର ଆମେ ଏହାକୁ ବିକୃତ କରୁଛେ । ପରସ୍ପର ଗେରେଣ୍ଟିରେ ଜଣେ ଚୋରି କରୁଥିଲେ ଆମେ ଆଖି ବୁଜି ଦେଉଛୁ । ବାଟ ଛାଡ଼ି ଦୂରେଇ ଯାଉଛୁ । ସାଥିକୁ ବିଚାର କରିବା ମୋ କାମ ନୁହେଁ । କାଲି ସେ ମୋ ପାପକୁ ଏଇପରି ଘୋଡ଼ାଇବ ।"

କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କମିଟିର ଗତ ଜୁନ ଅଧିବେଶନରେ 'ଇଲିଚେଭ୍'ଙ୍କ ରିପୋର୍ଟରେ ସରକାରୀ ସର୍ବସାଧାରଣ ଧନର ଏପରି ଅପହରଣର ବ୍ୟାପକତା ସଂପର୍କରେ ନାଗରିକଙ୍କ ଉଦାସୀନତାକୁ ଆକ୍ଷେପ କରାଯାଇଛି । ଆମର ଏଠି 'ସରକାରୀ ମାଲ, ଦରିଆମେ ଡାଲ' କଥାଟି କେବେଠୁଁ କିପରି ଚଳି ଆସିଛି ? ବଉଦ୍ଧମଙ୍କ ପଙ୍ଗତ ଆରମ୍ଭରେ ଗୋଟିଏ ଧ୍ୱନି ହୁଏ—'ମହାପ୍ରସାଦକୁ ଲୁଟ ପଡ଼ିଛି, ଲୁଟିଲେ ବାଲେ ଲୁଟିଟା ।" ଏଇଟା ହୁଏତ ବର୍ଣ୍ଣନ ପ୍ରକିୟାର ବ୍ୟଞ୍ଜନ । ଯିଏ ଦୁନିଆର ବଞ୍ଚିତ, ଶୋଷିତ ଜନତାଙ୍କ ଲାଗି ଇତିହାସର ଏତେ ବଡ଼ ବିପ୍ଳବ କଲେ, ସେଇ ପୁଣି କାହିଁକି ଏତେ ଶୀଘ୍ର କୋଠଧନକୁ ନିଜ ଅଣ୍ଟିରେ ପୂରାଇବାରେ ପ୍ରବୃତ୍ତ ହେଲେ ?

ଏଇ ପ୍ରବୃତ୍ତିର ପୃଷ୍ଠି ଓଲଟା! ପଟକୁ ବି ଦେଖାଯାଉ । ଚୀଇନାରେ ମାଞ୍ଚୁ ବଂଶର ଶାସନକାଳରେ ୧୬୪୪ଠାରୁ ୧୯୧୧ ଯାଏ ସରକାରୀ ଚାକିରିରେ ଘୁସ ନେଇ ଚୋରି କରି, ଉପରି ପଇସା ନ ରୋଜଗାର କରିବାଟା ଥିଲା ଅପାଂକ୍ତେୟ ।

"No official could possibly avoid giving, witnessing and even advising bribery in the form of gifts or service money as these were expected by all those above, below and around him from almost anyone having business with them."

(The witting of Hundred Flowers by Mu.-Fw. Shong, 1962.)

ଯିଏ ଚୋରି କରି ବଡ଼ଲୋକ ହୋଇ ନ ପାରିଲେ, ସମାଜରେ ତାଙ୍କର ସମ୍ମାନ ନାହିଁ । ଏହାର ପ୍ରତିକ୍ରିୟାରୁ ଚୀଇନାରେ ୧୯୪୯ର ବିପ୍ଳବ । କନଫିଉସିଅସଙ୍କ ନୀତି କଥା ସମାଜର ଏ ସଂକ୍ରମଣକୁ ସମ୍ଭାଳି ପାରିଲା ନାହିଁ ।

ଖାଲି ଭାରତ, ରୁଷ ବା ଚୀଇନାର ବିପ୍ଳବର ପୂର୍ବ ବା ପର ଘଟଣା କାହିଁକି, ଖ୍ରୀଷ୍ଟପୂର୍ବ ୧୨୧ରେ ସମୃଦ୍ଧ ରୋମରେ ବି ଏଇ ଏକ ଲୀଳା ।

"Elections could only be confirmed, by bribes to the Roman people. Any governor, had to make three fortunes out of his province—one to pay his election expenses, another to bribe his judges at his trial and the third to live in comfort for the rest of his life." (The Inheritors—by ritchie Colder, 1962.)

ଘୁସ ନ ଦେଲେ ଗ୍ରେମ ଲୋକେ ଭୋଟ ଦେଉ ନ ଥିଲେ। ତେଣୁ ଯିଏ ଭୋଟ ପାଇ, ଶାସକ ହେଉଥିଲେ ତାଙ୍କୁ ଠିକଗୁଣା ଆଦାୟ କରିବାକୁ ପଡ଼ୁଥିଲା—ନିଜ ନିର୍ବାଚନ ଖରଚ ଉଠାଇବା, ବିଗତ ବେଳର ଲୋକଙ୍କୁ ଘୁସ ଦେବା ଓ ବାକି ଜୀବନଟିକ ସ୍ୱଚ୍ଛନ୍ଦରେ ଚଳିବା। ସମାଜ ଚରିତ୍ରର ଏ ଗୋଟାଏ ବିଡ଼ମ୍ବନା, ଯେ ଯିଏ ଭୋଟଦେଲେ ମୁଠାଏ ମୋହ ସମ୍ଭାଳି ପାରନ୍ତି ନାହିଁ, ଭୋଟ ପାଇବା ଲୋକ, ତାଙ୍କର କୋଠଧନରୁ ଖ୍ରେଣ କରି ଖରଚର ଠିକଗୁଣା ଉଠାଇ ନିଏ। ଆଉ ମୂଳ ହେଲା ବ୍ୟକ୍ତି ଓ ସମାଜର ପରସ୍ପର ବିରୋଧ ସ୍ୱାର୍ଥ। ଏଇ ଚୋର, ମୋର ଭେଦକୁ ଚେତନାରେ ଛିଦ, ସ୍ୱାର୍ଥରେ ସଂହତ କରିବା ହେଲା ସମାଜବାଦ। ତେବେ ପ୍ରଶ୍ନ ହେଉଛି, ରୁଷ ପରି ରାଷ୍ଟ୍ରର ସମାଜବାଦରେ ଏ ବ୍ୟକ୍ତି-ସ୍ୱାର୍ଥ ପୂର୍ତ୍ତି ଫୁଟି ବାହାରୁଛି କିପରି ?

ମନୋବିଜ୍ଞାନର ଏ ଅନାହୂତ ପ୍ରବେଶ ପ୍ରସଙ୍ଗରେ ଶ୍ରୀମତୀ ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ଏକ ବିଶ୍ଳେଷଣ। ତାଙ୍କ ଝିଅ ଶ୍ରୀମତୀ ସାଇଗଲ ଏବର ଏକ ବହିରେ ଉଲ୍ଲେଖ କରିଛନ୍ତି।

...."The trouble with my generations in India, or atleast the sections of its that took part in the national struggle, was that it did not do so many things at the proper time.. Then there was a sort of austere morality governing our lives....It certainely was a badly needed discipline. But it produced a puritanism that was not altogether healthy. It was all right for Gandhiji, to take a vow and discipline himself in monastic ways. But it is not necessarily right for most people...Not being cast in his exceptional mould, and refusing to live like ordinary human beings, they became rather warped personalities." ("From Fear set free'—by Nayantara Suhgal, 1962).

ଗାନ୍ଧିଜୀଙ୍କ ପକ୍ଷରେ ଯେଉଁ ନୈଷ୍ଠିକ ସଂଯମ ସହଜ, ତା ସମସ୍ତଙ୍କ ପକ୍ଷରେ ସଂଭବ ନୁହେଁ; ତେଣୁ ଯେଉଁମାନେ ଜାତୀୟ-ସଂଗ୍ରାମରେ ଯୋଗ ଦେଇଥିଲେ ତାଙ୍କ ପକ୍ଷରେ ସାଧାରଣ ମାନବର ସାଧାରଣ ପ୍ରବୃତ୍ତିଗୁଡ଼ିକ ଗୋଟାଏ ବିକୃତ-ବ୍ୟକ୍ତିତ୍ୱ ଆକାର ଧାରଣ କରିଥିଲା। ଏହା ହିଁ ହେଲା ଆମ ଯୁଗର ଚରିତ୍ର-ସଂକଟର ହେତୁ। ଶ୍ରୀମତୀ ବିଜୟଲକ୍ଷ୍ମୀଙ୍କ ଏ ସତ୍ୟ-ସନ୍ଧାନ କାହାରିକୁ ଅପ୍ରିୟ ହେଲେ ବି ସମାଜ-ସ୍ୱାସ୍ଥ୍ୟ-ବିଜ୍ଞାନର ଗୋଟାଏ ସମ୍ଭାବ୍ୟ ଦିଗ୍-ଦର୍ଶନ।

ଜଣକୁ ଦେବତା କରି ଗଢ଼ିବାରେ ଗୁଣ୍ଟ ଚଲେ, ମତ୍ର ଚରିତ୍ର ଲେଖା ହୁଏ ନାହିଁ। ସାଧୁଜୀ ଯେଉଁ ସମାଜରେ ଉଦ୍ଭବ ହୋଇଥିଲେ ଓ ତାଙ୍କ ପରେ ଯେଉଁ ସମାଜରେ ସେ ଚରିତର ବ୍ୟାଖ୍ୟାନ ହେବ, ସେଇ ଦୁଇ ସମାଜର ପରିଚୟ ନ ଦେଲେ ସାଧୁଜୀଙ୍କ ଚରିତ୍ର-ବୈଶିଷ୍ଟ୍ୟ ଫୁଟିବ ନାହିଁ। ସମାଜ ହିଁ ମନୁଷ୍ୟ-ଜୀବନର କ୍ଷେତ୍ର। ପ୍ରତିବେଶ-ପ୍ରଭାବ କାରଣରୁ ହିଁ ମନୁଷ୍ୟ ବ୍ୟକ୍ତିବିଶେଷଙ୍କ ଚରିତ୍ର ଓ କୀର୍ତ୍ତିର ଧାରାକୁ ଆଗାମୀ ପୁରୁଷଙ୍କ ମନନ ଓ ଚିନ୍ତନ ଲାଗି ଜୀବନାଖ୍ୟାନ—ସ୍ମୃତିର ସାହାଯ୍ୟରେ। କୀର୍ତ୍ତିର ପାରଂପର୍ଯ୍ୟ ରକ୍ଷା। ଯେ କୀର୍ତ୍ତିମାନ ନୁହନ୍ତି, ତାଙ୍କର ଯଶ ଅସ୍ଥାୟୀ।

ପଙ୍କ ଅଚଳ ହେଲେ ନିନ୍ଦିତ। ଜୁଆରିଆ ଗଙ୍ଗା ପଂକିଳ ହେଲେ ବି ପୁଣ୍ୟସ୍ରୋତା। ଗୃହରେ ଅକର୍ମୀଙ୍କ ଲୋଭ। ନିଷ୍କର୍ମୀଙ୍କ ପ୍ରବରେ ଉସ୍ରାହ। ବାହାରେ ଝିଙ୍କ ଦିନେ ବି ଘରେ ଜନ୍ମ ଓ ମୃତ୍ୟୁ ହୁଏ। ନବାବଙ୍କ ନର୍ତ୍ତକୀଙ୍କ ଘୁଂଘୁର ଧ୍ୱନି ଭିତରେ ବି ଦେବାଳୟର ଘଣ୍ଟ—ଘଣ୍ଟା ବାଜଉଠେ। ସ୍ୱରାପାନର ଫେନୋଚ୍ଛ୍ୱାସରେ ଚକ୍ଷୁ ମୁଦ୍ରିତ ହେଲେ ବି ମନ୍ଦିରର ପ୍ରଦୀପ ଜଳୁଥାଏ। ଦେଶର ମୂଳ ମର୍ମ, ଦେହସ୍ଥିତ ପ୍ରାଣ—ପ୍ରତ୍ୟକ୍ଷମାନ ପାର୍ଥକ୍ୟ ଭିତରେ, ନିଗୁଢ଼ ଯୋଗ—ପ୍ରଭେଦ ଭିତରେ ଐକ୍ୟ। ଏ ସଂଜ୍ଞା, ଏ ଧାରଣା ଯେପରି ଦୁର୍ଗମ, ସେପରି ଦୁର୍ଲଭ।

ଧନ ବର ଲାଗି ଲକ୍ଷ୍ମୀଙ୍କ ଆରାଧନାରେ ଯିଏ ବ୍ୟସ୍ତ, କ୍ଷମତାର ସିଂହାସନ ଅଧିଷ୍ଠାତାଙ୍କୁ ଯିଏ ଲକ୍ଷେ ପଦ୍ମରେ ପୂଜା କରନ୍ତି, ସେଇ ପୁଣି ଲକ୍ଷ୍ମୀ ଛାଡ଼ିଗଲେ, କ୍ଷମତା ଚାଲିଗଲେ ଲାଞ୍ଛିତ ହୁଅନ୍ତି, ଧିକ୍କୃତ ହୁଅନ୍ତି। ବାପ ମା ଯାହାଙ୍କ ନାମ ଲକ୍ଷ୍ମୀନାରାୟଣ ବୋଲି ରଖିଥିଲେ, ସେଇ ହେଲେ ସ୍ୱଧର୍ମରେ ଲକ୍ଷ୍ମୀଛଡ଼ା। ନାମ ସଙ୍ଗେ କାମର ଏଇ ବିରୋଧ ହିଁ ସାଧୁଜୀଙ୍କ ସାଧନ। ସେ ଥିଲେ ଆନ୍ତରରେ 'ଅଘୋର, 'ସବାଗିଆ', ନିର୍ବିକାର। ବାହାରରେ 'ଅଲେଖୀ'—କୁମ୍ଭୀପାଟିଆ—ଅସ୍ପୃଶ୍ୟର ଉପାସକ।

In the second generation (1840-70) this renaissance, became a moral force, and set itself to reforming our society and religion."

Jadunath Sarkar

(in Fall of Moghul Vol. IV)

ସାହୁଜୀ ଥିଲେ ଏଇ ନବ ଯୁଗର ସନ୍ତାନ । କିଏ କହିବ ଅଧ୍ୟାପକ ଯଦୁନାଥଙ୍କ ଏଇ ଯୁଗ ସନ୍ଧାନ ସାହୁଜୀଙ୍କ ଠାରେ ଇତିହାସର ଗ୍ରନ୍ଥରୂପେ, କେତେଦୂର ପ୍ରତିଫଳିତ ? ସମସାମୟିକ ସମାଜ ଓ ଧର୍ମ ଧାରଣାର ସଂସ୍କରଣ ଥିଲା ସାହୁଜୀଙ୍କ ବ୍ୟକ୍ତି-ଜୀବନର ସାଧନା—ଆଙ୍କ ସ୍ୱରୂପ ସଂଜ୍ଞା । ସାହୁଜୀଙ୍କ ସାଥି ପଛରେ ଥିଲା ଗୋଟାଏ ନୀତିର ପ୍ରେରଣା, ପୁଣି ସେଥିରେ ଗୋଟାଏ ଅକପଟ ଅହଂକାର । ଚରୈବେତି—ଧର୍ମର ଗୋଟାଏ ସ୍ପନ୍ଦିତ ଜୀବନାଦର୍ଶ । ଗୋଟାଏ ବୌଦ୍ଧିକ ଅନମନୀୟତା ସାହୁଜୀଙ୍କ ଚରିତ୍ରକୁ ଯେତିକି କଠିନ କରିଛି, ସଂବେଦନଶୀଳ ହୃଦୟାବେଗରେ ସେତିକି କୋମଳ ହୋଇଛି । ପର ଦୁଃଖରେ ଯେଉଁ ଔଦାସୀନ୍ୟ, ଆଭିଜାତ୍ୟର ଲକ୍ଷଣ, ତା ଆତ୍ମୀୟତାରେ ମ୍ଳାନ । ଦାକ୍ଷିଣ୍ୟର ସିଂହାସନ ଉପରୁ ତାଚ୍ଛଲ୍ୟର ଯେଉଁ ଦାନ, ସେଥିରେ ଦାତାର ଯେତିକି ଦର୍ପ, ଗ୍ରହୀତାର ସେତିକି ଗ୍ଳାନି । ସାହୁଜୀଙ୍କ ପରଦୁଃଖ କାତରତାରେ ଥିଲା ଏକ ପ୍ରାଣବନ୍ତ ଉଦ୍‌ବେଗ, ମମତାର ଉତ୍ତେଜନା । ଅନାବିଳ ଆତ୍ମୀୟତାର ଏଇ ଚଳମାନ ଆତ୍ମପ୍ରତ୍ୟୟରେ ଉଡ଼ିଯାଉଥିଲା, ଭଲ—ମନ୍ଦ, ପାପ—ପୁଣ୍ୟର, ସମାଜ—ନିର୍ଦ୍ଦିଷ୍ଟ ସୀମାରେଖା । ଯୀଶୁଙ୍କ ମିତ୍ର, ମଦ୍ୟବିକ୍ରେତା କେତ୍ରଟ ସଙ୍ଗୀ ପାପିଷ୍ଠ ମ୍ୟାଗଡ଼ଲିନ । ଚୈତନ୍ୟଙ୍କ ଭକ୍ତ, ମଦୁଆ ଜଗାଇ, ମାଧାଇ । "ମେଚ୍ଛ ଚଣ୍ଡାଳ ଜାତି କାଳ, ତା ବଳେ କି ପ୍ରେମ ଦେବନା" ।—ଏଇଠି, ଚୈତନ୍ୟ ଧର୍ମର ପ୍ରାଣ—ବିନ୍ଦୁ । ସୁନାର ଗୌରାଙ୍ଗ ମୂର୍ତ୍ତିରେ ନୁହେଁ କି ଚିତ୍ତ ପ୍ରହରୀ କୀର୍ତ୍ତନରେ ନୁହେଁ । ସମାଜ ଯାହାଙ୍କୁ ନିଜର ଅବିବେକିତାରେ ପତିତ କରେ, ନିଜର ନିର୍ବୋଧତାରେ ଲାଞ୍ଛିତ କରେ, ସାହୁଜୀ ଥିଲେ ସେଇ ପତିତ, ଲାଞ୍ଛିତ ଅସ୍ପୃଶ୍ୟଙ୍କ, ଅଯାଚିତ ବନ୍ଧୁ, ଅସମୟର ସହାୟ । ପଥର ଖୋଳାଇ, ହାଟ ବସାଇ, ବାଟ ଫିଟାଇ—ଯିଏ ନିଜର ସ୍ମୃତିକୁ ବଞ୍ଚାଇ ରଖିବାକୁ ଚାହାଁନ୍ତି, ମରଣାନ୍ତେ କାହାର ସ୍ମୃତି କେତେଦିନ ରହେ । କେଉଁଦିନ କେଉଁ ହାଟ, ବାଟର ନାଁ ବଦଳିଯାଏ, ସେଥିର ଠିକଣା ନ ଥିଲେ ବି, ଅନ୍ତରରେ ଆତ୍ମୀୟତାର ଛାପ ସେ ସହଜରେ ଛାଡ଼େ ନାହିଁ, ଏ ସତ୍ୟର ପ୍ରମାଣ, ଆମେ ପ୍ରତ୍ୟେକେ, ଯିଏ ଜନ୍ମଠାରୁ ମୃତ୍ୟୁ ଯାଏ ଏଇ ମୋହର ମାରି ଚାଲୁ । ଯେଉଁ ସମାଜରେ ମନୁଷ୍ୟର ପ୍ରଥମ ପରିଚୟ ହେଲା ଯେ ମୁଁ ଅମୁକର ଅମୁକ—ସେଇଠି ପୁଣି ଅମୁକଙ୍କ ସଙ୍ଗେ ଅମୁକଙ୍କ ଜୟ—ପରାଜୟର ଦ୍ୱନ୍ଦ୍ୱ କିଆଁ ? ଏ ବନ୍ଧନ ସଙ୍ଗେ ଏ ବିଚ୍ଛେଦର ହେତୁ କ'ଣ ? ଯେଉଁ ସମାଜ, ପରକୁ ଆପଣାର ନ କଲେ ସଂଜ୍ଞାଶୂନ୍ୟ ହେବ, ସେଇ ସମାଜ ପୁଣି, ନିଜ ଲୋକଙ୍କୁ ଏପରି ପର କରିଦେବାରେ କେଉଁ ଯୌକ୍ତିକତା ? ଦୋଷର ବିଚାର ନା ଦୋଷୀର ବିଚାର ? ଅପରାଧ ନିନ୍ଦନୀୟ ନ ହେଲେ ଅପରାଧୀ ଦଣ୍ଡନୀୟ ହେବ କିଆଁ ? ପୁଣି ଏ ନିନ୍ଦା-ପ୍ରଶଂସାର ମାପକାଠି କିଏ ? ଯାହା ଦିନେ ଗଉଣୀ, ପାଚିଆ, ସେର, ଛଟାଙ୍କିରେ ଓଜନ ହେଉଥିଲା, ଆଜି ତାହା ମେଟ୍ରିକ ସଂଖ୍ୟାରେ ମପାହେଉଛି । ଟଙ୍କାକ ଆଜି ୬୪ ପଇସାରୁ ୧୦୦ ନୂଆପଇସା ପାଲଟିଯାଇଛି । ତେଣୁ ଆକାର, ଭଲ ମନ୍ଦର ତଉଲ କରି ସେଇ ପୁରୁଣା ବିଶା, ତରାଜୁରେ ଚଳିବ ? "ପ୍ରାଣୀର ଭଲ-ମନ୍ଦ ବାଣୀ, ମରଣ କାଳେ ତାହା ଜାଣି" । ଏ ଭଲ ମନ୍ଦ ଜାଣିବା, ନ ଜାଣିବାର ଦାୟିତ୍ୱ କାହାର ? ବଜାରର ଭଡ଼ାଟିଆ ବେଶ୍ୟା-ବାଳିଏ ବରର ଗୁଣ ବୃଦ୍ଧି ଝାଙ୍କର ତାଲ ପକାନ୍ତି ନାହିଁ । ବରଂ ଯେଉଁ ବାଳିକା, ବେଦୀ ପାଖରେ ଶଂଖଟିଏ ଫୁଙ୍କିଦିଏ, ସିଏ ସମ୍ପର୍କରେ ବରର ସ୍ୱଜନ କୁଳର ପରିଚୟରେ ଘନିଷ୍ଠ; ତେଣୁ ତାର ଫୁଙ୍କରେ ଥାଏ ଗୋଟାଏ ମୂଲ୍ୟ—ସ୍ତୁତି, ସେବାରେ ଥାଏ ଗୋଟାଏ ସ୍ୱାଦ—ପ୍ରୀତି । ବିବାହ ହୋଇଗଲେ ବେଶ୍ୟା-ବାଳିଏ କାମ ସାରି ପୋଷାକ ଉତାରି ଦିଅନ୍ତି । ବିବାହ ଠାରୁ ସ୍ୱଜନନ୍ତି ଯାଏ ବାଳିକା ବିଚାରୀ ଗାମୁଛା ଖଣ୍ଡେ କାନ୍ଧରେ ପକାଇ ତା କାମରେ ଲାଗିଥାଏ । ତେଣେ ବୋହୂ ସଂଗରେ ବାଳିକାଆଣୀର ବି ସେହିପରି ଗୋଟାଏ ସୌହାର୍ଦ୍ଦ୍ୟ ବନ୍ଧନ । ସାମନ୍ତବାଦର ଏ ଧୋବା, ଭଣ୍ଡାରୀ, ପୁରୋହିତ ସଂବନ୍ଧ ଆଜି 'ଲଣ୍ଡ୍ରି', 'ରେଜର' ଓ 'ରେଜିଷ୍ଟ୍ରାର' ଯୁଗରେ ଅଚଳ । ତେବେ ଯାନ୍ତ୍ରିକ ସଭ୍ୟତାର ଯେଉଁ ସମାଜ ଚେତନା, ବ୍ୟକ୍ତି ସଂଗେ ବ୍ୟକ୍ତିର ବନ୍ଧନକୁ ନୂଆ ପରିବେଶରେ ସୁନ୍ଦର ଓ ଶୁଭଂକର କରିବ, ତାର ବାଟ ନ ଫିଟାଇଲେ ପୁରୁଣା ପ୍ରତ୍ୟାଖ୍ୟାତ ସଂବଧ ସୂତ୍ରରେ ଆଉ ତାଳି ପକାଇ ଚଳିବ ନାହିଁ । ଏଥିରେ ଖାଲି ପରସ୍ପର ପ୍ରତି ଈର୍ଷା ଅବିଶ୍ୱାସ, ମିଥ୍ୟାଗର୍ବ ବଢ଼ୁଛି । ମାର୍କସଙ୍କ ଯୁଗରେ ସବୁକୁ ଚଳାଇବାକୁ ହେଲେ ଯେଉଁ ପାଳୁତା, ଉଗତା ଦରକାର, ତାର ଦିଅମଙ୍ଗଳା କରି ଯାଇଛନ୍ତି ୯ ଲକ୍ଷ୍ମୀନାରାୟଣ ସାହୁ ଓ ସେଇ କାଳର କତିପୟ ସମଧର୍ମୀ ।

ସମାଜ ଚରିତ୍ରର ଏ ଶତାବ୍ଦୀ ପରିକ୍ରମାକୁ ଠଉରି ନ କଲେ ପ୍ରତିକାର ବ୍ୟବସ୍ଥା ବ୍ୟର୍ଥ ହେବ—ହେଉଛି । ବ୍ୟାଧିର କାହିଁ ଯେଉଁଠି ବୃଦ୍ଧିରେ, ସେଠି ବାହାରର ଆଇନ ଅକାମୀ । କିଏ କାହା ବିରୁଦ୍ଧରେ ସାକ୍ଷୀ ଦେବ ? କିଏ ସାଧୁ, କିଏ ଚୋର, କିଏ ସତୀ, କିଏ ଅସତୀ ଆଉ ପରୀକ୍ଷା କରି, ପ୍ରମାଣ ହେବ କିପରି ? ଏଠି ତ ତୋ ପିଠି ଆଜି ମୁଁ କୁଣ୍ଡାଇ ଦେଇଥିଲେ

ମୋ ପିଠିକୁ ତୁ କାଲି କୁଣ୍ଢାଇ ଦେବୁ—ଏଇ ଚୁକ୍ତି । ସ୍ୱେରଙ୍କ ହାଁରେ ସାଧୁ ବୋଲି କଣ ଶୂଳୀରେ ଚଢ଼ିବ ?

ସାମାଜିକ ନ୍ୟାୟ କହିଲେ ଗୋଟାଏ ସଂଙ୍କୀର୍ଣ୍ଣ ଧାରଣା ମାତ୍ର ବୁଝାଏ । ଅନ୍ୟାୟର ବୋଧରେ ନ୍ୟାୟର ଚେତନା । ଅନ୍ୟାୟର ବିରୋଧରେ ନ୍ୟାୟର ସତ୍ୟ ପ୍ରତିଷ୍ଠା । ଯେଉଁ ସମାଜରେ ପତିତ, ଲାଞ୍ଛିତ, ବହିଷ୍କୃତଙ୍କ ପ୍ରତି ଯେତେ ସମବେଦନା, ସେ ସମାଜ ନ୍ୟାୟରେ ସେତେ ପ୍ରତିଷ୍ଠିତ, ଧର୍ମରେ ସେତେ ଅଧିଷ୍ଠିତ । ଯେଉଁଠି ସମାଜ ନାମରେ ଅସତ୍ୟକୁ ଜବରଦସ୍ତି ଘୋଡ଼ାଇ ଦିଆଯାଏ, କପଟତାକୁ କୃତାର୍ଥତା ନାମରେ ସମ୍ମାନିତ କରାହୁଏ, ସେଠି 'ସମୂଳେସ୍ତୁ ବିନଶ୍ୟତି' । ତେଣୁ ଶିବ ସଦାସ୍ମୃତ, ଶିବ "ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟ"···ଏଇଠି ତାର ସତ୍ୟ ସାର୍ଥକ ସମାଜ ସଂସ୍କାର ।

ଏତିକି ଲେଖୁ ଲେଖୁ 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ'ର, ( ୨୩.୧.୭୪ ) କଟେଣ୍ଟ ଖବରଟିଏ ପଡ଼ିଲି । ଷୋଳ ବର୍ଷର କୁମାରୀ ଉମା ଦେ ସାତ ମାସ ଗର୍ଭବତୀ । ପିତା ରେଳବାଇ ଚାକିରିଆ । ବାପ, ମା ଝିଅକୁ ସଂଗରେ ନେଇ କଲିକତା ଆସି ଗର୍ଭପାତ କରିବା ଲାଗି ଡାକ୍ତରଙ୍କ ସଂଗେ ଚୁକ୍ତି କଲେ । ଅପାଠୁଆ ଡାକ୍ତର ଗର୍ଭପାତ କରାଇଲେ; ମାତ୍ର ଉମାକୁ ଆରୋଗ୍ୟ କରିପାରିଲେ ନାହିଁ । ଫଳରେ ଉନ୍ନଦନ ରକ୍ତପାତରେ ଅବିବାହିତା ମାତା ମୃତ୍ୟୁ ବରଣ କଲା, ପିତା ମାତାଙ୍କୁ ସାମାଜିକ କବଳରୁ ଉଦ୍ଧାର କରିଗଲେ । ବର୍ତ୍ତମାନ ପୋଲିସ ପକ୍ଷରୁ ବାପ, ମା, ଡାକ୍ତର ତିନିଜଣଙ୍କ ବିରୁଦ୍ଧରେ ଉମାର ହତ୍ୟା ଅପରାଧରେ ମକଦ୍ଦମା ଚାଲିଛି ।

ସମାଜର ଗୋଟିଏ ବାସ୍ତବ ଘଟଣାର ଏଇ ସଂକ୍ଷିପ୍ତ ସଂବାଦଟିରେ ଯେଉଁ ମର୍ମନ୍ତୁଦ ଅବିବେଚନାର ସାକ୍ଷ୍ୟ, ତାର ବିରୁଦ୍ଧରେ ଥିଲା ସାଧୁଜୀଙ୍କ ପରି ଦରଦୀ, ମରମୀ ବ୍ୟକ୍ତିଙ୍କ ସଂଗ୍ରାମ । ଖାଲି ଆତ୍ମପ୍ରଚାରର ବାସନାରେ ବା ଆତ୍ମଗ୍ଲାନିର ପ୍ରାୟଶ୍ଚିତ୍ତରେ ଏ କହୁନଛି । ସାଧୁଜୀଙ୍କ ସାମୟିକ ପ୍ରଶଂସାପତ୍ର ନୁହେଁ, ଆମ ସମାଜ ବିଗ୍ରହର ଅକରୁଣ ଆତ୍ମପ୍ରସାଦ କପଟ ଯୁଗେ ଯୁଗେ ସାଧୁଜୀଙ୍କ ପରି ସତ୍ୟସନ୍ଧାନୀଙ୍କୁ ଉଦ୍‌ବୁଦ୍ଧ କରି ପଥିକୃତ କରିଛି, ସେତିକ ଏହାର ସାମଗ୍ରୀ । ଶିବ ସାମାଜିକ ବିଧିବିଧାନର ଅନୁଗତ ହୋଇ ସୁଜନ ବୋଲନ୍ତି, ଶିବ ସ୍ୱାର୍ଥସିଦ୍ଧି କାରଣ ବିନା କାହାର ଭଲ ମନରେ କାମି ଆଙ୍ଗୁଠିଟିଏ ବି ଉଠାନ୍ତି ନାହିଁ ସେଇମାନଙ୍କ ସଂଖ୍ୟା ସମାଜରେ ସର୍ବାଧିକ । ସେମାନଙ୍କୁ ସମାଜ ଗଡ଼ରେ ବସାଇ ଫୁଲମାଳ ପିନ୍ଧାଏ । ଆଉ ଶିବ ସମାଜର ସାମୂହିକ କଲ୍ୟାଣବୋଧରେ, ପ୍ରାଣର ସହଜ କରୁଣାଧର୍ମରେ ଏଇ ଚଲାବାଟ ଛାଡ଼ି ଅସମ୍ଭାରେ ବାଟ ଫିଟାଇବାକୁ ବାହାରନ୍ତି ସେଇ ଅସମନ୍ଧିଅଙ୍କୁ ସମାଜ ପଣ୍ଡାଏ ସହନ୍ତି ନାହିଁ । ଯୀଶୁଙ୍କଠାରୁ ଗାନ୍ଧିଜୀଙ୍କ ଯାଏ ଏଇ ଅସମନ୍ଧିଆ ପଣିଆରୁ 'ବଳି ପଡ଼ିଛନ୍ତି । ହେଦନ କେନେଡ଼ି ବ ଗୁଳି ସ୍ଫେଟରେ ଏଇ ଅସମ୍ଭ । ବାଟର କୋଣମାନ ଦେଇଛନ୍ତି । ଗାନ୍ଧିଜୀଙ୍କ ହତ୍ୟାରେ 'ବର୍ଣ୍ଣାଡ଼ଶ'ଙ୍କ ମନ୍ତବ୍ୟ ହେଲା·····"ଏତେ ଭଲ ଲୋକ ବଞ୍ଚିବ କଣ ? ଅସାଧାରଣଙ୍କୁ ସାଧାରଣ, ସହିବେ କେତେଦିନ ? ଧନ ଓ କ୍ଷମତାର ଉପାସକ ହୋଇ କଣ କେବେ କହି ପାରିବ—"Bono Probari malo, quam multis malis—" "ବରଂ ଜଣେ ଭଲ ଲୋକଙ୍କୁ ଖୁସି କରିବ, ବହୁ ମନ୍ଦଙ୍କ ମନ ରଖିପାରିବ ନାହିଁ ।" ମାତ୍ର ଆତ୍ମପ୍ରତ୍ୟୟର ଏଇ ସ୍ପର୍ଦ୍ଧା ହିଁ ଥିଲା ସାଧୁଜୀଙ୍କ ସଂପଦ । ପ୍ରେୟକୁ ଛାଡ଼ି ଶ୍ରେୟର ସନ୍ଧାନ ହିଁ ଥିଲା ସାଧୁଜୀଙ୍କ ଅନନ୍ୟତା······ଏହା ହିଁ ଥିଲା ତାଙ୍କ ବହୁ ସାମାଜିକ ଅକୃତାର୍ଥତା ଭିତରେ ଆତ୍ମିକ ଚରିତାର୍ଥତା ।"

ନୋହିଲେ ଦଶବର୍ଷ ତଳେ ଦିନେ ସାଧୁଜୀ ଏହିପରି ଗୋଟିଏ ଶିକ୍ଷିତା ଗର୍ଭବତୀ କୁମାରୀକୁ ଆଣି ନିଜ ନାମ ଲେଖାଇ ହାସପାତାଲରେ ରଖାଇ ପ୍ରସବ କରାଇ ନିଜ ଘରେ ଅବିବାହିତା ମାତା ଓ ତାର ସନ୍ତାନକୁ ରଖି ପୁଷ୍ଟ କରି ସନ୍ତାନଟିର ଲାଳନପାଳନର ସମସ୍ତ ଦାୟିତ୍ୱ ନିଜେ ନେଇ ମାତାକୁ ସାମାଜିକ କଳଙ୍କ ଓ ଆଇନ ଅପରାଧରୁ ମୁକ୍ତ କରି ପରିବାରର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖି ସମାଜର ସାକ୍ଷାତ ଅହଂଗ୍ରହର ଏପରି ବିଗ୍ରହବନ୍ତ ପ୍ରାୟଶ୍ଚିତ୍ତ କଏ କେଉଁଠି କରିଛି ? ଏ କଣ ବ୍ୟକ୍ତିସ୍ୱରର ପ୍ରଶ୍ରୟ ନା ସମାଜ-ସତ୍ୟର ସାଧୁ-ସଂସ୍କାର ? ସାବରମତୀ ଆଶ୍ରମ ବାଡ଼ରୁ ଗାନ୍ଧିଜୀଙ୍କ ସଦ୍ୟୋଜାତ ଶିଶୁ ଉଦ୍ଧାର କେଉଁ ନୀତିର ପ୍ରତିଷ୍ଠାରେ ? ଏଠି ସମାଜ ନିର୍ଦ୍ଦେଶ ମାନବିକତାର ଆଦେଶ ନିକଟରେ ପରାଜିତ । ଆଗେ ମଣିଷ, ତା ପରେ ସମାଜ । ଆଜ୍ଞା ଓ ଅବଜ୍ଞାର ବିଗ୍ରହ ଏଇଠି । ଦୁର୍ବଳ ସବୁବେଳେ ଭୟରେ ବାଧ୍ୟ, ବଳିଷ୍ଠ ହିଁ ବିଦ୍ରୋହୀ । ଉପରୋକ୍ତ ଘଟଣାଟିର ସାକ୍ଷୀ ଓ ଆସାମୀ ସଭିଏ ଏବେ ବି ସଜୀବ ଓ ସମ୍ମାନିତ । ସାଧୁଜୀଙ୍କ ସ୍ମୃତି ଆଙ୍କର ଆତ୍ମାରେ ଅମର—ସାଧୁଜୀଙ୍କ କୀର୍ତ୍ତି ଆଙ୍କର ମର୍ମରେ ସ୍ୱାକ୍ଷର ।

"They measure the man, not hi celebrity, we worship him who is some one."

—Francois Mauriac

ଆମେ ଆସ୍ଥାନକୁ ପୂଜା କରୁ, ମନୁଷ୍ୟତାକୁ ମାପୁନା; ପ୍ରାପ୍ତିକୁ ପ୍ରଶଂସା କରୁ, ସମାଜ ସଭକରେ ପ୍ରଶଂସା କରେ, ଖିଆଲରେ ତାରିଫ କରେ, ନିଶାରେ ବାହ୍ୱାବା କୁହେ । ଏଥିରେ ଭାବର ଉନ୍ମେଷ ନ ଥାଏ, ଚରିତ୍ରର ଉତ୍କର୍ଷ ହୁଏ ନାହିଁ । 'ହିଟଲର' ବା 'ଷ୍ଟାଲିନ' କମ ପ୍ରଶଂସା ପାଇ ନାହାନ୍ତି । ମାତ୍ର ବିସ୍ମୃତିର ଅନ୍ଧକୂପରୁ ଏ କେତେ ଜନ କାହା ହୃଦୟ ମନ୍ଦିରରେ ବଞ୍ଚିବେ ?

"Who so would be a man must be a non-conformist."

ଯିଏ ମଣିଷ ହେବ, ସିଏ ଅମଡ଼ାରେ ଚାଲିବ— 'ଇମରସନ'ଙ୍କ ଏ ସତ୍ୟ ଯୁଗେ ଯୁଗେ ସଭ୍ୟତାର ଅଗ୍ରଗାମୀଙ୍କ ଚରିତରେ ସ୍ୱୀକୃତ । ବ୍ୟକ୍ତି ସଙ୍ଗେ ବ୍ୟକ୍ତିର ସାଯୁଜ୍ୟ ବନ୍ଧନରେ ସାହୁଙ୍କ ଥିଲେ ତତ୍କାଳର ଏକ ବିରାଟ ବ୍ୟତିକ୍ରମ । ଅହଂକାର ବ୍ୟତିକ୍ରମ, କାଳଜୟୀ ବୀର । ଏହା ହିଁ ମୋର ସ୍ୱର୍ଗତ ସାହୁଙ୍କ ସ୍ମୃତିର ସନ୍ଧାନ······ଅମୃତର ପୁତ୍ରଙ୍କୁ ଅମରତ୍ୱର ଆମନ୍ତ୍ରଣ··· 'ଅଭିଃ' ।

---

"କେଉଁ ଦେଶୁ ପରୀ ଆସିଅଛୁ ଉଡ଼ି
କେଉଁ ଦେଶେ ଯିବ କହ,
ଦେଶେ ଦେଶେ ବୁଲି ଦେଖିଲ ଅନେକ
ନିଜ ଘର କଥା କହ ।"

—ଲକ୍ଷ୍ମୀନାରାୟଣ

# ସ୍ମୃତି-ଶ୍ରଦ୍ଧାଞ୍ଜଳି

## ଶ୍ରୀ ଭଗବାନ ପତି

ଦେଖୁଁ ଦେଖୁଁ ଇତିମଧ୍ୟରେ ଗୋଟିଏ ବର୍ଷ ବିତିଗଲଣି ଏବଂ ଭାରତ ସେବକ ସ୍ୱର୍ଗତ ଲକ୍ଷ୍ମୀନାରାୟଣଙ୍କ ମହାପ୍ରୟାଣର ଗୋଟିଏ ବର୍ଷ ପୂର୍ଣ୍ଣ ହେଲଣି । ଜୀବନର ଦୀର୍ଘ ୭୩ଟି ବର୍ଷ ମଧ୍ୟରୁ ପ୍ରଥମ ୧୫।୨୦ ବର୍ଷକୁ ଛାଡ଼ି ଦେଲେ ଅନ୍ତତଃ ଅବଶିଷ୍ଟ ଅର୍ଦ୍ଧଶତାବ୍ଦୀ କାଳ ତାଙ୍କ ସଙ୍ଗେ କେହି ସଂପର୍କ ବା ପରିଚୟ ପ୍ରତିଷ୍ଠା କରୁ ବା ନ କରୁ, ସେ ଘରେ ଘରେ, ଗ୍ରାମେ ଗ୍ରାମେ ଓ ସହରେ ସହରେ ବୁଲି ସମସ୍ତଙ୍କ ସଙ୍ଗେ ସଂପର୍କ ଓ ପରିଚୟ ପ୍ରତିଷ୍ଠା କରିଥିଲେ । ଆଜି ତାଙ୍କର ମହାପ୍ରୟାଣର ପ୍ରଥମ ବାର୍ଷିକ ଶ୍ରାଦ୍ଧବାସରରେ ତାଙ୍କ ସମ୍ପର୍କରେ ଆସିଥିବା ଓ ତାଙ୍କ ମଧୁର ସାନ୍ନିଧ୍ୟଲାଭ କରୁଥିବା ଅଗଣିତ ଜନମାନସରେ ତାଙ୍କର ଅଳସ ସ୍ମୃତି ଯେ କେତେ ଲୁଚକାଳି ଖେଳୁଥିବ, ତାହା କୁହାଯାଇ ପାରିବ ନାହିଁ । ମୋ ମନରେ ତାଙ୍କ ସ୍ମୃତିର ସେହି ଲୁଚକାଳି ଖେଳର ଚିତ୍ର ମୋତେ ୩୬।୩୭ ବର୍ଷ ତଳକୁ ଫେରାଇ ନେଇ ଆଜି ଏଭଳି ଏକ ନିବିଡ ସାନ୍ନିଧ୍ୟ ଓ ସାହଚର୍ଯ୍ୟର ଅପୂର୍ବ ସୁଖ ଦେଉଛି ଯେ ସେଥିରେ ମୁଁ ମୁହ୍ୟମାନ ହୋଇ ଉଠୁଛି ।

ବଜ୍ରର ଗର୍ଜନ, ବିଜୁଳିର ଚମକ, ସାଗରର ଗାମ୍ଭୀର୍ଯ୍ୟ, ବାତ୍ୟାର ଆକୁଳତା, ପ୍ରଭଞ୍ଜନର ବେଗ, ମଳୟର ମଧୁର ସ୍ପର୍ଶ ପୁଣି ଲକ୍ଷ୍ୟ ସାଧନ ପାଇଁ ବକ ପରି ଧ୍ୟାନ ଶ୍ୱାନ ପରି ନିଦ୍ରା ଏବଂ ଅତନ୍ଦ୍ରର ହେବାବେଳେ ଅଶ୍ୱପରି ପ୍ରହରୀ ଚିତ୍ତ---ସତେ ଯେପରି ଏ ସବୁ ଲକ୍ଷ୍ମୀନାରାୟଣଙ୍କ ଜୀବନକୁ ବିରୋଧାଭାସରେ ଏକ ମହା ମିଳନ ଭୂମିରେ ପରିଣତ କରିଥିଲା । ୧୯୨୭-୨୮ରେ ଯେତେବେଳେ ତାଙ୍କ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା "ସହକାର"ର ସଂପାଦନା ଦାୟିତ୍ୱ ନେଇ ମୁଁ ତାଙ୍କ ସଙ୍କବାଚଭୁକ୍ତ ହୁଏ, ସେତେବେଳେ ପ୍ରଥମ ଥର ତାଙ୍କଠାରେ ଏହି ସବୁ ବିରୋଧାଭାସର ବିକାଶରେ ଯେଉଁ ବିସ୍ମୟ ଅନୁଭବ କରିଥିଲି, ସେଗୁଡ଼ିକୁ ନିକଟରେ ଦେଖି ଓ ମର୍ମେ ମର୍ମେ ଅନୁଭବ କଲି ଯେ, ଏ ବିରୋଧାଭାସରେ କିଛି ଅସାମଞ୍ଜସ୍ୟ ନାହିଁ—ଗୋଟିଏ ଲକ୍ଷ୍ୟ ହାସଲ ପାଇଁ ତାଙ୍କ ଜୀବନର କର୍ମପ୍ରବଣତା ଏକ ସମୟରେ ସତେ ଯେପରି ବହୁ ଧାରରେ ବହିର୍ମୁଖୀ ହୋଇ ମହା ସାଗର ଆଡ଼କୁ ଧାଉଁଥିଲା । ସାଧାରଣତଃ ଏଭଳି ବହୁ ଧାରା ଓ ବହିର୍ମୁଖୀନତା ଦେଖାଯାଏ ନାହିଁ ବୋଲି ଯେଉଁମାନେ ତାଙ୍କଠାରେ ବିରୋଧାଭାସର ଏଭଳି ଅପୂର୍ବ ସମନ୍ୱୟ ଦେଖୁଥିଲେ । ସେ ସେଥିରେ ବିସ୍ମିତ ହେଉଥିଲେ ଏବଂ କୌତୂହଳବୋଧରେ ତାଙ୍କ ପ୍ରତି ଆକୃଷ୍ଟ ହେଉଥିଲେ ।

ବାଲେଶ୍ୱର ଜିଲାରେ ଯେଉଁ ପରିବାରରେ ତାଙ୍କର ଜନ୍ମ ହୋଇଥିଲା, ସମାଜରେ ସେ ପରିବାରର ହୁଏତ ପ୍ରତିଷ୍ଠା ନ ଥିଲା ଏବଂ ଯେଉଁ କୁଳରେ ସେ ଜନ୍ମଲାଭ କରିଥିଲେ, ସମାଜରେ ସେ କୁଳ ହୁଏତ ସେଭଳି ଅଗ୍ରଗାମୀ ନ ଥିଲା । ପୁଣି ପାଟକ କୁଳର ନାନା ଆଞ୍ଚଳିକ ବାହ୍ୟାଡମ୍ବରରେ ତାଙ୍କ କୁଳ ନିତାନ୍ତ ପ୍ରପୀଡ଼ିତ ଥିଲା । ଏହି ପରିବେଶ ମଧ୍ୟରେ ବାପ ମାଆଙ୍କର ଏକମାତ୍ର ପୁତ୍ରରୂପେ ସେ ଯେତେବେଳେ ଶିକ୍ଷାଦୀକ୍ଷା ଆରମ୍ଭ କଲେ, ସେତେବେଳେ ଅତି ବାଲ୍ୟବୟସରୁ ତାଙ୍କ ଭିତରେ ଲୁଚି ରହିଥିବା ଭବିଷ୍ୟତର କର୍ମପ୍ରାଣତା ତାଙ୍କୁ ଅତି ଚଞ୍ଚଳ ଓ ମୁଖର କରିଥିଲା । ନିଜର ପରିବାର ତଥା କୁଳ ଏବଂ ସମାଜର ବହୁ ଆଚାର ବିଚାର ଓ ଚଳଣିରେ ତାଙ୍କ ଭିତରେ ଲୁଚି ରହିଥିବା ପାଉଁଶ ତଳର ନିଆଁ କ୍ରମେ ଫୁଟି ଉଠିଲା । ମାଟ୍ରିକ୍ୟୁଲେସନ ପରେ ସେ ଯେତେବେଳେ ଅ.ଇ,ଏସ-ସି, ପାଶ କରି ପଦାକୁ ବାହାରିଲେ, ସେତେବେଳେ କେବଳ ତାଙ୍କ ନିଜ କୁଳ ବା ପରିବାର ନୁହେଁ, ସାରା ଦେଶ ଓ ଜାତି ଭିତରେ ନାନା ଆଚାର ବିଚାର, ପ୍ରଥାପଦ୍ଧତି ଓ ଜୀବନର ନାନା କ୍ଷେତ୍ରରେ ଅନଗ୍ରସରତା ଦେଖି ସମାଜ-ଜୀବନର ସବୁ କ୍ଷେତ୍ରରେ ବିଦ୍ରୋହର ନିଆଁ ଜଳାଇ ଦେବାକୁ ମୁଖର ହୋଇ ଉଠିଲେ । ଏତିକବେଳେ ଗୋଟିଏ ଇଞ୍ଜିନିୟର ହେଲେ ସେ ତାଙ୍କ ମନମୁତାବକ କାମ କରିବାର କ୍ଷେତ୍ର ପାଇବେ ବୋଲି ବାଛି ନେଇ ସେ ଦିଗରେ ଅଗ୍ରେଇ ଚଲେ । କିନ୍ତୁ ଅର୍ଥାଭାବର ଲଗୁଡ଼ ପ୍ରହାରରେ ସେ ଦିଗରୁ ଫେରି ଆସି ଶେଷରେ ଶିକ୍ଷକରୂପେ ଜୀବନ ଆରମ୍ଭ କଲେ । ଏହି ଜୀବନରୁ ହିଁ ତାଙ୍କ ଜୀବନର ବହିର୍ମୁଖୀ ଧାରାର ପୂର୍ଣ୍ଣ ବିକାଶ ଘଟିଲା । ଛାତ୍ରରୂପେ ଦେଶର ଶତ ଶତ ଭବିଷ୍ୟତ ବଂଶଧରଙ୍କୁ ହାତ ପାଖରେ ପାଇ ପ୍ରଥମେ ସେ ନିଜର ଚିନ୍ତାଧାରାକୁ ସେହିମାନଙ୍କ ଭିତରେ ପ୍ରତିଫଳିତ କରିବାକୁ ଚେଷ୍ଟା କଲେ । ଶିକ୍ଷକରୂପେ କେତେ ଘଣ୍ଟା ପାଠ ପଢ଼ାଇ ଦେଇ ଅବଶିଷ୍ଟ ସମୟତକ ସେ ଛାତ୍ରମାନଙ୍କ ସଙ୍ଗେ ଠିକ୍ ଛାତ୍ରଭଳି ସେମାନଙ୍କ ସହାଧ୍ୟାୟୀ ଓ ସମବୟସୀ ଭଳି ଏଭଳି ମିଶି ଯାଉଥିଲେ ଯେ, ତାହା କଥାରେ କହିହେବ ନାହିଁ । ଛାତ୍ରଙ୍କ ସଙ୍ଗେ ପ୍ରତିଯୋଗିତା କରି ପ୍ରବନ୍ଧ ଓ କବିତା ଲେଖିବା,

ବକ୍ତୃତା ଦେବା, ଗଛ ଚଢ଼ିବା, ନଈ ପହଁରିବା, ମାଟି ଖୋଳିବା, ପାଠ୍ୟେତର ବିଷୟମାନ ପଢ଼ି ପରୀକ୍ଷା ଦେବା, ଏଭଳିକି ସଙ୍ଗୀତ ଚର୍ଚ୍ଚା ଓ ରାଜନୀତି ଚର୍ଚ୍ଚା କରିବା ଏବଂ ଧୋଇ ମରୁଡ଼ିବେଳେ ଜନସେବା କରିବା ଆଦି କୌଣସି କ୍ଷେତ୍ରକୁ ସେ ବାଦ ଦେଇ ନ ଥିଲେ ।

ମିଶନ ସ୍କୁଲରେ ସେ ଶିକ୍ଷକତା କରୁଥିଲେ । ଖ୍ରୀଷ୍ଟ-ସମାଜରେ ତାଙ୍କର ଏହି ସବୁ କାର୍ଯ୍ୟକଳାପ ଅନୁଷ୍ଠାନର ଭିତରେ ଓ ବାହାରେ ତାଙ୍କ ଏଭଳି ଭାବରେ ପଦାରେ ପକାଇଦେଲା ଯେ, ସ୍କୁଲ କର୍ତ୍ତୃପକ୍ଷ ଅସ୍ୱସ୍ତି ଅନୁଭବ କଲେ ଏବଂ ତାଙ୍କୁ ଭିନ୍ନ ଦୃଷ୍ଟିରେ ଦେଖିଲେ । ଏହି ସମୟରେ ସେ ଛାତ୍ର ଓ ସମବୟସୀମାନଙ୍କ ସଙ୍ଗେ ପଢ଼ାପଢ଼ି ରେ ପ୍ରତିଯୋଗିତା କରି ବି,ଏ, ପାଶ କଲେ ଏବଂ ସଂସ୍କୃତ ପଢ଼ି ଏକାଧିକ ପରୀକ୍ଷାରେ ପାଶ କଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ତାଙ୍କ ଗୁରୁ ଅବସରପ୍ରାପ୍ତ ଅଧ୍ୟାପକ ଶ୍ରୀ କରୁଣାକର କର ଏମ, ଏ,ଙ୍କ ସଙ୍ଗେ ସେତେବେଳେ ସେ ପ୍ରତିଯୋଗିତା ଚଳାଇ ସଂସ୍କୃତର କାବ୍ୟ-ବ୍ୟାକରଣ ପରୀକ୍ଷାରେ ସଫଳତା ଲାଭ କରିଥିଲେ । ପରେ ସମାଜସେବା କ୍ଷେତ୍ରକୁ ଆସିବା ପାଇଁ ଗୋଖଲେଙ୍କ ପ୍ରତିଷ୍ଠିତ ଭାରତ ସେବକ ସମିତି (ଏବେ ହିନ୍ଦ୍-ସେବକ ସମାଜ)ରେ ଯୋଗଦେବା ପାଇଁ ତାଙ୍କର ଆଗ୍ରହ ହେଲା; କାରଣ ଏ ସମାଜରେ ଯୋଗ ଦେଲେ, ନାନା କ୍ଷେତ୍ରରେ କାର୍ଯ୍ୟ କରିବାର ସୁବିଧା ସୁଯୋଗ ତାଙ୍କୁ ମିଳିବ ବୋଲି ସେ ଅନୁଭବ କଲେ । କିନ୍ତୁ ଖୁବ୍ ଉଚ୍ଚ ଶିକ୍ଷିତ ନ ହେଲେ ବା ଏମ, ଏ, ପାଶ ନ କଲେ ଏ ସମାଜରେ ସେତେବେଳେ ସଭ୍ୟରୂପେ ଗୃହୀତ ହେବା ସେତେ ସହଜ ନ ଥିଲା । ଏହି ଘଟଣାରେ କରୁଣାକର ବାବୁଙ୍କ ସଙ୍ଗେ ପ୍ରତି-ଯୋଗିତା ଚଳାଇ ସେ ପ୍ରଥମେ ଓଡ଼ିଆରେ ଏମ, ଏ, ପରୀକ୍ଷା ଦେଲେ ଏବଂ ୨ୟ ଶ୍ରେଣୀରେ ହୋଇ ପରୀକ୍ଷାରେ ସଫଳତା ଅର୍ଜନ କଲେ । ଭାରତ ସେବକ ସମିତିର ସେ କାଳର କର୍ମକର୍ତ୍ତାମାନେ ତାଙ୍କର ଅଦମ୍ୟ ଅଧ୍ୟବସାୟ, ଆଗ୍ରହ ଓ ଉତ୍ସାହ ଦେଖି ଶେଷରେ ୧୯୧୬ରେ ତାଙ୍କୁ ସମାଜର ସଭ୍ୟରୂପେ ଗ୍ରହଣ କଲେ ।

ଇଞ୍ଜିନିୟର ହେବାର ବାସନା ପୋଷଣ କରି ସେଦିନ ଲକ୍ଷ୍ମୀନାରାୟଣ ପ୍ରଥମେ କଲିକତାର ଶିବପୁର କଲେଜକୁ ଯାଇଥିଲେ, ସେ ଏହିରୂପେ କିଛି ଦିନ ଶିକ୍ଷକତା କରି ଓ ବି,ଏ, ଏମ, ଏ, ପାଶ କରି ଶେଷରେ ଭାରତ ସେବକ ସମିତିର ସଭ୍ୟପଦ ପାଇବାରେ ପ୍ରକୃତରେ ତାଙ୍କ କର୍ମପ୍ରାଣ ଜୀବନକୁ ସତେ ଯେପରି ଗୋଟାଏ ପ୍ରଶସ୍ତ କ୍ଷେତ୍ର ମିଳିଲା । ଜୀବନର ଶେଷ ମୁହୂର୍ତ୍ତପର୍ଯ୍ୟନ୍ତ ସେ ଏହି ସମିତିର ସଭ୍ୟ ଭାବରେ ବାଟ ଦେଖାଇ ନୂଆ ନୂଆ ଲୋକଙ୍କୁ ତତ୍ପ୍ରତି ଆକୃଷ୍ଟ କରି ଆଣିବାରେ ସତେ ଯେପରି ସେ ଥିଲେ ଜଣେ ପରେନ୍ଦ୍ରକୃତ୍ । ସଭାସମିତି କରି ଓ କରାଇବାରେ ଲୋକସମାଗମ କମ୍ବା ଭାଷଣର ବିଷୟବସ୍ତୁ ଉପରେ ସେ ବିଶେଷ ଗୁରୁତ୍ୱ ନ ଦେଇ କହୁଥିଲେ—

"ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ
ତ୍ରାୟତେ ମହତୋ ଭୟାତ୍"

ଲୋକେ ଅଳ୍ପ ଆସନ୍ତୁ ! ଭଲ ଭାଷଣ ଦେବାକୁ ପଣ୍ଡିତ ଲୋକ ନ ଆସନ୍ତୁ; ସେଥିରେ ଦବ ନ ଯାଇ ଆଉ, ଆମେ ପାଞ୍ଚ ଦଶଜଣ ଏକାଠି ହେବା ଏବଂ ନିଜ ନିଜ ଭିତରେ ଭାବର ଆଦାନ ପ୍ରଦାନ କରିବା । ଏହି ମିଳିତ ହେବା ଓ ଦେବା-ନେବାର ଅଭାବରେ ଆମ ଦେଶ ଓ ଜାତି ଏତେ ପଛରେ ପଡ଼ିଛି ।

ସାହିତ୍ୟ ପତ୍ରିକା ଓ ସମ୍ବାଦପତ୍ର ଆଦି ପ୍ରକାଶ କରି ନିଜର ବାର୍ତ୍ତା ଦେଶର ମନ୍ଦିର ପାଖରେ ପହଞ୍ଚାଇବା ପାଇଁ ସେ 'ସହକାର' ଓ 'ବୈତରଣୀ' ନାମରେ ଦୁଇଟି ମାସିକ ପତ୍ରିକା ଓଡ଼ିଆ ଓ ଇଂରେଜୀରେ ବହୁବର୍ଷଯାଏ ପ୍ରକାଶ କରିଥିଲେ ଏବଂ ସେ କାଳର 'Star of Utkal', 'Utkal Mirror' ଓ 'Young Utkal' ଆଦି ଇଂରେଜୀ ସାପ୍ତାହିକ ପତ୍ରିକା-ମାନଙ୍କରେ ବହୁ ନିବନ୍ଧ ଓ ସମାଲୋଚନାମାନ ଲେଖୁଥିଲେ । ଚିଠାଙ୍କ ହରିଣପତ୍ର କ୍ଷିପ୍ରଚାର ମୂର୍ତ୍ତିମାନ ପ୍ରଶ୍ନାକରୂପେ ସେ ସେତେବେଳେ ଯେଉଁ କ୍ଷେତ୍ରକୁ ଯାଇ ଓଡ଼ିଶାର ସମାଜ ଜୀବନରେ ସବୁ କ୍ଷେତ୍ରରେ ଅଭାବ ଅସୁବିଧା ଓ ଅନଗ୍ରସରତାର ଜ୍ୱାଳା ବିଷଜ୍ୱାଳାରେ ସବୁବେଳେ ଅସ୍ଥିର ହେଉଥିଲେ ଏବଂ ଦୀନଦରିଦ୍ର ଭୋକ, ରୋଗ ଶୋଷ ପାଶୋର ସବୁବେଳେ ସେସବୁର ନିରାକରଣ ପାଇଁ, ସେତେବେଳେ ଯାହା ସମୁଚିତ ମନେ କରୁଥିଲେ, ତାହା କରୁଥିଲେ । ଏଥିପାଇଁ ଅନେକ ବନ୍ଧୁ ତାଙ୍କୁ "Jack of all trades, but master of none" ବୋଲି କହି ସମାଲୋଚନା କଲାବେଳେ ସେ କହନ୍ତି ବର୍ତ୍ତମାନ ଆମର ଅବସ୍ଥା ଯାହା—ସେଥିରେ ବହୁସଂଖ୍ୟାରେ "Jack of all trades" ମଧ୍ୟ ନାହାନ୍ତି । ସେତିକ ଯଦି ମୋଦ୍ୱାରା ହେଉଛି ବୋଲି କେହି ମନେ-କରୁଥାଏ, ତେବେ ତାହାହିଁ ମୋର ସାର୍ଟିଫିକେଟ ।

ପ୍ରକୃତରେ ଅନ୍ୟ ପାଞ୍ଚଜଣଙ୍କ ଭଳି ସେ ଭାବିଚିନ୍ତି ବା କାର୍ଯ୍ୟସୂଚୀ ରଚନା କରି ଓ ଭବିଷ୍ୟତରେ ଭଲ ମନ୍ଦ ବିଚାରକୁ ନେଇ କୌଣସି କାମରେ ହାତ ଦେବାକୁ ବା କୌଣସି

କ୍ଷେତ୍ରରେ ଆଗେଇ ଯିବାକୁ ଅପେକ୍ଷା କରିପାରୁ ନ ଥିଲେ । ଚାରିଆଡ଼େ ଅଭାବ, ଅସୁବିଧା ଓ ଅନଗ୍ରସରତାର ଅନ୍ଧକାର ଭିତରେ ସେ ଯେତେବେଳେ ଯେଉଁଆଡ଼େ ଟିକିଏ ବାଟ ପାଉଥିଲେ, ସେଆଡ଼େ କିଛିଦୂର ମାଡ଼ି ଯାଉଥିଲେ ଏବଂ ସେଇ ଅବସ୍ଥାରେ ଅନ୍ୟଆଡ଼େ ଆଉ କେଉଁଠି ଯଦି ଗୋଟାଏ ବାଟ ତାଙ୍କ ଆଖିରେ ପଡ଼ୁଥିଲା, ତେବେ ପୁରୁଣା ବାଟର ଦାୟିତ୍ୱ ଅନ୍ୟ ହାତରେ ଦେଇ ସେହି ନୂଆ ବାଟରେ ସେ ଆଗେଇ ଯାଉଥିଲେ । ନୂଆ ନୂଆ କ୍ଷେତ୍ରକୁ ଯାଉଥିଲେ ବା ଯେଉଁ ଅଞ୍ଚଳରେ ପହଞ୍ଚୁଥିଲେ, ସେତେବେଳେ ସେ କ୍ଷେତ୍ରରେ ବା ସେ ଅଞ୍ଚଳରେ ସତେ ଯେପରି ଏକ ଅପୂର୍ବ ଉଲ୍ଲାସ ଓ ଜାଗରଣ ଖେଳିଯାଉଥିଲା । ସ୍କୁଲ କଲେଜରେ ପହଞ୍ଚିଲାମାତ୍ରେ ସେ ସାହିତ୍ୟ ସଭା, ସଙ୍ଗୀତ ସମ୍ମିଳନୀ ଓ ବକ୍ତୃତା ପ୍ରତିଯୋଗିତା ନ କରାଇ ଛାଡ଼ୁ ନ ଥିଲେ । ବେଳେ ବେଳେ ସ୍କୁଲ ଛାତ୍ରମାନଙ୍କ ସଙ୍ଗେ ବିଭିନ୍ନ କ୍ରୀଡ଼ା ଓ ସନ୍ତରଣ ପ୍ରତିଯୋଗିତାରେ ତାଙ୍କୁ ଦେଖିଲେ ମନେ ହେଉଥିଲା··ସତେ ଯେପରି ଅସରନ୍ତି ଯୌବନର ସେ ଏକ ଉତ୍ସ !

ଜୀବନରେ ସାହସ, ନିର୍ଭୀକତା ଓ ସ୍ପଷ୍ଟବାଦିତା ପାଇଁ ଆମ ଓଡ଼ିଶାରେ ଆସନ୍ତା ବହୁବର୍ଷଯାଏ ସେ ଅମର ଆଦର୍ଶ ହୋଇ ରହିବେ ବୋଲି ମୋର ବିଶ୍ୱାସ । ସାହିତ୍ୟଶିକ୍ଷା, ସାମ୍ବାଦିକତା ଓ ସମାଜସେବା କ୍ଷେତ୍ରରେ ବହୁବର୍ଷଯାଏ ଓଡ଼ିଶା ତାଙ୍କର ଅଭାବ ମର୍ମେ ମର୍ମେ ଅନୁଭବ କରିବ । ଆଜି ସେହି ମହାମନା ଭାରତସେବକ ଲକ୍ଷ୍ମୀନାରାୟଣଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀରେ ମୁଁ ଓ ମୋ ଭଳି ଅନେକେ ତାଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ନିବେଦନ କରି ନିଜ ନିଜକୁ କୃତାର୍ଥ ମନେ କରୁଛୁ ।

---

"ପତିତପାବନ ହେ ମଧୁସୂଦନ,
ଜୀବନ ମୋହର କର ତୁ ଚନ୍ଦନ ।
ମଲ୍ଲିକା ସୁବାସ ଭରି ଏହି ଦେହେ,
ତୋଷୁ ସରବ ସେ ପୁଣ୍ୟର ପ୍ରବାହେ ।"

—ଲକ୍ଷ୍ମୀନାରାୟଣ

# ସ୍ମୃତିକଣିକା

## ଶ୍ରୀ ଅଲେଖପ୍ରସାଦ ଦାସ

ବ୍ୟକ୍ତି ବା ବିଷୟର ଅନୁଭୂତ ଘଟଣାକୁ ସ୍ମରଣ କରିବାକୁ ହେଲେ ନିଜ ଜୀବନର ଘଟଣା ସମୂହ ସମ୍ପର୍କରେ ସ୍ମରଣ କରୁଥିବା ବ୍ୟକ୍ତିଙ୍କର କଥା ଓ କାମ ସବୁ ଆସି ଆମ ମନେ ପଡ଼ିଯାଏ । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କର ଘନିଷ୍ଠ ସଂସ୍ପର୍ଶରେ **୧୯୧୯ ମସିହାଠାରୁ** ଆସି ମୁଁ ଅନେକ କ୍ଷେତ୍ରରେ ତାଙ୍କର ସୁପରିଚିତ **ଅନୁଗାମୀ** ହୋଇଅଛି । ସେଥିରୁ କେତେକ ଘଟଣା ହିଁ ଲେଖିଲି ।

ସେପ୍ଟେମ୍ବର ୧୯, **୧୯୧୯** ମସିହା ହିମାଳୟ ରାଜ୍ୟ ଗଡ଼ୱାଲରେ ଲକ୍ଷ୍ମୀନାରାୟଣ ବାବୁ ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କୁ ସାହାଯ୍ୟ ଦେବା କାମରେ ଲାଗିଥିଲେ । ସେ ସେତେବେଳକୁ ବି. ଏ. ପାଶ କରି ଭାରତସେବକ ସମିତିର ସଦସ୍ୟ ହୋଇଥିଲେ । ମୁଁ ମଧୁପୁର ମି: ଇ: ସ୍କୁଲରେ ୮ମ ଶ୍ରେଣୀ ଛାତ୍ର ଥିଲି । ଜଣେ ମାଇନର ପାଠ ପଢ଼ୁଥିବା ଛାତ୍ର ସହିତ ଜଣେ ଦେଶହିତୈଷୀ ଉଚ୍ଚ ଶିକ୍ଷିତ ମାନ୍ୟାସ୍ପଦ ବ୍ୟକ୍ତିଙ୍କର ଚିଠିପତ୍ର କାରବାର !

ଚିଠିରେ ଯେତେ ଦରଦ କଥା ଥିଲା—ତା'ଭିତରୁ ଏଇ ଦୁଇପଦ କଥା ମୋ ଜୀବନ ସ୍ରୋତସ୍ୱତୀର ଚିରନ୍ତନ ନିର୍ଝରିଣୀ, ତାହା ଏହି—"ତମେ ସେଠି ଯେ ଦେଢ଼ଶହ ଛାତ୍ରଙ୍କ ଭିତରେ ଅଛ, ସେମାନଙ୍କ ମଧ୍ୟରେ ତମର ସ୍ଥାନ ନୁହେଁ । ତମର ସ୍ଥାନ ଆମମାନଙ୍କ ମଧ୍ୟରେ ।"

ମଧୁପୁର ମି. ଇ. ସ୍କୁଲରେ ମୁଁ ପଢ଼ୁଥିଲାବେଳେ ଶ୍ରୀ ନିତ୍ୟାନନ୍ଦ ଶତପଥୀଙ୍କର ସାହଚର୍ଯ୍ୟରେ ଆମ୍ଭେମାନେ ଦେଶ-ସେବା'ର ପ୍ରେରଣା ପାଉଥିଲୁ । ବନ୍ୟା ଓ ଦୁର୍ଭିକ୍ଷ ପ୍ରପୀଡ଼ିତଙ୍କୁ ସାହାଯ୍ୟ ଦେବା, ହଇଜା, ବସନ୍ତ, ମ୍ୟାଲେରିଆ ପୀଡ଼ା ପ୍ରକୋପରେ 'ପ୍ରପୀଡ଼ିତମାନଙ୍କର ଉଦ୍ଧାର ପାଇଁ କାମ କରିବା, ଛାତ୍ରସଙ୍ଘ, ସମବାୟ ସମିତି, ଶିଳ୍ପୋନ୍ନତି, ଗ୍ରାମ ସଂଗଠନ ଆଦି କାମ ଜରିଆରେ ଲୋକସାଧାରଣଙ୍କୁ ଏକାଠି କରିବା, ଏହା ବ୍ୟତୀତ ସମ୍ବାଦପତ୍ର ପ୍ରତିଷ୍ଠା ଓ ପରିଚାଳନା ଦ୍ୱାରା ଜନମତ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଦେଶବାସୀ ଏବଂ ସରକାରଙ୍କୁ ଅତ୍ୟାଚାରିତ ବା ପ୍ରପୀଡ଼ିତ ଜନତାର ଦୁଃଖ ଦୁର୍ଦ୍ଦଶା ଜଣାଇବା ସେତେବେଳେ ଭାରତ ସେବକ ସମିତିର କାର୍ଯ୍ୟ ଥିଲା ।

ଲକ୍ଷ୍ମୀନାରାୟଣ ବାବୁଙ୍କ କାର୍ଯ୍ୟରେ ସହଯୋଗ କରିବା ସଙ୍ଗେ ସଙ୍ଗେ ମୁଁ ତାଙ୍କର ଜୀବନ ଓ ମନ ସହିତ ବେଶ୍ ଚିହ୍ନା ହୋଇଗଲି । ଲକ୍ଷ୍ମୀନାରାୟଣ ବାବୁ ସାରା ଜୀବନ ଛାତ୍ର ଥିଲେ । ସେ ସତ୍‌ଗ୍ରନ୍ଥ ଦେଖିଲେ ମନ ପ୍ରାଣ ଲଗାଇ ତାକୁ ଭଲ ପଢ଼ୁଥିଲେ । ଏବଂ ଆବଶ୍ୟକ ସାହାଯ୍ୟ ଓ ପରାମର୍ଶ ଦେଇ ସେବା ଓ ସ୍ୱାଧୀନତା ବ୍ରତରେ ବାନ୍ଧିଥିଲେ । ତାଙ୍କର 'ସାନ୍ତ୍ୱନା' ବହିଟି ସେକାଳର ଲେଖା । ତହିଁରେ 'ଆତ୍ମା'ର ମିଳନ କଥା ହିଁ କ୍ଷୁଦ୍ର ପ୍ରବନ୍ଧାକାରରେ ଲେଖା ହୋଇଛି ।

ମଧୁପୁର ସ୍କୁଲ ଛାଡ଼ି ୧୯୨୦ରେ ମୁଁ ଢେଙ୍କାନାଳ ହାଇସ୍କୁଲକୁ ଗଲି । ଲକ୍ଷ୍ମୀନାରାୟଣ ବାବୁ ପୂର୍ବ ବଙ୍ଗ ବନ୍ୟାକ୍ଲିଷ୍ଟମାନଙ୍କର ସାହାଯ୍ୟ ପାଇଁ ମତେ ଲେଖିଲେ । ମୁଁ କେତେକ ଛାତ୍ର ଭାଇଙ୍କ ସଙ୍ଗରେ ବୁଲି ଚନ୍ଦା ସଂଗ୍ରହ କରି ପଠାଇଥିଲି । ଅସହଯୋଗ ଆନ୍ଦୋଳନରେ ମୁଁ କଟକ ଗଲି । ଅନେକ ହିତୈଷୀ ଗୁରୁଜନଙ୍କ ପରି ଲକ୍ଷ୍ମୀନାରାୟଣ ବାବୁ ମତେ ପାଠପଢ଼ା ନ ଛାଡ଼ିବାକୁ କହିଥିଲେ । ମୁଁ ୰ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହିତ ଓଡ଼ିଆ ଶ୍ରମିକ ସଂଗଠନ ପାଇଁ କଲିକତା ଯାଇଥିଲି । ଆମେମାନେ ଶ୍ରୀ ଗୋପାଳ ମଲ୍ଲିକ ଲେନ୍‌ରେ ଡାକ୍ତରୀ ଛାତ୍ରମାନଙ୍କ ବସାରେ ଥିଲୁ । ଲକ୍ଷ୍ମୀନାରାୟଣ ବାବୁଙ୍କର ଓ ମୋର କାମ ଭିନ୍ନ ଭିନ୍ନ ଥିଲେ ସୁଦ୍ଧା ଖାଇବା ସମୟରେ ଓ କାମ ସାରି ଆସିବା ବାଟରେ ଆମେମାନେ ଏକାଠି ହେଉଥିଲୁ ଏବଂ ନାନା ବିଷୟରେ କଥାବାର୍ତ୍ତା ହେଉଥିଲୁ । ସେ ଥରେ ମତେ କହିଥିଲେ··"ସାଢ଼େ ଏଗାରଟା ଘଡ଼ିରେ କଲେଜ ସ୍କୋୟାର ଦେଇ ଆସିବ ନାହିଁ । ସେଠି ହାଣ କାଟ ହେଉଛି ।"

୧୯୨୨ ମସିହାରେ କଟକରେ ସ୍ୱରାଜ୍ୟାଶ୍ରମ ଚଳାଇବା ପାଇଁ ମୁଷ୍ଟିଭିକ୍ଷାବେଳେ ମଦ ଦୋକାନ ପିକେଟିଂରେ ମୁଁ ମଦୁଆମାନଙ୍କ ଦ୍ୱାରା ମାଡ଼ ଖାଇବାବେଳେ ଏବଂ ମଧୁପୁର ଓ ବଡ଼ଚଣା ଅଞ୍ଚଳରେ କଂଗ୍ରେସ ବାର୍ତ୍ତା ପ୍ରଚାର ସମୟରେ ଲକ୍ଷ୍ମୀନାରାୟଣ ବାବୁଙ୍କର ଦରଦ କଥା ମୋର ଅନେକ ସମୟରେ ମନେ ପଡ଼ୁଛି ।

୧୯୨୩ରେ ଢେଙ୍କାନାଳରେ ରହି ବାହାର ଛାତ୍ର ଭାବରେ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେଲି । ୰ ଆନିବେଶାନ୍ତ ପ୍ରତିଷ୍ଠିତ ଷ୍ଟାରଗ୍ରୁପ୍ ଓ ଥିଓସଫିକାଲ (ବ୍ରହ୍ମବିଦ୍ୟା) ସୋସାଇଟିର ଶାଖାନୁଷ୍ଠାନ ଢେଙ୍କାନାଳରେ ଆରମ୍ଭ କଲୁ । ଲକ୍ଷ୍ମୀନାରାୟଣ ବାବୁଙ୍କର ଓ ମୋର ପ୍ରଧାନ ଶିକ୍ଷକ ରାଜେନ୍ଦ୍ର ବାବୁଙ୍କ ସହ ଘନିଷ୍ଠ ବନ୍ଧୁତା ଥିଲା । ବନାରସର ବ୍ରହ୍ମବିଦ୍ୟା ପ୍ରଚାରକ ପାଣ୍ଡେ

(ଏସ୍. ଡି. ପାଣ୍ଡେ) ଓ ଲକ୍ଷ୍ମୀନାରାୟଣ ବାବୁ ଢେଙ୍କାନାଳ ଯୋଗ ଗ୍ରୁପମାନଙ୍କ ମଧ୍ୟରେ କାମ କରିଥିଲେ ।

୧୯୨୯ରେ ମୁଁ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଲି କଟକ କେନ୍ଦ୍ରରେ । ଏହି ସମୟରେ ଲକ୍ଷ୍ମୀନାରାୟଣ ବାବୁଙ୍କର କଟକ ଉଦ୍‌ଗା ପଡ଼ିଆ (ଦେଉଳସାହି) ଘର ଡାଆଣ ଦେଉଥିଲି । ସେଠାରେ ସହଯୋଗ ପ୍ରଚାର ପାଇଁ 'ସହକାର' ପତ୍ରିକା ଛାପିବା —ପ୍ରେସ ବସାଇବା, ମଧୁସୂଦନ ଦାସଙ୍କ ପ୍ରତିଷ୍ଠିତ 'ଷ୍ଟାର ଅଫ୍ ଉତ୍କଳ' ଇଂରାଜୀ ସାପ୍ତାହିକ ପତ୍ରିକାର ପ୍ରକାଶନ ଓ ସମ୍ପାଦନ କରିବା ଆଦି ଅନେକ କାମରେ ମୁଁ ତାଙ୍କର ସହଯୋଗୀ ହେଲି । ମୋତେ 'ସହକାର' ମାସିକ ପତ୍ରର ସମ୍ପାଦକ ହେବାକୁ ପଡ଼ିଲା । 'ସମବାୟ', 'ସହଯୋଗ', 'ସହକାର' ଏହି ଶବ୍ଦଗୁଡ଼ିକ ଇଂରାଜୀ Co-operativeର ଅର୍ଥସୂଚକ । ଆମର ସହକାର ପତ୍ରିକା ଏଇ ଅର୍ଥରେ ପ୍ରତିଷ୍ଠିତ ହୋଇଥିଲା । ମାତ୍ର ସହଯୋଗ ମନୋବୃତ୍ତି ଆଜି ପ୍ରାୟ ଚାଳିଶ ବର୍ଷ ପରେ ମଧ୍ୟ ଓଡ଼ିଶାରେ ବ୍ୟାପକ ହୋଇନାହିଁ । 'ସହକାର' କ୍ରମେ ସାହିତ୍ୟିକ ପତ୍ରିକା ହେଲା । ଓଡ଼ିଶାର ପୁରୁଣା ସାହିତ୍ୟିକ ପତ୍ରିକା ୰ ବିଶ୍ୱନାଥ କରଙ୍କ ଦ୍ୱାରା ପ୍ରତିଷ୍ଠିତ 'ଉତ୍କଳ ସାହିତ୍ୟ' ଓ 'ସହକାର' ମଧ୍ୟରେ ବେଳେବେଳେ ଯେ କନ୍ଦଳ ଲାଗୁଥିଲା, ସେ ସବୁ ଲକ୍ଷ୍ମୀନାରାୟଣ ବାବୁଙ୍କର ପ୍ରଗତିଶୀଳ ମନୋବୃତ୍ତି ହେତୁ ।

କି ଦୁଃଖ ଅଭାବ ମଧ୍ୟରେ ଆମେ କାମ କରୁଥିଲୁ ! ରାଜନୈତିକ ମତବାଦରେ ଆମେ ସ୍ୱତନ୍ତ୍ର ଥାଇ ମଧ୍ୟ ସେବା, ଶିକ୍ଷା, ସଂସ୍କୃତି ଓ ସଂସ୍କାର ବିଷୟରେ ଆମେ ଏକମତର ଥିଲୁ । ୰ ଲକ୍ଷ୍ମୀନାରାୟଣ ବାବୁଙ୍କର ଖାଇବା ଓ ପିନ୍ଧିବା ପାଇଁ ସ୍ଥିର ବ୍ୟବସ୍ଥା ଥିଲା । ମାତ୍ର ମୋର କିଛି ନ ଥିଲା । ଓଡ଼ିଶାରୁ ସାଧାରଣ ହିତକାମ ପାଇଁ ଚାନ୍ଦା ଉଠାଇବା କଷ୍ଟକର ଥିଲା । ମାତ୍ର ଜଣେ ଉଚ୍ଚ ସରକାରୀ କର୍ମଚାରୀ ନିଜ ଅଫିସ ଘରେ ବସି ରାଜାମହାରାଜା ଓ ଜମିଦାରଙ୍କଠାରୁ ଶ' ହଜାର ଟଙ୍କା ସଂଗ୍ରହ କରି ପାରୁଥିଲେ । ଅଭାବ ଓ ଅବ୍ୟବସ୍ଥିତତା ମଧ୍ୟରେ ମୁଁ ବାଧ୍ୟ ହୋଇ ୰ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର ଓଡ଼ିଆ ସାହିତ୍ୟ ପ୍ରଚାର ସଂଘରେ ଯୋଗ ଦେଲି ।

୧୯୨୭ ମସିହା ନଭେମ୍ବର ମାସ ୨୦ରେ ୰ ଲକ୍ଷ୍ମୀନାରାୟଣ ବାବୁ ମୋର ଢେଙ୍କାନାଳ ଘରକୁ ଆସିଥିଲେ । ଆମେ ଦୁହେଁ କଳ୍ପନା କରିଥିଲୁ ଯେ ଢେଙ୍କାନାଳ ସୀମା କଟକ ଜିଲ୍ଲାର କଳକଳା ଜମିଦାରୀରେ ଜନସାଧାରଣଙ୍କର ଶିକ୍ଷା, କୃଷି ଓ ବୈଷୟିକ ଉନ୍ନତି ପାଇଁ ସହଯୋଗ ଭିତ୍ତିରେ ଗୋଟିଏ ଅନୁଷ୍ଠାନ ଗଢ଼ିବା । ଏଥିପାଇଁ ୨୧।୧୧।୨୭ରେ କଳକଳା ଜମିଦାରଙ୍କଠାରୁ ଏଗାର ଏକର ଜମି ପଟ୍ଟାସୂତ୍ରରେ ଗ୍ରହଣ କଲୁ । ଏହା ଏପର୍ଯ୍ୟନ୍ତ ଜଙ୍ଗଲ ହୋଇ ପଡ଼ିଛି । ଆମ ଦୁହିଁଙ୍କର ଜୀବନଧାରା ବିଭିନ୍ନ ମୁହଁରେ ଚାଲିଲା । ସେ ଚାଲିଗଲେଣି । ମୁଁ ରହିଛି ଏବଂ ଆମର ଏ ଆଶା ଆକାଂକ୍ଷା ପୂର୍ଣ୍ଣ କରିବାକୁ ଆମ୍ଭମାନଙ୍କର ଉତ୍ତରାଧିକାରୀମାନଙ୍କର ସହାୟତାରେ ଯତ୍ନ କରୁଛି ।

ମୁଁ ବ୍ରାହ୍ମସମାଜର ମାଘୋତ୍ସବ ଓ ବ୍ରାହ୍ମମନ୍ଦିରକୁ ଅନେକ ଥର ଯାଇଛି । ସେଠାରୁ ଫେରିବାବେଳେ ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ସାକ୍ଷାତ ହୁଏ । ସେ ମତେ ବ୍ରାହ୍ମ ହେବାକୁ ମନା କରି ନ ଥିଲେ; ମାତ୍ର କହିଥିଲେ—"ଗୋଟାଏ ଧର୍ମର ଛାପା ମାରି ହେବା ପ୍ରୟୋଜନ ନାହିଁ । ତମ ସ୍ଥାନରେ ତମେ ରହି ସଂସ୍କାର କଲେ ହେଲା ।" ସାହିତ୍ୟ ପ୍ରଚାର ସଂଘର କାର୍ଯ୍ୟ କଳାପ ସନ୍ତୋଷଜନକ ଦେଖି ସେ ତହିଁରେ ଜଣେ ପଚିଶ ଟଙ୍କିଆ ଚାନ୍ଦାଦାତା ସଭ୍ୟ ହେଲେ ଏବଂ ଏ ସଂଘ ସମ୍ପର୍କରେ ମତେ ବହୁତ ସାହାଯ୍ୟ କରିଥିଲେ ।

ମୁଁ ଅଲେଖ ଧର୍ମ ବା ମହିମା ଧର୍ମର ପ୍ରଚାର କାର୍ଯ୍ୟରେ ୧୯୨୭ ମସିହାର ଗ୍ରୀଷ୍ମ ଓ ପୂଜା ଛୁଟିରେ ଓଡ଼ିଶାର କେତେକ ସ୍ଥାନ ବୁଲିଥିଲି । ଓଡ଼ିଆ ବିଶ୍ୱକୋଷ ଲେଖିବା, ଓଡ଼ିଆ ପୁରୁଣା ପୋଥି ସଂଗ୍ରହ କରିବା ଏବଂ ଓଡ଼ିଶାର କିମ୍ବଦନ୍ତୀ ଇତିହାସ ପ୍ରସିଦ୍ଧ ସ୍ଥାନ ଦେଖି କିଛି ତଥ୍ୟ ସଂଗ୍ରହ କରିବା ମୋର କାମ ଥିଲା । ଲକ୍ଷ୍ମୀନାରାୟଣ ବାବୁଙ୍କୁ ଏସବୁ ଭଲ ଲାଗେ ବୋଲି ମୋ ସହିତ କଥାବାର୍ତ୍ତା ଓ ଚିଠିପତ୍ରରେ ସମ୍ପର୍କ ରଖିଥିଲେ ।

୧୯୨୭ ଅକ୍ଟୋବର ମାସରେ ଆମେ ଦୁହେଁ କେନ୍ଦୁଝର ବୈତରଣୀ ବନ୍ୟାକ୍ଲିଷ୍ଟ ଗ୍ରାମମାନଙ୍କରେ ସାହାଯ୍ୟ ବିତରଣ କରୁଥିଲୁ । ମୁଁ ଏବର୍ଷ କଟକ ରେଭେନ୍‌ସା କଲେଜରେ ଆଇ. ଏ. କ୍ଲାସରେ ନାମ ଲେଖାଇଥିଲି । ୧୯୨୮ ଜାନୁୟାରୀ ୨୩ରେ, ଲକ୍ଷ୍ମୀନାରାୟଣ ବାବୁ ମୋର ବିବାହ ପ୍ରସଙ୍ଗରେ ମୋର ଢେଙ୍କାନାଳ ଘରକୁ ଆସି ମୋ' ମାଆଙ୍କ ସହିତ କଥାବାର୍ତ୍ତା କରିଥିଲେ । ଏଥିପୂର୍ବରୁ ତାଙ୍କ ସ୍ତ୍ରୀ ଓ ମାଆ ମୋ ଘରକୁ ଆସିଥିଲେ । ବ୍ରାହ୍ମସମାଜରେ ମୋର ବିବାହ ପ୍ରସ୍ତାବ ମଧ୍ୟ ଉଠିଥିଲା । ରେଭେନସା କଲେଜର ଲାଇବ୍ରେରୀ କୋଠାର ଗୋଟିଏ ବଖରାରେ କୁକର ଓ ଷ୍ଟୋଭରେ ନିଜେ ରାନ୍ଧି ଖାଇ, କଲେଜରେ ପଢ଼ି ଓଡ଼ିଆ ସାହିତ୍ୟ ପ୍ରଚାର ସଂଘର ବିଶ୍ୱକୋଷ ଲେଖା ଆଦି କାମ କରିବା ସଙ୍ଗେ ସଙ୍ଗେ ସମାଜସେବା କାମରେ ମୁଁ ଯେପରି ଲାଗିଥିଲି, ଲକ୍ଷ୍ମୀନାରାୟଣ ବାବୁ ସେସବୁ ଦେଖି ମୁଗ୍ଧ ହେଉଥିଲେ ।

୧୯।୨।୨୮ରେ ମୋର ବିବାହ । ଲକ୍ଷ୍ମୀନାରାୟଣ ବାବୁ ପ୍ରଧାନ ପୁରୋହିତ ଥିଲେ । ମୁଁ ତାଙ୍କ ହାତରୁ କନ୍ୟାଗ୍ରହଣ

କରିଥିଲି । ବିବାହରେ ହୋମାଦି କର୍ମକାଣ୍ଡ ହୋଇ ନ ଥିଲା । ସେ ଥରେ ମୋତେ ଓ ମୋ ସ୍ତ୍ରୀକୁ ଲେଖିଥିଲେ—

ସ୍ନେହର ଅଲେଖ,

ତୁମ ଚିଠି ପାଇଲି । କଣ କରିବ ଏଠାକୁ ଆସିଲେ ଠିକ କରିବୁ । ଆଜି ଅଧିକ କିଛି ଲେଖିବାକୁ କଲମ ଯାଉନାହିଁ—ମନ ଯାଉନାହିଁ । ମୁଁ ବୋଧହୁଏ ଏକ ପ୍ରକାର ଅବସନ୍ନ ହୋଇ ପଡ଼ୁଛି । ତୁମମାନଙ୍କର ସହାୟତା ଲାଭ କରିପାରିଲେ ଜୀବନ ହୁଏତ ସୁଖକର ବୋଧ ହୋଇପାରେ । ଚୌଦ୍ୱାର କେନ୍ଦ୍ରର ଭାର ତୁମ ଉପରେ ଦେଇ ମୁଁ ନିଶ୍ଚିନ୍ତ ହୋଇପାରେ । ତୁମେ ଚୌଦ୍ୱାର ମାଇନର ସ୍କୁଲରେ ପଢ଼ାଇବ । ଗ୍ରାମସଂଗଠନର ସମସ୍ତ କାମ ଦେଖିବ । ଭୟ ଭାବନା କିଛି ନାହିଁ । ଜୀବନରେ ସଂଗ୍ରାମରେ ସୁଖ ମଧ୍ୟ ଅଛି । କେବଳ ବିମର୍ଷ ହୋଇ ନ ପଡ଼ିଲେ ହେଲା । ୨୦।୫।୨୯,

ଅଲେଖ, ତମକୁ କେବେ ଅନ୍ତର କରି ଦେଖି ନାହିଁ । ଯଦି କ୍ରୋଧରେ କେବେ କିଛି କହିଥାଏ, ତାହା ମୋର ଶତ୍ରୁ ଦ୍ୱାରା ହୋଇଅଛି ଜାଣିବ । କ୍ରୋଧଟା ମୋର ନୁହେ । ମୋର ଶତ୍ରୁ । ଇତି ।

ସ୍ନେହଲତା ମା' ମୋର, ମୁଁ ତତେ ବେଶି କିଛି ଲେଖି ପାରୁନାହିଁ । ନ ଲେଖିଲେ ମଧ୍ୟ ଜାଣିବୁ ଯେ, ମୁଁ ତୋତେ ମୋର କନ୍ୟା ବୋଲି ଭାବୁଛି । ଯାହା ହେଉ—ମୋ ଦେଇ ଯାହା ହେବ, ତାହା ମୁଁ କରିବି ନାହିଁ—ଭଗବାନ କରିବେ ।

ପାଟନାରେ ମୋ ବସା ଘରେ ଦିନେ ୰ ଡକ୍ଟର ଆର୍ତ୍ତିବଲ୍ଲଭ ମହାନ୍ତି ଓ ୰ ଲକ୍ଷ୍ମୀକାନ୍ତ ଚୌଧୁରୀ ପହଞ୍ଚିଥିଲେ । ଆର୍ତ୍ତିବାବୁ ପ୍ରାଚୀ ସମିତି ପକ୍ଷରୁ ଛାପାଖାନାଟିଏ ଆୟୋଜନ କରୁଥିଲେ । ମୋତେ ସେହି ପ୍ରେସ (ଛାପାଖାନା) ସଂକ୍ରାନ୍ତରେ ଆହ୍ୱାନ କରିଥିଲେ । ମାତ୍ର ଲକ୍ଷ୍ମୀନାରାୟଣ ସାହୁଙ୍କୁ ମୁଁ ବଚନ ଦେଇଥିବାରୁ ତାଙ୍କ ପ୍ରସ୍ତାବ ଗ୍ରହଣ କରି ପାରିଲି ନାହିଁ ।

ମୁଁ ଓ ମୋ' ସ୍ତ୍ରୀ ପାଟନାରୁ ସିଧା ଚୌଦ୍ୱାର ଆସିଲୁ । ଚୌଦ୍ୱାର ଗ୍ରାମସଂଗଠନ କେନ୍ଦ୍ର ଓ ମିଃ ଇଃ ସ୍କୁଲର ଶିକ୍ଷକତାରେ ମୁଁ ନିଯୁକ୍ତ ହେଲି । ଏହି ସମୟରେ ସେ କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇ କଲିକତା ଏବଂ ଆର୍କଟରେ ଚିକିତ୍ସା ପାଇଁ ଗଲେ । ରାଜନୈତିକ କାରଣରେ ମୁଁ ଚୌଦ୍ୱାର ଛାଡ଼ି ଚମ୍ପାପୁର ଗାନ୍ଧି-ସେବାଶ୍ରମରେ ଯୋଗ ଦେଲି ।

ଚମ୍ପାପୁର ଗାନ୍ଧୀ-ସେବାଶ୍ରମକୁ ସେ ଅନେକ ସମୟରେ ଯାଉଥିଲେ ଏବଂ ଅସ୍ପୃଶ୍ୟତା ନିବାରଣ ଆଦି କାମରେ ଆମ୍ଭମାନଙ୍କୁ ବହୁତ ସାହାଯ୍ୟ କରିଥିଲେ ।

ଗାନ୍ଧୀ ସେବାଶ୍ରମ ଛାଡ଼ି ମୁଁ ଘରକୁ ଆସି ବାଲ୍ମୀକି ରାମାୟଣର ଓଡ଼ିଆ ଅନୁବାଦ (ସାରସ୍ୱତ ରାମାୟଣର କେତେକାଂଶ) କରୁଥିବାବେଳେ ଏବଂ ଜମିବାଡ଼ି ନେଇ କୃଷିରେ ଲାଗିଥିବାବେଳେ ମଧ୍ୟ ଗଡ଼ଜାତ ପ୍ରଜା ଆନ୍ଦୋଳନର ପ୍ରାଥମିକ କାର୍ଯ୍ୟ କରୁଥିଲି । ଲକ୍ଷ୍ମୀନାରାୟଣ ବାବୁ ମୋର ସଂଗ୍ରାମ ଦେଖିବାକୁ ଥରେ ଆସିଥିଲେ । ଜମିଦାରୀ ଅତ୍ୟାଚାର ବିରୁଦ୍ଧରେ ଥରେ କଲିକତାରେ ସଭା କରିଥିଲେ । ମୋର ଉତ୍କଟ ଜୀବନ ସଂଗ୍ରାମ ତାଙ୍କୁ ବାଧିଥିଲା ।

ତାଙ୍କର ପ୍ରସ୍ତାବ ଅନୁସାରେ ୰ ଲକ୍ଷ୍ମୀକାନ୍ତ ଚୌଧୁରୀ ୰ ବିଚ୍ଛନ୍ଦ ବାବୁ, ୰ ଆର୍ତ୍ତିବାବୁ ମୋତେ ପ୍ରାଚୀ ପ୍ରେସର ମ୍ୟାନେଜର କଲେ । ଦୁଇ ବର୍ଷ ପରେ ଯେତେବେଳେ ଓଡ଼ିଶା ପ୍ରାଦେଶିକ ଅସ୍ପୃଶ୍ୟତା ନିବାରଣୀ ସମିତିର କାର୍ଯ୍ୟ ଆରମ୍ଭ ହେଲା, ୰ ଗୋପବନ୍ଧୁ ଚୌଧୁରୀ ମୋତେ ଏହି ସମିତିର ସହକାରୀ ସମ୍ପାଦକ କରିନେଲେ । ୰ ଠକ୍କରବାପା ନିଖିଳ ଭାରତ ହରିଜନ ସେବକ ସଂଘର ସାଧାରଣ ସମ୍ପାଦକ ହେଲେ । ଲକ୍ଷ୍ମୀନାରାୟଣ ବାବୁ ଉତ୍କଳ ହରିଜନ ସେବକ-ସଂଘର ଜଣେ କର୍ମଠ ସଦସ୍ୟ ଥିଲେ । ହରିଜନ ଛାତ୍ରମାନଙ୍କ ପାଇଁ କଟକରେ କୈବଲ୍ୟକୁଟୀର ଛାତ୍ରାବାସ ସ୍ଥାପିତ ହେଲା । ମୁଁ ତହିଁର ସୁପରିଣ୍ଟେଣ୍ଡେଣ୍ଟ ହେଲି । ଓଡ଼ିଶାର ଜିଲ୍ଲାମାନଙ୍କରେ ହରିଜନମାନଙ୍କ ସମସ୍ୟା ନେଇ ବୁଲୁଥିଲାବେଳେ ମୁଁ ଲକ୍ଷ୍ମୀନାରାୟଣ ବାବୁଙ୍କୁ ଭେଟୁଥିଲି ଓ ତାଙ୍କର ପରାମର୍ଶ ଗ୍ରହଣ କରୁଥିଲି ।

ଏହା ପରେ ଗାନ୍ଧୀ-ସେବାସଙ୍ଘରେ ମୁଁ ଯୋଗଦେଲି ୧୯୩୭ରେ । ହିନ୍ଦୁସ୍ଥାନ ତାଲିମସଙ୍ଘର ମୌଳିକ ଶିକ୍ଷା ଯୋଜନା ବାରି ରାମଚନ୍ଦ୍ରପୁରଠାରେ ଆରମ୍ଭ ହେଲା । ଲକ୍ଷ୍ମୀନାରାୟଣ ବାବୁ ମୌଳିକ ଶିକ୍ଷା ଯୋଜନାର ସଦସ୍ୟ ଥିଲେ । ଗାନ୍ଧୀ-ସେବାସଙ୍ଘର କାର୍ଯ୍ୟ ଥିଲା—କପାଚାଷ ଓ ଚରଖା ପ୍ରଚଳନ, ଅସ୍ପୃଶ୍ୟତା ନିବାରଣ, ମଧୁମକ୍ଷୀ ପାଳନ, ଖଜୁରି ଗୁଡ଼, ତେଲଘଣା ଆଦି ଗ୍ରାମୋଦ୍ୟୋଗ, ମୌଳିକ ଶିକ୍ଷା, ଗୋପାଳନ ଏବଂ କଂଗ୍ରେସ କମିଟି ଭିତରେ ଗ୍ରାମପଞ୍ଚାୟତ ଅନୁଷ୍ଠାନ । ଲକ୍ଷ୍ମୀନାରାୟଣ ବାବୁ ଚୌଦ୍ୱାର କେନ୍ଦ୍ରରେ ଏସବୁ କରୁଥିଲେ ।

୧୯୪୨ ଭାରତ ଛାଡ଼ ଆନ୍ଦୋଳନରେ ଆମ୍ଭେମାନେ ସମସ୍ତେ ଜେଲ ଗଲୁ । ମୋ ପରି ଅନେକ ଦୁଃସ୍ଥ ରାଜନୈତିକ ବନ୍ଦୀଙ୍କର ଶିଶୁ ସନ୍ତାନ ଓ ପରିବାରବର୍ଗ ଅଶେଷ ଅସୁବିଧାରେ ପଡ଼ି ଲାଞ୍ଛନା ଭୋଗ କଲେ । ଠକ୍କରବାପା ଓ ଲକ୍ଷ୍ମୀନାରାୟଣ ବାବୁଙ୍କ ଚେଷ୍ଟାରେ ବମ୍ବେରେ ଓଡ଼ିଶା ରାଜନୈତିକ ବନ୍ଦୀ ମାନଙ୍କର ପରିବାରବର୍ଗଙ୍କ ସାହାଯ୍ୟ ପାଇଁ ଗୋଟିଏ ପାଣ୍ଠି ସୃଷ୍ଟି ହେଲା । କିନ୍ତୁ ପ୍ରକୃତରେ କ୍ଲେଶ ପାଉଥିବା ପରିବାର କିଏ ଏହା ଖୋଜି ବାହାର କରିବା କଠିନ ଥିଲା । ସରକାରୀ କୃପା ହେତୁ ଡାକଘର ଜରିଆରେ ସେ ସମ୍ବାଦ ପଠାଇ ହେଉ ନ ଥିଲା । ମୁଁ ଜେଲରୁ ଖଲାସ ହେବାମାତ୍ରେ ଏ କାର୍ଯ୍ୟରେ ସାହାଯ୍ୟ କରିଥିଲି ।

ଏହା ପରେ ସରକାର ଓ ସୁବିଧାବାଦୀ ବେପାରୀମାନେ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଯେ ଦାରୁଣ ଦୁର୍ଭିକ୍ଷ ସୃଷ୍ଟି କଲେ ସେ କଥା ଇତିହାସରେ ଭୁଲିବାର ନୁହେଁ । ଦୁର୍ଭିକ୍ଷ ଓ ତଜ୍ଜନିତ ଉତ୍କଟ ବ୍ୟାଧିରୁ ଲୋକଙ୍କୁ ବଞ୍ଚାଇବା ପାଇଁ ଯେ ପ୍ରକାର କାମ କରିବାକୁ ହେବ, ସେଥିପାଇଁ କର୍ମୀର ଅଭାବ ଥିଲା । ମୁଁ ନିତାନ୍ତ ମର୍ମାହତ ହୋଇ ଗୃହ-ଧନ୍ଦାରେ ଲାଗିଥିଲି । ଲକ୍ଷ୍ମୀନାରାୟଣ ବାବୁ ମତେ ସପ୍ତାହକ ମଧ୍ୟରେ ତିନୋଟି ଚିଠି ଦେଇଥିଲେ ମଧ୍ୟ ମୁଁ ଉତ୍ତର ଦେଇ ନ ଥିଲି । ଶେଷରେ ଦିନେ ବର୍ଷାରେ ତିନ୍ତି ତିନ୍ତି ସେ ଆଠମାଇଲ ଦୂର ଚାଲି ଆସି ରାତିରେ ମୋ ଘରେ ପହଞ୍ଚିଲେ ଏବଂ ଚୁପ୍‌ଚାପ ଘର ପିଣ୍ଡାରେ ଶୋଇ ପଡ଼ିଲେ । ପ୍ରତ୍ୟୁଷରେ ତାଙ୍କୁ ଦେଖି ମୁଁ ଅବାକ୍ ହୋଇଗଲି ଏବଂ ନାନା ପ୍ରକାର କଥାବାର୍ତ୍ତା ପରେ ଆମେ ଦୁହେଁ ଜଳେଶ୍ୱର, ବସ୍ତା, ସୋର, ମାର୍କୋଣା ଆଦି ଯିବା ଉଦ୍ଦେଶ୍ୟରେ ଘରୁ ବାହାରିଗଲୁ । ମୋର ପରିବାର ପୋଷଣ ପାଇଁ ମୁଁ ମାସିକ ତିରିଶ ଟଙ୍କା ଦରମା ମାଗିଥିଲି । ସେ ଓଡ଼ିଶା ରିଲିଫ୍ କମିଟିର ସେକ୍ରେଟେରୀ ଥିଲେ । ମୋତେ ମାସିକ ତିରିଶ ଟଙ୍କା ଦରମା ଦେଉଥିଲେ । ପରେ ଅନ୍ୟାନ୍ୟ ମେମ୍ବର-ଙ୍କର ଆପତ୍ତି ହେବାରୁ ଲକ୍ଷ୍ମୀନାରାୟଣ ବାବୁଙ୍କୁ ଏହା ବାଧୁ ଥିଲା । ସେ ମତେ ସବୁ କଥା ପ୍ରାଣ ଖୋଲି କହିବାରୁ ମୁଁ ନିଜେ ତହିଁରୁ ହଟିଯାଇ ଓଡ଼ିଶା ବଣିକ ରିଲିଫ ସମିତିରେ ଯୋଗ ଦେଇ ମାସିକ ଟ ୭୫୲ ଓ ଘର ଖର୍ଚ୍ଚ ଟ ୨୫୲ ଏପରି ଶହେ ଟଙ୍କା ପାଇଲି । ଦୁଇ କମିଟିର ରିଲିଫ କାମକୁ ଠକ୍କରବାପା ପ୍ରଶଂସିତ କରିଥିଲେ । ସେ ବଣିକ ରିଲିଫ ସମିତିର ସଭାପତି ଥିଲେ । ଶ୍ରୀ ଶ୍ୟାମଲାଲ ତାଙ୍କର ସେକ୍ରେଟେରୀ ଥିଲେ । କଟକ ଆସିଲେ ୰ ସୁନ୍ଦର ଦାସଙ୍କ ଘରେ ସେମାନେ ରହୁଥିଲେ ।

ଏହି ଦୁର୍ଭିକ୍ଷ ରିଲିଫ କାର୍ଯ୍ୟରୁ ଓଡ଼ିଶା ଶିଶୁସଦନ, ଆଜିକାଲିର ନାମ ଉତ୍କଳ ବାଲାଶ୍ରମର ଜନ୍ମ । ରମ୍ଭା ଷ୍ଟେସନ ପାଖ ଡାକବଙ୍ଗଳାରେ ଦୁର୍ଭିକ୍ଷ ପ୍ରପୀଡ଼ିତମାନଙ୍କ ପ୍ରତ୍ୟକ୍ଷ ସେବା କରିବା କରିବା ପାଇଁ ଶିଶୁ ବାଳକବାଳିକାମାନଙ୍କୁ ଆଶ୍ରୟ ଦେବା ଦ୍ୱାରା ଶିଶୁ ସଦନର ଜନ୍ମ । ଏଠାରେ ଲଳିତ-ମୋହନ ଘୋଷ କର୍ମୀ ଥିଲେ । ଠକ୍କର ବାପା, ଲକ୍ଷ୍ମୀନାରାୟଣ ସାହୁ ଓ ଶ୍ୟାମସୁନ୍ଦର ମିଶ୍ର ଓଡ଼ିଶା ଶିଶୁ ସଦନର ପ୍ରତିଷ୍ଠା କରି କାଳକାଳକୁ ଏ ଦେଶର ଅସହାୟ ବାଳକ ବାଳିକା-ମାନଙ୍କର ଆଶାଭରସାର ନିଧାନ ହୋଇଅଛନ୍ତି ।

ଦୁର୍ଭିକ୍ଷ ରିଲିଫ କାମ ପରେ ମୁଁ ଇତସ୍ତତଃ ହୋଇ ନାନା କାମ କରିଥିଲି । କୁଷ୍ଠରୋଗୀମାନଙ୍କର ବେଦନା ଉପଲବ୍ଧି କରି ଲକ୍ଷ୍ମୀନାରାୟଣ ବାବୁଙ୍କର ଦରଦୀ ପ୍ରାଣ ବ୍ୟଥିତ ହେଉଥିଲା । ପଣ୍ଡିତ ଗୋବିନ୍ଦଚନ୍ଦ୍ର ମିଶ୍ରଙ୍କର କଳକଳାରେ ବାଇଶ ଏକର ଜମି ଓ ଘୃଷ ଘର ଥିଲା । ବ୍ରିଟିଶ ସାମ୍ରାଜ୍ୟ କୁଷ୍ଠୀସହାୟ ସମିତିରୁ ଦୁଇହଜାର ଟଙ୍କା ଗ୍ରାଣ୍ଟ ଆଣି ଲକ୍ଷ୍ମୀ-ନାରାୟଣ ବାବୁ ଏହି ଜମି ଓ ଗୃଷ ଘର କଳକଳା ସ୍ୱାସ୍ଥ୍ୟ ନିବାସ (ବର୍ତ୍ତମାନ ଲକ୍ଷ୍ମୀନାରାୟଣ କୁଷ୍ଠଧାମ ) ପାଇଁ କିଣିଲେ । ଏ ଅନୁଷ୍ଠାନର ପରିପାଳନ ଓ ପରିବର୍ଦ୍ଧନ ପାଇଁ ମୋତେ ସୁପରିଣ୍ଟେଣ୍ଡେଣ୍ଟ ଭାବରେ ନିଯୁକ୍ତ କଲେ । କଳକଳାରେ ପୋଷ୍ଟ ଅଫିସ ସ୍ଥାପିତ ହେଲା । କେତେବର୍ଷ ପରେ ମୁଁ ଅନୁଷ୍ଠାନ ଛାଡ଼ିଲି ଏବଂ ହିନ୍ଦ୍ କୁଷ୍ଠ ନିବାରଣୀ ସଙ୍ଘକୁ ଅନୁଷ୍ଠାନଟି ଦାନ କଲେ ।

ରମ୍ଭା ଶିଶୁ ସଦନର ପରିଚାଳନା ପାଇଁ ଲକ୍ଷ୍ମୀନାରାୟଣ ବାବୁଙ୍କ ପରାମର୍ଶରେ ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ମୋତେ ସୁପରି-ଣ୍ଟେଣ୍ଡେଣ୍ଟ ଭାବରେ ନିଯୁକ୍ତ କଲେ । ଉତ୍କଳ ବାଲାଶ୍ରମ ଗଠିତ ହେବା ପରେ ରମ୍ଭା ବାଲାଶ୍ରମ ବାରଙ୍ଗକୁ ଉଠି ଆସିଲା । ମୁଁ ବ୍ୟାଧିଗ୍ରସ୍ତ ହୋଇ ସେଠାରୁ ଆସିଲି । ମୋତେ ଦେଖିବା ପାଇଁ ଲକ୍ଷ୍ମୀନାରାୟଣ ବାବୁ ବାରଙ୍ଗ ଡାକ୍ତର ଖାନାକୁ ଆସିଥିଲେ ।

ଟାଙ୍ଗୀ ବିଦ୍ୟାପୀଠର ଶିକ୍ଷା ସପ୍ତାହ ପାଳନ, ବାଳଚର ସଙ୍ଗଠନ, ଛାତ୍ର ସମ୍ମିଳନୀ, ସଙ୍ଗୀତ ସମ୍ମିଳନୀ, ବ୍ରହ୍ମବିଦ୍ୟା ସମିତି ଓ ପାଠଚକ୍ର, ଗୀତା ଓ ତୁଳସୀ ରାମାୟଣ ଆଲୋଚନା, ଭକ୍ତିଜୟନ୍ତୀ ଆଦି ସାହିତ୍ୟିକ ସଭା ସମିତି, ବିବାହ ଉତ୍ସବ, ଶ୍ରାଦ୍ଧ ସଭା, ସମବାୟ ସହଯୋଗ ସମିତି ପ୍ରଭୃତିରେ

ବ ଲକ୍ଷ୍ମୀନାରାୟଣ ବାବୁଙ୍କ ସହିତ ଦେଖାହେଲେ "କିଛି କୁହ, କିଛି ଶୁଣାଅ" କହି ସେ ଜନତା ଆଗରେ ମତେ ଠିଆ କରାନ୍ତି ।

ଲକ୍ଷ୍ମୀନାରାୟଣ ବାବୁଙ୍କ ବିୟୋଗରେ ମୁଁ ମୂରବିହୀନ ହୋଇ ଯାଇଛି । ମୋ' ପୁଅ ଶ୍ରୀମାନ ରାଜେନ୍ଦ୍ର ସହିତ ସେ ଏମ୍. ଏ. (ଇତିହାସ) ପରୀକ୍ଷା ଦେଇ ଅସୀମ ଆନନ୍ଦ ଅନୁଭବ କରିଥିଲେ ଏବଂ ମତେ ତାଙ୍କ କୋମଳ ପ୍ରାଣରେ ବରଦ ଆଶୀର୍ବାଦ ଦେଇଥିଲେ । ରାଜେନ୍ଦ୍ର ତାଙ୍କର ବିୟୋଗ ବାର୍ତ୍ତା ଶୁଣି ମତେ ଲେଖିଥିଲା— "ଆପଣଙ୍କୁ ଓ ବୋଉକୁ ଏ ବିୟୋଗ ବେଶ୍ ବାଧୁଥିବ । ମତେ ଏହା ଆମ ପାରିବାରିକ କ୍ଷତି ପରି ଲାଗୁଛି ।" ମୋ ପିଲାମାନଙ୍କୁ ଦେଖିଲେ ସେ ଅତି ଆନନ୍ଦିତ ହେଉଥିଲେ ।

ତାଙ୍କ କଥା ଭାବିଲାବେଳକୁ ମନରେ କେତେ କଥା ସେ ପଡ଼ିଯାଏ, ପ୍ରାଣ ସେ କେତେ ଛଟପଟ ହୁଏ —ତାହା ଲେଖି ହେବ ନାହିଁ । ସେ ଗୁଣଗ୍ରାହୀ ଓ ଦରିଦ୍ରର ବନ୍ଧୁ ଥିଲେ । ସେ କ୍ଷଣକୋପୀ ଓ ଶ୍ରଦ୍ଧାଳୁ ଥିଲେ । ତାଙ୍କର ଜୀବନ ଦର୍ଶନରେ ଅଭିମାନ କି ଅହଙ୍କାର ନ ଥିଲା । ସେ ଅତି ଦୀନଦୁଃଖୀ ଗ୍ରାମ୍ୟଲୋକଙ୍କଠାରୁ ଜୟପୁର ମହାରାଜା ବିକ୍ରମଦେବ ବର୍ମାଙ୍କ ପର୍ଯ୍ୟନ୍ତ ବିଶାଳ ଧନୀ ବ୍ୟକ୍ତିଙ୍କର ବନ୍ଧୁ ଥିଲେ । ତାଙ୍କର ଧନ ଲୋଭ ନ ଥିଲା । ସେ ସତ୍ୟନିଷ୍ଠ ଓ ଦୃଢ଼ପ୍ରତିଜ୍ଞ ଥିଲେ । ଭାରତ ସେବକ ସମିତିର ସଦସ୍ୟ ଭାବେ ଭତ୍ତା ଓ ବେତନ ବାହାରେ ଆଉ ଯେତେ ଆୟ କରିଥିଲେ, ସେ ସମସ୍ତ ତାଙ୍କ ସମିତିକୁ ଦେଉଥିଲେ । ରୂପରେ ଯେପରି ଡେଙ୍ଗା ଥିଲେ, ମନ ଯେପରି ବିଶାଳ ଥିଲା । ସେ ମଣିଷ ପରି ମଣିଷ ଥିଲେ ।

---

"ପାଦର ଧୂଳି ଅଣରେ ବୋହି ଅଛି ଯେ ଯହିଁ,
ଲଭିବ ମୁଁ ପରମ ଶାନ୍ତି ସେ ଧୂଳି ଶିରେ ବୋହି ।"

—ଲକ୍ଷ୍ମୀନାରାୟଣ

# ମୁଁ କହେ ତା'ର ମରଣ ନାହିଁ

## ନମିତା ଗୃହାର୍ଜୀ

ମରିଛି ବୋଲି କହୁଛ ତାରେ ମରିଛି ବୋଲି କହୁଛ ସଖା
ମର୍ତ୍ତ୍ୟପୁରର ଆଜି ତା'ର ମିଳୁନି ବୋଲି ନୟନେ ଦେଖା ।
ବନ୍ଦ ତା'ର ଚକ୍ଷୁ ଦୁଇ ଫୁଟୁ ନାହିଁ ତା ବଦନେ ବାଣୀ
ଶୁଭୁ ନାହିଁ ତା ବୀଣାର ତାରେ ପୁଲକଭରା ମଧୁ ରାଗିଣୀ ।।
ସାଧକ ସେ ଯେ, ସେବକ ସେ ତ, ତୋଳିଛି ଶତ ମଧୁର ଛନ୍ଦ
ଦୁଃଖ ବିଷ ପିଇଛି ନିଜେ ପରଶି ଜନେ ସେ ମକରନ୍ଦ ।।
ଦୁଃଖେ ଯେହୁ ହୋଇନି ଥକ୍କା ସୁଖେ ଯେହୁ ଯାଇନି ଭାସି
ଏ ଜାତି କାନେ ମୁଗ୍ଧ ତାନେ ଗାଇଲା କୋଟି କବିତା ରାଶି ।।
ପ୍ରେମିକ ସେ ଯେ ଦେଶର ପାଇଁ ନ ଥିଲା ଅଂଗେ ଅବସାଦ
ମୁଟିଛି ସେହୁ ଜୀବନଯାକ ସମାଜସେବା କଠିଣ ବ୍ରତ ।।
ମରଣ ତା'ର ହେବନି ସଖା ! ବିଲୟ ତାର ହେବନି କେବେ ?
ମୃତ୍ୟୁ ତା'ର ହୋଇଛି ବୋଲି ମୁଞ୍ଚ ନାହିଁ ଅଶ୍ରୁ ତେବେ ।।
ସାଧିବା ପାଇଁ ଆହୁରି ତପ, ଗାଇବା ପାଇଁ ଆହୁରି ଗୀତ
ପାଇବା ପାଇଁ ବହୁତ ଜ୍ଞାନ ସାଧକ ହେଲା ସାଧନାରତ ।।
ଢାଳନି କେହି ଅଶ୍ରୁ ତହିଁ ବିଳାପ ଆଉ କରନି କେହି
କିଏ ସେ କହେ ମରିଛି ବୋଲି "ମୁଁ କହେ ତାର ମରଣ ନାହିଁ ।।"

---

# ଲକ୍ଷ୍ମୀନାରାୟଣ

## ବୈକୁଣ୍ଠନାଥ ପଟ୍ଟନାୟକ

ମଲ୍ଲିକା ମାଳତୀ ଭଳି ସ୍ନିଗ୍ଧ ତୁମ ହାସ,
ପ୍ରାଣେ ପ୍ରାଣେ ସେହି ଭଳି ଢାଳିଛ ସୁବାସ ।
ହେ ଅକ୍ଲାନ୍ତ କର୍ମଯୋଗି ! ପୂଜିତ ସର୍ବଥା,
ଭୁଲେ କାହା ମନେ ଅବା ଦେଇଥିବ ବ୍ୟଥା ?
ପୋଛୁଚ ବ୍ୟଥିତ ଅଶ୍ରୁ, ପ୍ରୀତି ଅନୁପମ,
ଯାହା ଶେଷେ ଲଭ ଶାନ୍ତ ବନ୍ଧୁ ନମୋନମ ।

---

# ନ ଥିଲେ ସଂସାରୀ

## ଗୋଦାବରୀଶ ମହାପାତ୍ର

ଅତି ଭଦ୍ରଲୋକ ଜଣେ ଗଲେ କାହିଁ ଚାଲି,
ଘରଅଡ଼େ ଶୁଣାଯାଏ ଏଇ କଥା ଖାଲି ।
କାହିଁ ଦୁଃଖୁ ବସି ଡାକେ ପ୍ରସାର ତା କର,
ସେବା ପାଇଁ ରୋଗୀ ଡାକେ—ମୋତେ ରକ୍ଷା କର ।
ସେ କି ଆଉ ଫେରିବେନି ଶୁଭେ ଅନୁକ୍ଷଣ,
ଫେରି ଆସିବେନି ଆଉ ଲକ୍ଷ୍ମୀନାରାୟଣ ।
ଗରିବରେ ଦେଇ ଆଶା ଦେଖାଇଲେ ପଥ,
ଉଠାଇଲେ ପତନରୁ ତାଙ୍କ ଅବିରତ ।
ମାନ ଅପମାନେ ଜାର ସମଦୃଷ୍ଟି ସାର,
ଦେଲେ ଅବହେଳିତଙ୍କୁ କେତେ ଉପହାର ।
ଏ ଜାତିର ବେଦୀମୂଳେ ସେ ଯେ ତପସ୍ୱୀ,
ସଂସାରରେ ଥାଇ ସେହୁ ନ ଥିଲେ ସଂସାରୀ ।

---

# ଲକ୍ଷ୍ମୀନାରାୟଣ

## ବାଞ୍ଛାନିଧି ଦାସ

ଲକ୍ଷ୍ମୀନାରାୟଣ !    ଲକ୍ଷ୍ମୀନାରାୟଣ !
ତୁମେ ସେବାମନ୍ତ୍ର ଜପାମାଳ,
ତୁମେ ଥିଲ ଏକା    ତୁମ ପରି ଜଣେ,
ଜାତକାଳ କାଳ ଧ୍ୱଂସକାଳ

୧

ଧର୍ମ ବୋଲି ସଦା    ଜାଣିଥିଲ କିଛି
କର୍ମ କରିଯିବା ପର ପାଇଁ;
ଖ୍ୟାତି ଅପଖ୍ୟାତି    ହାନିଲାଭ କେତେ
ତୁମକୁ ସେ କଥା ଜଣା ନାହିଁ ।
ସେବା, ସେବା, ସେବା,    ନେବା ଦେବା ନୁହେଁ,
ତନୁର ସଳିତା ଜାଳି ଜାଳି ।

୨

'ଶିଖ, ଲେଖ, ପଢ଼'—    କଥା କୁହା ନୁହେଁ
ଲେଖା ପଢ଼ା ଶିଖା ଶେଷତଳେ,
କଥା କାମେ ତାଳ    ମିଳାଇ ଥିଲଟି
ବଳି ଦେଇ ମନ୍ଦ ଚିନ୍ତା ଦଳ
କିଏ କି କହିବ    ନ ଥିଲା ଶୋଚନା
ନେସଳୁଆ ବାଟ ଥିଲ ଭୁଲି ।

୩

ସାଦାସିଧା ସଫା    ସରଳ ସତେଜ,
ଜୀବନଟା ନୁହେଁ ମଳିଧୂଳି,
ଅହମିକା ହୀନ    ଆବେଗ ଉଚ୍ଛ୍ୱାସ
ଜ୍ଞାନ-ବଇରାଗ୍ୟ ସେବାଧୂଳି
କବି, ବାଗ୍ମୀ, ପ୍ରାଜ୍ଞ    ସାଧକ ମଣିଲ
ଜୀବନଟା ଖୁବ ଶିଖା ଖୋଲି ।

୪

ଏତେ ଖୋଲାମନ    ପରାଣ ନେଇ ଯା
କଥା କହୁ କହୁ ଗଲ କାହିଁ !
ଦେହ ସିନା ଗଲ    ସେ ଖୋଲା ପ୍ରାଣର
ଯୁବ-ଉନ୍ମାଦନା ଯିବ ନାହିଁ
ଜାତି-ଜୟଯାତ୍ରା    ପଥେ ଉଠୁ ତେଜି
ଶତ ତ୍ୟାଗପୂତ ବର୍ତ୍ତି ଜାଳି ।

———



# ଲକ୍ଷ୍ମୀନାରାୟଣଙ୍କ ସମାଜ ଚିନ୍ତା

( "ସହକାର"ରେ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଲିଖିତ ବିଭିନ୍ନ ସମ୍ପାଦକୀୟରୁ କିୟଦଂଶ )

ସହକାର—ପ୍ରଥମ ବର୍ଷ ( ୧୯୨୦-୨୧ ମସିହା ) ଜ୍ୟେଷ୍ଠ ୧୩୨୮ ୨ୟ ସଂଖ୍ୟା ପୃ୧୮ ।

"ବର୍ତ୍ତମାନ ଆମ୍ଭର ପ୍ରୟୋଜନ କଣ ? ବିଜ୍ଞାନଯୁକ୍ତ କୃଷି, ଖଣିଆଦି କାର୍ଯ୍ୟର ପ୍ରଚାର ନିଜ ମଧ୍ୟରେ ସହକାରିତା । ଏ ସବୁ ଯେତେଦିନ ପର୍ଯ୍ୟନ୍ତ ହୋଇପାରି ନାହିଁ, ସେତେଦିନ ପର୍ଯ୍ୟନ୍ତ ଇଂରେଜଙ୍କୁ ଗାଳିଦେବା ଫଳ ନାହିଁ । ଜାପାନ ଆସିଲେ ମଧ୍ୟ ଲୁଟିବ । ଆମେରିକା ଆସିଲେ ମଧ୍ୟ ଲୁଟିବ; ଯେ ଆସିବ ସେ ଲୁଟିବ । ଆତ୍ମରକ୍ଷା ପାଇଁ ଏବଂ ନିଜ ନିଜର ସୁଖ ସୌଖ୍ୟ ବୃଦ୍ଧି ପାଇଁ କିଏ ବ୍ୟସ୍ତ ନୁହେ ? ଆମ୍ଭେମାନେ ଘୋର ନିଦ୍ରାରେ ପଡ଼ିଥିଲୁଁ । ଆମ୍ଭମାନଙ୍କର ସମାଜପଦ୍ଧତି ଆମ୍ଭମାନଙ୍କର ଗତିବିଧିକୁ ଯେପରି ଭାବରେ ନିୟନ୍ତ୍ରିତ ପ୍ରବନ୍ଧ କରି ରଖିଥିଲା ସେଥିରେ ଆମ୍ଭେମାନେ ଆଜି ପୃଥିବୀର ନୂତନ ଜୀବନ ସଂଗ୍ରାମରେ ପଡ଼ି ନିଜକୁ ରକ୍ଷାକରି ପାରୁନାହୁଁ ଏହାହିଁ ସତ୍ୟ କଥା । କୃଷି, ବାଣିଜ୍ୟର କିପରି ଉନ୍ନତି ହେବ, ଦେଶରେ Industry କିପରି ଅଧିକ ଅଧିକ ଚାଲିବ ଏହି ଦିଗରେ ମନ ଫେରାଇବାକୁ ହେବ । ଏପରି କିଛି ସମୟ ଗଲେ ଭାରତର ବର୍ତ୍ତମାନ ଶୋଚନୀୟ ଦୁରବସ୍ଥା ଦୂରୀଭୂତ ହେବ । ବୃଥା ହାୟ ହାୟ କଲେ କିଛି ହେବ ନାହିଁ । ଯୁବକବୃନ୍ଦ ! ଉଠି ବସ; ଉଠ, କାର୍ଯ୍ୟରେ ଲାଗିଯାଅ । ବୃଥା ଭାବନାରେ କିଛି ଫଳ ନାହିଁ ।"

× × ×

ସହକାର ପ୍ରଥମ ବର୍ଷ ୧୩୨୯ ପୃ୧୫

"ଯେଉଁମାନେ ମହାତ୍ମାଗାନ୍ଧୀଙ୍କ ସହିତ ଏକମତ ଯେ ଅସ୍ପୃଶ୍ୟତା ହିନ୍ଦୁ ଜାତିର ମହାକଳଙ୍କ ଏବଂ ଯେଉଁମାନେ ଏହି ଅସ୍ପୃଶ୍ୟତା ନ ମାନି ଚଳିବାକୁ ଦୃଢ଼ସଙ୍କଳ୍ପ ସେମାନେ ମହାତ୍ମାଗାନ୍ଧୀଙ୍କୁ ତାଙ୍କର ଏହି କାର୍ଯ୍ୟରେ ସାହାଯ୍ୟ କରନ୍ତୁ । ଆମ୍ଭେମାନେ ସହକାରରେ ସେମାନଙ୍କ ନାମ ପ୍ରକାଶ କରିବାକୁ ପ୍ରସ୍ତୁତ ଅଛୁ । ଯେଉଁମାନେ ସମାଜରୁ ଏହି ଅସ୍ପୃଶ୍ୟତା ଦୋଷ ଦୂର କରିବାପାଇଁ ପ୍ରସ୍ତୁତ, ଯେଉଁମାନେ ଏହି ଦିଗରେ କାର୍ଯ୍ୟ କରିବେ ସେମାନେ ଜାତିଚ୍ୟୁତ ହୋଇ ପାରନ୍ତି, ସାମାଜିକ ନାନା କଷ୍ଟରେ ପଡ଼ି ପାରନ୍ତି, କିନ୍ତୁ ଏହି କଷ୍ଟ ସହନ ବ୍ୟତୀତ ସମାଜରୁ ଅସ୍ପୃଶ୍ୟତା ଦୂର କରିବାର ଆଉ ସହଜ ଉପାୟ ବର୍ତ୍ତମାନ ନାହିଁ । ଆମ୍ଭେମାନେ ଆଶାକରୁ ଶିକ୍ଷିତ ସତ୍‌ପ୍ରବୃତ୍ତିକ ଯୁବକମାନେ ଆମ୍ଭମାନଙ୍କୁ ଏହି ଦିଗରେ ପ୍ରଚୁର ସାହାଯ୍ୟ ପ୍ରଦାନ କରିପାରିବେ ।"

× × ×

ସହକାର—ପ୍ରଥମ ବର୍ଷ ୯ମ ଓ ୧୦ମ ସଂଖ୍ୟା ପୃ୪୭

"କିନ୍ତୁ ବର୍ତ୍ତମାନ ଆମ୍ଭେମାନେ କ'ଣ କରି ଆମ୍ଭମାନଙ୍କର ସ୍ତ୍ରୀମାନଙ୍କୁ ରଖିଅଛୁ, ସେମାନଙ୍କୁ ଜ୍ଞାନ, ବୁଦ୍ଧି, ବିଦ୍ୟା ସ୍ୱାସ୍ଥ୍ୟ ସୌନ୍ଦର୍ଯ୍ୟ ସମସ୍ତଠାରୁ ଦୂରରେ ରଖିଅଛୁ । କେବଳ ଦେହରେ ଅଳଙ୍କାର ଲଗେଇ ଆମ୍ଭର ସ୍ତ୍ରୀମାନେ ସୌନ୍ଦର୍ଯ୍ୟଗୁଣରେ ଭୂଷିତା ବୋଲି ଦେଖାଇ ହେଲେ ବିଶ୍ୱାସ ହେବ କାହିଁକି ? ମନ ମାନିବ କାହିଁକି ? ସେହି ସୌନ୍ଦର୍ଯ୍ୟ ଠିକ୍ ସୌନ୍ଦର୍ଯ୍ୟ ଯେଉଁଠାରେ ଆତ୍ମା, ମନ, ବୁଦ୍ଧି ତଥା ଶରୀର ପୁଷ୍ଟି ଓ ଉତ୍କର୍ଷ ଲାଭ କରିଅଛି ।"

× × ×



# ଓଡ଼ିଆପ୍ରାଣ ଲକ୍ଷ୍ମୀନାରାୟଣ

ଏହି ଦେଶର ମାଟିରେ ମୁହିଁ ମରିଯିବି ଯେବେ
ଏହି ଦେଶର ମାଟିରେ ମୁହିଁ ରହିବି ଗଛ ହୋଇ ।
ଏହି ଦେଶର ଜଳ          ଏହି ଦେଶର ବାୟୁ
ଏହି ଦେଶର ଜନ          ଏହି ଦେଶର ହେତୁ
ଅନ୍ୟାୟୀ ବିଶ୍ୱାସଘାତୀ          ଏ ଦେଶରେ ନ ରହୁ ।
ଏହି ଦେଶର ମାଟିରେ ମୋର ଦେହର ମାଟି ମିଶୁ,
ଏହି ଦେଶର ଓଡ଼ିଶାର ଓଡ଼ିଆ ପୁଅ ସଙ୍ଗେ ସେ ରହୁ ।
ଏହି ଦେଶର ଫଳ ଫୁଲ          ମୋହର ଲାଗୁ ଭଲ ।
ଏହି ଦେଶର ଚିତ୍ର ବନାନୀ,          ଦିଶୁ ମୋ ଆଖିରେ ଭୁବନମୋହିନୀ ।
ଏହି ଦେଶର ଏହି ଦେଶର ଓଡ଼ିଆ ପୁଅ ମୁହିଁ,
ସାଗର ପାରି ଏକେଲା ହୋଇ ବୋଇତ ନେବି ବାହି ।
ଏହି ଦେଶର ଶିଳ୍ପ ସାହିତ୍ୟ
କରିବି ମୁହିଁ ମୋର ଅମୃତ ।
ଜଗତେ ଯହିଁ ଯିବି ଦେଖାଇବି ତହିଁ
ଦେଖ ଏ ଦେଶର ଗରିମା ଗରିମା ସତ ।

—ଲକ୍ଷ୍ମୀନାରାୟଣ, (ମଧୁରେଖା ପୃ-୭୧)

ପଣ୍ଡିତ ଲକ୍ଷ୍ମୀନାରାୟଣ ସାହୁ ଏତେକାଳ ପରେ ଏବେ ଚାଲିଗଲେ । ମୁଁ ପିଲାଦିନୁ ତାଙ୍କୁ ଯାହା ଜାଣେ ସେଥିରେ ଦେଶର ଦୁଃସ୍ଥ ଓ ଦୁର୍ଗତ ସନ୍ତାନମାନଙ୍କ ପ୍ରତି ତାଙ୍କର ଯେ ସହାନୁଭୂତି ଦେଖିଛି, ତାହା ଆଉ ଭୁଲିପାରିବି ନାହିଁ । ପୁରୀଜିଲ୍ଲା ଡଣ୍ଡରଠାରେ ସେ ୧୯୨୭ରେ ଦୁର୍ଭିକ୍ଷ ପୀଡ଼ିତ ଅନାହାରକ୍ଳିଷ୍ଟ ପିଲାମାନଙ୍କୁ କାନ୍ଧରେ ବସାଇ ଘୁରି ନେବାର ମୋର ମନେପଡ଼ୁଛି । ସେ ପିଲାଙ୍କର ଦେହ ପୁଣି କ୍ଳେଦପୂର୍ଣ୍ଣ ଓ ଅତି ବୀଭତ୍ସ ଥିଲା । ସେ ହିମସ୍ତଙ୍କର ସେ ହେଉଛନ୍ତି ବାପା ଓ ଭାଇ ପରି । ତା ପରେ ଦେଶର ସାହିତ୍ୟରେ ତାଙ୍କର ଦୁର୍ଗତମାନଙ୍କ ପ୍ରତି ଯେ ଏକାତ୍ମତା ପ୍ରକାଶ ପାଇଥିଲା, ତା ବି କହିବାର ନୁହେଁ । ଏ ମଧ୍ୟରେ ଶେଷ ଜୀବନଆଡ଼କୁ ଜୟପୁର ଅନାର୍ଯ୍ୟମାନଙ୍କ ବିଷୟରେ ସେ ଖଣ୍ଡିଏ ବହି ଲେଖିଛନ୍ତି । ଯେ ପୁସ୍ତକ ଯେ ଦେଖିଥିବେ, ସେ ଜାଣନ୍ତି, ବାବୁ ଲକ୍ଷ୍ମୀନାରାୟଣ କି ଶ୍ରେଣୀର ଲୋକ ଥିଲେ । ତାଙ୍କର ଲେଖା ବରାବର ତାଙ୍କ କଥା ପରି, ସେଥିରେ ସମସ୍ତେ ମୁଗ୍ଧ ଓ ବିସ୍ମିତ ହେବାର କଥା । ସଭାମାନଙ୍କରେ ତାଙ୍କୁ କହିବାକୁ ଛାଡ଼ିଦେଲେ ସେ ସେହିପରି ଲୋକମୁଗ୍ଧକର ଓ ବିସ୍ମୟକର କଥା କହିବାକୁ ଆରମ୍ଭ କରନ୍ତି । ସେ କେବେ ବିଷୟର ବସ୍ତୁ ଛାଡ଼ି କଳ୍ପିତ କଥା କହିବାର ମୁଁ ଦେଖିନାହିଁ ।

ସେ ବଡ ଉଚ୍ଚ ଦରର ଲୋକ ଥିଲେ । ଇତି

**ନୀଳକଣ୍ଠ ଦାସ**

କଟକ, ତା '୯।'।୭୪

---

ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ବାବୁଙ୍କ ବିଷୟରେ ଦୁଇପଦ ଲେଖିବା କଥା ଭାବିବାବେଳେ ତାଙ୍କ କାର୍ଯ୍ୟର ବହୁତ କଥା ମନରେ ପଡ଼ୁଛି । ତାହାସବୁ ମୋ ପରି ଲୋକ ପକ୍ଷରେ ଲେଖିବା ସମ୍ଭବ ନୁହେଁ । ତାଙ୍କ ସଦଗୁଣ ଯେପରି ଓଡ଼ିଶାରେ ସର୍ବଜନବିଦିତ, ସେହିପରି ତାଙ୍କ ସେବା ପାଇବାର ସୌଭାଗ୍ୟ ମଧ୍ୟ ଧନୀ ଗରିବ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ମିଳିଛି । ଯେତେବେଳେ ଯେଉଁ କାମ ପାଇଁ ଯେଉଁଠାରେ ତାଙ୍କ ଉପସ୍ଥିତି ଆବଶ୍ୟକ ବୋଲି ସେ ଉପଲବ୍ଧି କରିଛନ୍ତି ସେତେବେଳେ ସେ ତିଳେମାତ୍ର ଇତସ୍ତତ ନ ହୋଇ ଓ ସ୍ଥାନ, କାଳ, ପାତ୍ରର ବିବେଚନା ନ କରି ସେଠାରେ ଉପସ୍ଥିତ ହେବା ତାଙ୍କର ସ୍ୱଭାବ ଥିଲା ।

୧୯୩୦ ମସିହାରେ ସତ୍ୟାଗ୍ରହ ଆନ୍ଦୋଳନ ବେଳେ ବାଲେଶ୍ୱର ଜିଲ୍ଲାର ଶ୍ରୀଜଙ୍ଗ ଗାଁରେ ସରକାର ପିଉନିଟିଭ ପୋଲିସ ବସାଇଲେ । ସେ ଅଞ୍ଚଳରେ ଲୋକଙ୍କ ଭିତରେ ଆତଙ୍କ ସୃଷ୍ଟି ହେଲା । ସେଠା ଖବର ବାହାର ଲୋକଙ୍କ ପାଖରେ ପହଞ୍ଚିବା ଦୁରୂହ ବ୍ୟାପାର ହୋଇଥିଲା । ସେତେବେଳେ ପ୍ରଥମେ ଲକ୍ଷ୍ମୀନାରାୟଣ ବାବୁହିଁ ସେଠାକୁ ଯାଇ ସେଠାକାର ଅବସ୍ଥା ସ୍ୱଚକ୍ଷୁରେ ଦେଖି ଆସି ସର୍ବସାଧାରଣରେ ପ୍ରକାଶ କରିଥିଲେ । ଏହିପରି ନାନାଭାବରେ ବହୁ କାର୍ଯ୍ୟ ସେ ତାଙ୍କ ଜୀବନରେ କରି ଯାଇଛନ୍ତି ।

ତାଙ୍କ ନଶ୍ୱରଦେହ ସିନା ଆମ ଭିତରୁ ଚାଲିଯାଇଛି, ଆମ ସ୍ମୃତିପଟରେ ତାଙ୍କ ସଦ୍‌ଗୁଣ ଚିରଦିନ ପାଇଁ ରହିବ । ତାହାର ବିକାଶ ଯଦି ସମସ୍ତେ ନିଜ ମଧ୍ୟରେ କରିବାକୁ ଚେଷ୍ଟା କରିବା ଏବଂ ଦେଶର ଭାବୀ ବଂଶଧରମାନେ ଯଦି ତାଙ୍କ ସଦ୍‌ଗୁଣର ଅଧିକାରୀ ହେବେ, ତେବେ ବର୍ତ୍ତମାନ ଯୁଗ ପାଇଁ ଯାହା ଅତି ପ୍ରୟୋଜନ ତାହା ପୂର୍ଣ୍ଣ ହେବ । ତାହାହିଁ ସ୍ୱର୍ଗୀୟ ଆତ୍ମା ପାଇଁ ଯଥାର୍ଥ ସ୍ମୃତିରକ୍ଷା ।

**ରମା ଦେବୀ**

---

ଲକ୍ଷ୍ମୀନାରାୟଣ ବାବୁ ନିଜ ପାଇଁ ନିଜ ହାତରେ ଇତିହାସରେ ଏକ ବିଶେଷ ସ୍ଥାନ ଲେଖି ଯାଇଅଛନ୍ତି । ଏକ ଯୁଗସ୍ରଷ୍ଟା ଭଳି ଓଡ଼ିଶାକୁ ଯେତେବେଳେ କେହି ପଚାରୁ ନ ଥିଲେ, ଓଡ଼ିଆ ଲୋକଙ୍କ ଭିତରେ ଯେତେବେଳେ ଓଡ଼ିଶା ବାହାର ବୋଇଲେ ବିଦେଶ ବୋଲି ଧାରଣା ଥିଲା, ସେ ସାହସ କରି ଏକ ନିଖିଳ ଭାରତ ଅନୁଷ୍ଠାନରେ ଯୋଗଦେଲେ ଏବଂ ଦେଶସେବା ଲାଗି ନିଜର ଜୀବନ ଉତ୍ସର୍ଗ କଲେ । ତାଙ୍କପରି ସାଧୁ, ସଚ୍ଚୋଟ, ନିଷ୍କପଟ, ସରଳ, ସ୍ପଷ୍ଟବାଦୀ, ନିର୍ଭୀକ ଓ କଷ୍ଟସହିଷ୍ଣୁ ଲୋକ ବିରଳ । ଓଡ଼ିଶା ତଥା ବାହାରର ବହୁ ବିଶିଷ୍ଟ ଲୋକଙ୍କ ସମ୍ପର୍କରେ ଆସିବାର ସୁଯୋଗ ମୁଁ ପାଇଛି; ମାତ୍ର ତାଙ୍କଭଳି କାହାରିକି ଦେଖିନାହିଁ । ଓଡ଼ିଶାର ସାଧାରଣ ଜୀବନର ଇତିହାସ ଗତ ୫୦ ବର୍ଷର କେହି ଯଦି ପୂର୍ଣ୍ଣଭାବରେ ଲେଖିବାକୁ ଉଦ୍ୟମ କରେ, ତେବେ ଦେଖିବ ସାମାଜିକ, ରାଜନୈତିକ ଓ ସାହିତ୍ୟିକ ପ୍ରତ୍ୟେକ କ୍ଷେତ୍ରରେ ଲକ୍ଷ୍ମୀନାରାୟଣ ବାବୁଙ୍କର ଦାନ ରହିଛି ଏବଂ କେତେକ କ୍ଷେତ୍ରରେ ସେ ଅଗ୍ରଣୀ, ପଥପ୍ରଦର୍ଶକ ।

**ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଏମ୍. ପି.**

କାଲି ଖବର କାଗଜରେ ପଢ଼ିଲି—ସାହୁଜୀଙ୍କର ଅବସ୍ଥା ସଙ୍କଟାପନ୍ନ । ଆଜି ଖବର କାଗଜ ଦେଖିଲିବେଳକୁ ସେ ଇହଜଗତରୁ ବିଦାୟ ନେଇ ଯାଇଛନ୍ତି ।

ମାଆଙ୍କୁ ମୁଁ କଣ ସାନ୍ତ୍ୱନା ଜଣାଇବି, କିଛି ବୁଝି ପାରୁ ନାହିଁ । ଗଲବର୍ଷ ଏହି ସମୟରେ ଭୁବନେଶ୍ୱରରେ ବାପା ମାଆଙ୍କ ସଙ୍ଗେ ଦେଖା ହୋଇଥିଲା । ମାଆଙ୍କର ସ୍ୱାସ୍ଥ୍ୟ ଭଲ ନ ଥିଲା । ପରେ ବାପାଙ୍କଠାରୁ ଚିଠି ପାଇଥିଲି; କିନ୍ତୁ ଇଚ୍ଛା ଥାଇ ମଧ୍ୟ ଦେଖା ହୋଇ ପାରିଲା ନାହିଁ ଏ ମଝିରେ କେବେ । ମୁଁ ତ କଟକ ଯାଇ ପାରୁ ନାହିଁ । ଯାହାହେଉ ମାଆଙ୍କୁ ମୋର ସମବେଦନା ଜଣାଇବ ।

ଶ୍ରଦ୍ଧାକର ସୂପକାର
ସମ୍ବଲପୁର

———

ଲକ୍ଷ୍ମୀନାରାୟଣ ସାହୁ ନାହାନ୍ତି ଏ ଖବର ବଡ଼ ଦୁଃଖ ଓ ଦୁଃଖଦାୟକ । ଏହା ସଂସାରର ନିୟମ । ତଥାପି ସହ୍ୟ ନ କରି-ହେଲେ ମଧ୍ୟ ସହ୍ୟ କରିବାକୁ ପଡ଼ିବ । ତାଙ୍କ ଭଳି ନୀରବ, ନିଷ୍କପଟ, କର୍ମନିଷ୍ଠ, ସାହିତ୍ୟିକ ଓ ସମାଜସେବୀ ଓଡ଼ିଶାରେ ବିରଳ । ମୋର ଭଗବାନଙ୍କଠାରେ ପ୍ରାର୍ଥନା ସେହି ମହାତ୍ମାଙ୍କ ଆତ୍ମାର ସଦ୍‌ଗତି ବିଧାନ କରନ୍ତୁ ।

ଲୋକେନ୍ଦ୍ରପ୍ରସାଦ ବାବୁ
ଭବାନୀ ପାଟଣା

———

ଶ୍ରଦ୍ଧେୟ ଲକ୍ଷ୍ମୀନାରାୟଣ ବାବୁଙ୍କ ଦେହାନ୍ତ ସମ୍ବାଦ ପାଇ ଏଠି ଆମେ ସମସ୍ତେ ଅତ୍ୟନ୍ତ ବ୍ୟଥିତ ହୋଇଛୁ—ତାଙ୍କର ମୃତ୍ୟୁ ତ ଓଡ଼ିଶାର ଏକ ଅପୂରଣୀୟ କ୍ଷତି, ତା ଛଡ଼ା ମୁଁ ତାଙ୍କଠାରୁ ଯେଉଁ ବ୍ୟକ୍ତିଗତ ସ୍ନେହ ପାଇଛି, ସେ ଦୃଷ୍ଟିରୁ ମୋ ଜୀବନରେ ଏହା ଏକ ବିରାଟ କ୍ଷତି ।

ଦେବୀପ୍ରସନ୍ନ ପଟ୍ଟନାୟକ
ବିଶ୍ୱଭାରତୀ ଓଡ଼ିଆ ବିଭାଗ
ଶାନ୍ତିନିକେତନ

———

ଗତ ୧୯୬୧-୬୨ ମସିହାରେ ପଦ୍ମଶ୍ରୀ ସାହୁ ଏହି ସାହିତ୍ୟ ସଂସଦର ସଭାପତି ଥିଲେ । ଓଡ଼ିଶାର ନୂଆ ରାଜଧାନୀର ଆମେ କେତେଜଣ ଯୁବକ ମିଶି ଓଡ଼ିଆ ସାହିତ୍ୟର ସୃଷ୍ଟି, ଆଲୋଚନା, ପ୍ରକାଶନା ଆଦି ପାଇଁ ଯେଉଁ କ୍ଷୀଣ ଉଦ୍ୟମ କରି ଆସିଛୁଁ, ତା ମୂଳରେ ସ୍ୱର୍ଗତ ସାହୁଙ୍କ ପ୍ରେରଣା ଆମମାନଙ୍କୁ କର୍ତ୍ତବ୍ୟ-ପଥରେ ଆଗେଇବାର ଯଥେଷ୍ଟ ଉତ୍ସାହ ଦେଇଛି । ତାଙ୍କ ସହ ବ୍ୟକ୍ତିଗତ ସମ୍ପର୍କରେ ଆସି ଯେଉଁ ଅନୁଭୂତି ଅର୍ଜନ କରିଛି, ସେଥିରୁ ଦୁ'ପଦ ଆପଣଙ୍କୁ ଜଣାଇବାର ଲୋଭ ସମ୍ବରଣ କରି ପାରୁନି ।

ସ୍ୱର୍ଗତ ସାହୁ ଯେତେବେଳେ ସାହିତ୍ୟ ଏକାଡେମୀର ସଭାପତି ଥିଲେ । ତାଙ୍କର ଇଉନିଟ ଦୁଇ (ଅଶୋକ ନଗର)ରେ ବସାଘର ଥାଏ । ସେଇଠି ବି ତାଙ୍କର ଅଫିସ ହୁଏ । ପ୍ରତିଦିନ ମୁଁ ପ୍ରାୟ ଯାଏ । ଯେତେବେଳେ କିଛି ଲେଖୁଥିବେ କିମ୍ବା କାହାକୁ ଡାକୁଥିବେ । ତାଙ୍କର ଲେଖା ଅବିରାମ ଚାଲେ । ଗଲେ ଖୁବ ଆଗ୍ରହରେ ପଢ଼ାଇ ଶୁଣାନ୍ତି ତାଙ୍କ ଲେଖାଗୁଡ଼ିକ । ଜୀବନରେ ଯାହା ଲେଖି ଯାଇଥିଲେ ସେଗୁଡ଼ିକ ମୁଦ୍ରିତ ଆକାରରେ ଦେଖିବାର ତାଙ୍କର ଖୁବ ଆଗ୍ରହ ଥିଲା । ମୁଁ କେତେଖଣ୍ଡି ବହି ପ୍ରେସରେ ଛପାଇ ଆଣି ଦେବାକୁ ତାଙ୍କଠାରୁ ନିର୍ଦ୍ଦେଶ ପାଇଥିଲି ।

ସମୟାନୁବର୍ତ୍ତିତା ତାଙ୍କ ଜୀବନର ଗୋଟିଏ ବଡ଼ ଲକ୍ଷଣ । ସେଦିନ ବର୍ଷା ହେଉଥିଲା । ଜୁଲାଇ ୨୭ ତାରିଖ ପଣ୍ଡିତ ଗୋଦାବରୀଶ ଶ୍ରାଦ୍ଧସଭାରେ ସଭାପତିତ୍ୱ କରିବାକୁ ତାଙ୍କୁ ନିମନ୍ତ୍ରଣ କରି ଆସିଥିଲି । ଠିକ୍ ୬ଟାବେଳକୁ ଟ୍ୟାକ୍ସିଟିଏ ଡାକି ସେ ପ୍ରସ୍ତୁତ ହୋଇଥିଲେ । ମୁଁ ଗଲେ ତାଙ୍କର ଆସିବା କଥା, ମାତ୍ର ୧୫ ମିନିଟ ଡେରିରେ ମୁଁ ପହଞ୍ଚି, ପହଞ୍ଚୁ ସେ କହିଲେ —"ତୁମର ୧୫ ମିନିଟ ଡେରି ହୋଇଗଲା, ହଉ ଚାଲ", ସେ କୁଆଡ଼େ ଗଲେ ଶ୍ରୀମତୀ ସାହୁ ପାଖେ ପାଖେ ଥାନ୍ତି । ଶ୍ୱାସ ଔଷଧର ବ୍ୟାଗ୍‌ଟି ବି ପାଖରେ ଥାଏ । ମିଟିଂରେ ପହଞ୍ଚିଲେ । ନିତ୍ୟାନନ୍ଦ ମହାପାତ୍ର ଓ ସେତେବେଳର ପଞ୍ଚାୟତ ମନ୍ତ୍ରୀ ଲକ୍ଷ୍ମୀପ୍ରସାଦ ମିଶ୍ର ଆସିଥିଲେ । ନିର୍ଦ୍ଦିଷ୍ଟ ସମୟର ଟିକିଏ ବାହାରେ ବକ୍ତୃତା ଦେଉ ଦେଉ ନିତ୍ୟାନନ୍ଦ ବାବୁଙ୍କ ପଛରୁ ଟାଣି ବସାଇ ଦେଲେ । ଅନୁଷ୍ଠାନ ସମ୍ପାଦକ ଭାବେ ମୁଁ ଧନ୍ୟବାଦ ଦେଲି—ପଦ୍ମଶ୍ରୀ ସାହୁ ତାଙ୍କର ଏ ଦୁର୍ବଳ ଓ ବୃଦ୍ଧାବସ୍ଥାରେ ତାଙ୍କର ବହୁ ମୂଲ୍ୟବାନ୍ ସମୟ ନଷ୍ଟ କରି ଆସି ......ଏତିକି କହୁ କହୁ ମଝିରେ ସେ ବାଧାଦେଇ କହିଲେ ଯେ, "ସମୟ ନଷ୍ଟକରି ଆସିଛି ବୋଲି କହିଲେ ମୁଁ ଆଉ କେବେ ଆସିବି ନାହିଁ । ଗୋଦାବରୀଶ ବାବୁଙ୍କ ଶ୍ରାଦ୍ଧସଭାକୁ ମୁଁ ଆସିଛି, ଏଥିରେ ସମୟ ନଷ୍ଟ କମିତି ହେଲା ?"

ସେ ବହୁଦର୍ଶୀ ଥିଲେ—ଜୀବନର ସକଳ ଅନୁଭୂତିଗୁଡ଼ିକ ଅତି ପ୍ରାଞ୍ଜଳ ଭାବରେ ସେ ବର୍ଣ୍ଣନା କରୁଥିଲେ । ଭାବଗର୍ଭକ, ସାରଗର୍ଭକ ଥିଲା ତାଙ୍କ ବକ୍ତୃତା ।

ଆଜି ପଦ୍ମଶ୍ରୀ ନାହାନ୍ତି; କିନ୍ତୁ ତାଙ୍କର ସେହି ମୋଟା ଚଷମା କାଚ ତଳର ସେଇ ଉଜ୍ଜ୍ୱଳ ଆଖି ଦୁଇଟା ଆଜି ବି ମୋତେ ଜଳଜଳ ଦେଖାଯାଉଛି—ସେଇ ଦିବ୍ୟଦୃଷ୍ଟିରେ

